# ପଥପ୍ରାନ୍ତେ ପଞ୍ଚସ୍ତରି





## ଅଭିନନ୍ଦନ
## ୨୦୦୩



# ଲେଖା ଓ ଲେଖକ

# ବିଶେଷ କଥନ

*ପ୍ରଫେସର ବାଉରୀବନ୍ଧୁ କର*

ସାଂପ୍ରତିକ କାଳରେ ଆମ ସାହିତ୍ୟର ପ୍ରଥିତ ଯଶା ଲେଖକ ଚନ୍ଦ୍ରଶେଖର ରଥ ଏଇ କୁମାର ପୂର୍ଣ୍ଣିମାରେ ପଞ୍ଚସ୍ତରି ବର୍ଷରେ କରୁଛନ୍ତି ପଦାର୍ପଣ । ତାଙ୍କର ସମଗ୍ର ଜୀବନ ପବିତ୍ର ବିଦ୍ୟାୟତନ ଓ ସାରସ୍ୱତ ସେବା ସହାରରେ ହୋଇଛି ଅତିବାହିତ । ସେ ଜୀବନବ୍ୟାପୀ ଯେଉଁ ଯେଉଁ କର୍ମ କରିଛନ୍ତି, ସବୁଠାରୁ ବଡ଼ ହୋଇ ଦିଶେ ତାଙ୍କର ସାହିତ୍ୟ ସାଧନା । ଏସବୁ ଦେଖିଲେ ମନେହୁଏ ତାଙ୍କର ଜୀବନ ଚିନ୍ତାରେ, ଆଦର୍ଶରେ, ସ୍ୱପ୍ନରେ, ଆଚରଣରେ ସାହିତ୍ୟ ସାଧନାକୁ କରିଛି ଜୀବନର ଏକମାତ୍ର ବ୍ରତ । ଏପରିକି ତାଙ୍କ ମସ୍ତିଷ୍କ, ମାଂସପେଶୀ, ଶିରା-ପ୍ରଶିରା, ସ୍ନାୟୁ ଓ ଶରୀରର ପ୍ରତ୍ୟେକ ଅଂଶ ଜାଗତିକ ଜାଳ-ଜଞ୍ଜାଳକୁ ଭ୍ରୂକ୍ଷେପ ନକରି ସାହିତ୍ୟ ସାଧନାର ବନ୍ଧୁର ପଥରେ ସତତ ଧାବମାନ । ସତେ ଯେମିତି ଜୀବନ ତାଙ୍କର ହଜି ଯାଇଛି ସାହିତ୍ୟ ସାଧନାରେ ଓ ସାହିତ୍ୟ ଦେଇଛି ତାଙ୍କ ଜୀବନକୁ ନବ ଉନ୍ମାଦନା । ତାଙ୍କର ସେହି ସାହିତ୍ୟରୂପୀ ବିରାଟ ବଟବୃକ୍ଷର ଛାୟା ସୁଶୀତଳ ପରିସରରେ ଆଶ୍ରୟ ନେଇଛନ୍ତି ଅଗଣିତ ଶୁଭେଚ୍ଛୁ ବିବେକୀ ପାଠକ । ଏଠାରେ ମନେ ପଡ଼େ ଜୀବନର ଲକ୍ଷ୍ୟ ସଂପର୍କରେ ସ୍ୱାମୀ ବିବେକାନନ୍ଦଙ୍କ ଉକ୍ତି :"Take up one idea. Make that one idea your life-think of it, dream of it, live on that idea. Let the brain, muscles, nerves, every part of your body, be full of that idea, and just leave every other idea alone. This is the way to success. ଯଥାର୍ଥରେ ଏହି ଉକ୍ତିର ପରୀକ୍ଷା ଓ ପ୍ରୟୋଗର ପ୍ରଶସ୍ତ ଭୂମି ହେଉଛି ଓଡ଼ିଆ ସାହିତ୍ୟର ସତ୍ୟଧର୍ମୀ ଚନ୍ଦ୍ରଶେଖର ରଥଙ୍କ ଜୀବନ ।

ଚନ୍ଦ୍ରଶେଖର ରଥଙ୍କ ବ୍ୟକ୍ତିତ୍ୱ ଓ ସର୍ଜକ-ସତ୍ତା ସଂପର୍କରେ ଅତୀତରେ ଦୁଇଟି ବହି ପ୍ରକାଶିତ ହୋଇ ଯାଇଛି । ଗୋଟିଏ ହେଉଛି ତାଙ୍କର ଷଷ୍ଟିପୂର୍ତ୍ତି ଅଭିନନ୍ଦନ ଗ୍ରନ୍ଥ 'ଚର୍ଯ୍ୟା'; ଅନ୍ୟଟି ତାଙ୍କର ସତୁରୀ ବର୍ଷ ପୂର୍ତ୍ତି ଉତ୍ସବ ଉପଲକ୍ଷେ ପ୍ରକାଶିତ ଅଭିନନ୍ଦନ ଗ୍ରନ୍ଥ 'ଚନ୍ଦ୍ରଶେଖର - ୭୦' । ଏଇ ଗ୍ରନ୍ଥ ଦ୍ୱୟରେ ତାଙ୍କ ଜୀବନାୟନ ସହିତ ସାରସ୍ୱତ ସାଧନାର ସୀମା ସରହଦ ଆକଳନ କରିବାକୁ ଚେଷ୍ଟା କରାଯାଇଛି । ଆମ ସାହିତ୍ୟର ବହୁ କୃତବିଦ୍ୟ ଲେଖକ ତାଙ୍କର ସତ୍ ପ୍ରତିପତ୍ତି ସଂପନ୍ନ, ବ୍ୟକ୍ତିତ୍ୱ ପ୍ରତି ଯେତିକି ଶ୍ରଦ୍ଧା ଭାବ ପୋଷଣ କରିଛନ୍ତି, ତାଙ୍କ ସାହିତ୍ୟର ଚମତ୍କାରିତାରେ ହୋଇଛନ୍ତି ସେତିକି ମୁଗ୍ଧ । ପୁଣି ତାଙ୍କର ଗଭୀର ଆତ୍ମପ୍ରତ୍ୟୟ ପୂର୍ଣ୍ଣ ପ୍ରାଣ ପ୍ରାଚୁର୍ଯ୍ୟ ଭରା ବକ୍ତବ୍ୟ ଶୁଣିଲେ ଶ୍ରୋତାର ହୃଦୟ ହୁଏ ପୁଲକିତ ଓ ମନରେ ସୃଷ୍ଟି ହୁଏ ଗଭୀର ବିଶ୍ୱାସ ବୋଧ । ସର୍ବତ୍ର ସ୍ୱୀକୀୟତାର

ସ୍ପର୍ଶ ତାଙ୍କ ଲେଖାରେ ଓ ବକ୍ତବ୍ୟରେ ଅନୁଭବ କରିହୁଏ । ନିଜକୁ ପ୍ରକାଶ କରିବା ଯେ ଏକ ସୂର୍ଯଧର୍ମ ଏହା ଶ୍ରୀରଥ ଭଲଭାବେ ଜାଣନ୍ତି । ଆପଣାର ଚକ୍ଷୁରେ ସଂସାରକୁ ଦେଖି ପାରିଲେ ଜୀବନ ପ୍ରତି ସ୍ୱତଃ ଏକ ଆତ୍ମୀୟତା ଆସେ । ସେଇ ଆତ୍ମୀୟତା ଆସିଲେ ଲେଖକର ଲେଖା ହୁଏ ସଫଳ । ତା'ପରେ ଲେଖକ ଆପଣା ବ୍ୟକ୍ତିତ୍ୱରୂପୀ ଦର୍ପଣରେ ଦେଖେ ଜୀବନକୁ, ସମାଜକୁ, ଜଗତକୁ ଓ ବିଶ୍ୱରେ ପ୍ରତି ମୁହୂର୍ତ୍ତରେ ଘଟୁଥିବା ଯାବତୀୟ ପରିବର୍ତ୍ତନକୁ । ଏଇ ସୂତ୍ରରେ ଚନ୍ଦ୍ରଶେଖର ରଥଙ୍କ ସାହିତ୍ୟର ଗତି । ଜୀବନ ଧର୍ମ ବିଜଡ଼ିତ ହେଉଛି ତାଙ୍କର ସାହିତ୍ୟ । ସେଇଠି ଜୀବନର ସୁମଧୁର ସ୍ୱନ ଯେତିକି ସୁଲଭ, ଯନ୍ତ୍ରଣାରେ ଜୁତୁବୁତୁ ମଣିଷର ଆର୍ତ୍ତନାଦ ସେତିକି ସ୍ପଷ୍ଟ । ପୁଣି ତା' ଭିତରେ ଘନ ନୀରବତା କିଛି କମ୍ ନାହିଁ । ଏହା ଯଥାର୍ଥରେ ଆକାଶ ଭଳି ଏକ ଅନନ୍ତ ବିସ୍ତାର । ଏଇ ଅନନ୍ତ ବିସ୍ତାର ଆକାଶର ସୌନ୍ଦର୍ଯ୍ୟ କଳନା ପାଇଁ ବାରମ୍ବାର ତା'ର ଦର୍ଶନ ଅନସ୍ୱୀକାର୍ଯ୍ୟ । ସେଥିପାଇଁ ପଞ୍ଚସ୍ତରି ବର୍ଷ ବୟସରେ ପ୍ରବେଶ କରିଥିବା ଆମର ସମ୍ମାନନୀୟ ଲେଖକ ଚନ୍ଦ୍ରଶେଖର ରଥଙ୍କ ଅଭିନନ୍ଦନ ପାଇଁ 'ପଥପ୍ରାନ୍ତେ ପଞ୍ଚସ୍ତରି' ଗ୍ରନ୍ଥର ସଂଯୋଜନା ।

ସେ ତାଙ୍କ ସାହିତ୍ୟରେ କରିଛନ୍ତି ନିରନ୍ତର ଜୀବନ ବିଶ୍ଳେଷଣ । ତାଙ୍କ ସାହିତ୍ୟରେ ରହିଛି ଜୀବନର ବହୁବିଧ ଦିଗ ଓ ବାଗ । ଜୀବନକୁ ନାନା ଦିଗରୁ ଦେଖିବା ଓ ଜୀବନର ଗଭୀରତାକୁ ଭେଦ କରିବାର ଅନେକ ଉପାଦାନ ଦେଖିବାକୁ ମିଳେ ତାଙ୍କ ସାହିତ୍ୟରେ । ମାନବିକ ଦୃଷ୍ଟିଭଙ୍ଗୀ ନେଇ ଜୀବନ ଓ ଜଗତର ରହସ୍ୟାବଲୋକନ କରିବାର ନିଷ୍ଠା ତାଙ୍କର ରହିଛି । ଏଠାରେ ପ୍ରାସଙ୍ଗିକ ଭାବେ Alfred North Whitehead ଙ୍କୁ ଉଦ୍ଧାର ପୂର୍ବକ କୁହାଯାଇପାରେ; It is in literature that the concrete outlook of humanity receives its expression. ସେ ମଣିଷ କଥା କହିବାବେଳେ ତା'ର ତିନି ଜଗତ, ପୃଥିବୀ ଲୋକ, ସ୍ମୃତି ଜଗତ ଓ ଆତ୍ମିକ ନିଖିଳ କଥା କହିବାକୁ ଭୁଲି ନାହାନ୍ତି । ଏଇ ତିନି ଜଗତର ସମନ୍ୱୟ ଦ୍ୱାରା ମଣିଷ ମୁକ୍ତି ଲଭେ । ତାଙ୍କ ରଚନାବଳୀରେ ସେ ଏଇ ତିନି ଜଗତକୁ ଏକାଠି କରି ମଣିଷକୁ ଏକ ଭିନ୍ନ ଚେତନାର ସ୍ତରକୁ ନେଇ ଯାଇଛନ୍ତି । ସେ ଦେଶ, ଜାତି, ସଂସାରର ଧର୍ମ ଯାହା କିଛି ଆଲୋଚନା କରନ୍ତୁ ନା କାହିଁକି, ମଣିଷ ପଣିଆକୁ ସର୍ବାଗ୍ରେ ମର୍ଯ୍ୟାଦା ଦିଅନ୍ତି । ଏ ସକାଶେ ପ୍ରଫେସର ଦାଶରଥି ଦାସ 'ସାହିତ୍ୟ ଶିଳ୍ପୀ ଚନ୍ଦ୍ରଶେଖର ସ୍ମୃତି ସତ୍ତା ଭବିଷ୍ୟତ' ଶୀର୍ଷକ ଏକ ଆଲୋଚନାରେ କହନ୍ତି; ''ସାହିତ୍ୟ ଶିଳ୍ପୀ ଶ୍ରୀରଥ ଭାବିଛନ୍ତି ଦେଶକୁ ଘେନି, ଜାତିକୁ ଘେନି, ଭାବିଛନ୍ତି ବିଶ୍ୱର କଲ୍ୟାଣକୁ ଘେନିବି । ତେବେ ମଣିଷ ତାଙ୍କର ପ୍ରଧାନ ଧ୍ୟେୟ, ଦେଶ ଜାତି ଓ ବିଶ୍ୱ ଉପଲକ୍ଷ ମାତ୍ର । ମଣିଷ ପାଇଁ ତାଙ୍କର ସାନ୍ତ୍ୱନା ଅଛି ତୀର୍ଥରେ, ସେହି ତୀର୍ଥ ସାହିତ୍ୟ ତୀର୍ଥ ହେଉ କି ଶ୍ରୀକ୍ଷେତ୍ର ହେଉ । ସେ ଭଲ ଭାବରେ ବୁଝିଛନ୍ତି ମଣିଷ ସକାଶେ ମଣିଷପଣିଆ ଠାରୁ

ବଡ଼ ଆଦର୍ଶ ଆଉ କିଛି ନାହିଁ । ଯେକୌଣସି ବିଷୟର ସୂକ୍ଷ୍ମାତିସୂକ୍ଷ୍ମ ଅନୁଶୀଳନ କଲେ ଜଣାଯାଏ ଯେତେ ଯାହା ବଡ଼ ଆଦର୍ଶ ସବୁ ମଣିଷ ପଣିଆ ଉପରେ ପ୍ରତିଷ୍ଠିତ । ଏ ସଂସାରରେ ଯାହା ଶ୍ରେଷ୍ଠ, ଯାହା ବନ୍ଦନୀୟ ଓ ଯାହା ଶାନ୍ତି ଦାୟକ, ତାହା ହେଉଛି ଏଇ ମାନବିକତା ।

ଚନ୍ଦ୍ରଶେଖର ରଥଙ୍କ ସମଗ୍ର ସାହିତ୍ୟ ସାଧନା ହେଉଛି ଏକ ଆଧ୍ୟାତ୍ମିକ କର୍ମ ଫଳାକାଂକ୍ଷା ନରଖି ଆପଣାର କର୍ମ ସଂପାଦନା କରିବା ପ୍ରତ୍ୟେକ ମଣିଷର ଧ୍ୟେୟ ହେବା ଉଚିତ । ସେ ଯାହା କହନ୍ତି, ଯାହା କରନ୍ତି, ଯାହା ଚିନ୍ତା ପରିସରକୁ ଆଣନ୍ତି, ସବୁ ଭିତରେ ରହିଛି ସମର୍ପଣ ଭାବ । ସଂସାରର ଚିରାଚରିତ ଶଗଡ଼ ଗୁଳାରେ ନଯାଇ ଏକ ଦିବ୍ୟ ମାର୍ଗରେ ଯିବାକୁ ସେ ଆନନ୍ଦ ଅନୁଭବ କରନ୍ତି । ସେ ସଂସାରରେ ଥାଇ ସୁଦ୍ଧା ସଂସାର ପ୍ରତି ଉଦାସୀନ । ସଂସାର ଚକ୍ର ଭିତରେ ଆପଣାକୁ ସେ ଆବଦ୍ଧ ନକରି ଜୀବନକୁ ଦେଖନ୍ତି ଏକ ବୃହତ୍ତର ପରିଧିରେ । ସେ ନିଜେ ଏହି ଆଧ୍ୟାତ୍ମିକ କର୍ମକୁ ବେଶ୍ ଗୁରୁତ୍ୱ ଦିଅନ୍ତି । ଏ ସଂପର୍କରେ ସେ ଆମକୁ ବୁଝାଇବାକୁ ଯାଇ ଲେଖିଛନ୍ତି "ଆଧ୍ୟାତ୍ମିକ କର୍ମଟି କ'ଣ ? କିପରି ତାହା କରାଯାଇ ପାରେ ? ପ୍ରତି ମୁହୂର୍ତ୍ତରେ ଯେଉଁ କର୍ମଟି ଆମେ କରୁଛୁ, ତାହା ଈଶ୍ୱରାର୍ପିତ କିପରି ହୋଇ ପାରିବ ? କର୍ମ ବିଷୟରେ ଦୁଇଟି ଦୃଷ୍ଟିଭଙ୍ଗୀ ରହିଛି । ଗୋଟିଏ ହେଲା ଯେ ସଂସାରରେ ରହି ତାହାକୁ ଏକମାତ୍ର ସତ୍ୟଜ୍ଞାନ କରି ନିଜର ସୁଖ ସନ୍ତୋଷ ପାଇଁ କର୍ମ କରିବା । ଅନ୍ୟଟି ହେଲା ଏ ସମସ୍ତକୁ ଅଳୀକ ଜ୍ଞାନ କରି ଏସମସ୍ତଠାରୁ ସଂପୂର୍ଣ୍ଣ ବିଚ୍ଛିନ୍ନ ହୋଇ କର୍ମପ୍ରତି ଉଦାସୀନ, ବିମୁଖ ହୋଇ ଯିବା । 'ନେହ ନାନାସ୍ତି କିଞ୍ଚନ, ଜ୍ଞାନ ଓ ଅବବୋଧ ହୋଇଗଲେ ଏକତ୍ୱରେ କର୍ମ ଅର୍ଥହୀନ ହୋଇଯାଏ । ଦେହାତ୍ମପ୍ରତ୍ୟୟ ଭିତରେ ଏ ସମସ୍ତ ଜଗତ୍ ମଧ୍ୟ ସେଇ ଦିବ୍ୟଚେତନା ବୋଲି ଜ୍ଞାନ ହେଲେ ଜୀବନ କର୍ମମୟ ହୋଇଯାଏ । ଯେକୌଣସି କର୍ମପାଇଁ ଏ ଦୁଇଟି ସମ୍ଭାବନା - ହୁଏତ ପୂର୍ଣ୍ଣ କର୍ମମୟ ସଂସାର କିମ୍ବା ନିଷ୍କ୍ରିୟ ସନ୍ୟାସ । ଗୋଟିଏ ଶକ୍ତିଶାଳୀ ବୈଦ୍ୟୁତୀୟ ଚୁମ୍ବକର ଦୁଇଟି ମେରୁମଧ୍ୟରେ ଖଣ୍ଡିଏ ଲୁହା ପାତିଆ ପାରି କରିବା ପ୍ରାୟ ଅସମ୍ଭବ ବ୍ୟାପାର । ହୁଏତ ଗୋଟିଏ ମେରୁରେ ପାତିଆ ଚଟକିନା ଲାଗି ଯିବ, ସେଇଠୁ ଛଡ଼େଇଲେ ଅନ୍ୟଟିରେ ଲାଖିଯିବ । ଅତି ସୂକ୍ଷ୍ମ ମଧ୍ୟରେଖା କ୍ଷୁରଧାର ପରି । ସେଥିରେ ଲୁହା ପାତିଆକୁ ଚଳେଇ ନେବାହିଁ ସାଧନା, ସଂସାରରେ ସଚେତନ ହୋଇଗଲେ, ବନ୍ଧନ ହୁଗୁଳି ଯାଏ ଏବଂ ବୈରାଗ୍ୟ ଟାଣି ନେଇଯାଏ । ଅନ୍ୟପକ୍ଷେ କର୍ମରେ ମମତା, ଆନ୍ତରିକତା ପ୍ରକାଶ କରୁ କରୁ ସଂସାର ମୋହାବିଷ୍ଟ କରେ । ଗୋଟିଏ ଚଳମାନ, ଅନ୍ୟଟି ନିଶ୍ଚଳ । ଗୋଟିଏ କ୍ଷର ଅନ୍ୟଟି ଅକ୍ଷର, କିନ୍ତୁ ପ୍ରକୃତ Integrated knowledge ହେଉଛି ଉଭୟକୁ ଧାରଣ କରିବା । ସଂସାରରେ ଆସୀନ ହେବାକୁ ହେବ କିନ୍ତୁ ଉଦାସୀନବତ୍ ଆସୀନ

ହେବା, କିମ୍ବା ସଂସାରରେ ବୁଡ଼ିଯିବା ଦୁଇଟି ସୀମାନ୍ତ ସମ୍ଭାବନା । କୂଳରେ ଠିଆ ହେବା ନୁହେଁ କି ସୁଅରେ ବୁଡ଼ିଯିବା ନୁହେଁ । ପହଁରା କୌଶଳରେ ସୁଅ ପାରିହେବା ହେଉଛି ଯୋଗ ବା କର୍ମ ।''

ଏଣୁ ଅଭ୍ୟାସ କରିବାକୁ ହେବ,ଚେଷ୍ଟା କରିବାକୁ ହେବ, କିପରି ସଂସାରରେ ରହି ନରହିଲା ପରି, ଥାଇ ନଥିଲା ପରି, ଉଦାସୀନବତ୍ କର୍ମ କରାଯାଇପାରେ । ଜୀବନରେ କର୍ମ ପ୍ରବାହ ଭିତରେ ଏଠି ସେଠି ସଚେତନ ଭାବରେ ଉଦାସୀନବତ୍ ହୋଇ ପାରିଲେ ହୁଏତ ସାଧନାର ଗୋଟିଏ ପର୍ଯ୍ୟାୟରେ ସକଳ କର୍ମ ଏଇଭଳି ହୋଇଯିବ । ସେତିକିବେଳେ ସେ ମୁକ୍ତ ପୁରୁଷ । ସେ ଜ୍ଞାନୀ, ସେ ଭକ୍ତ, ସେ ପୁରୁଷୋତ୍ତମରେ ଥାଇ କର୍ମ କରନ୍ତି ଏବଂ ଯାହା କରନ୍ତି ତାହା ଅତି ସରଳ ସହଜ ଭାବରେ Divine (ପା୦ ଚକ୍ର ଡାଏରି) ଆଧ୍ୟାତ୍ମିକ କର୍ମ ସଂପର୍କରେ ଏଠାରେ ସେ ଯାହା କହିଛନ୍ତି, ତାହା -ତାଙ୍କ ପାଇଁ ପ୍ରଯୋଜ୍ୟ ।

ଶେଷରେ ଏତିକି କୁହାଯାଇପାରେ ଯେ ସେ ହେଉଛନ୍ତି ସାଂପ୍ରତିକ କାଳର ଏମିତି ଏକ ସାରସ୍ୱତ ବ୍ୟକ୍ତିତ୍ୱ ଯାହାଙ୍କ ବିଦ୍ୟା, ବୁଦ୍ଧି ଓ ଭାଷଣକୁ ନେଇ ଓଡ଼ିଆମାନେ ଜାତୀୟ ଆନ୍ତର୍ଜାତୀୟ ସ୍ତରରେ ଗର୍ବ ଅନୁଭବ କରିପାରିବେ । ଏପରି ଏକ ଜ୍ଞାନ ତପସ୍ୱୀ ଦାର୍ଶନିକ ଲେଖକ ଚନ୍ଦ୍ରଶେଖର ରଥଙ୍କ ସୁସ୍ଥ, ନିରାମୟ ଦୀର୍ଘ ଜୀବନ କାମନା କରି ଏଠାରେ ବିଶେଷ କଥନକୁ ଶେଷ କରୁଛି ।

ସ୍ନାତକୋତ୍ତର ଓଡ଼ିଆ ବିଭାଗ
ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ
ଭଂଜ ବିହାର, ବ୍ରହ୍ମପୁର - ୭୬୦୦୦୭
ଓଡ଼ିଶା
ସଭ୍ୟ ଅଭିନନ୍ଦନ ସମିତି

# ପୁତ୍ରର ଶ୍ରଦ୍ଧା ସୁମନ

***ଶଶିଭୂଷଣ ରଥ***

କୁମାର ପୂର୍ଣ୍ଣିମା ଶ୍ରୀ ଚନ୍ଦ୍ରଶେଖର ରଥଙ୍କ ଜନ୍ମତିଥି । ତାଙ୍କର ଜ୍ୟେଷ୍ଠ ସନ୍ତାନ ଭାବରେ ମୁଁ ତାଙ୍କୁ ଭୂମିଷ୍ଠ ପ୍ରଣାମ କରି ଶ୍ରଦ୍ଧା ସୁମନ ଜ୍ଞାପନ କରୁଛି ତାଙ୍କ ପଦଯୁଗଳରେ । ଏ ବର୍ଷ କୁମା ପୂର୍ଣ୍ଣିମା (୧୦.୧୦.୨୦୦୩) ଦିନ ନନା ୭୫ ବର୍ଷରେ ପଦାର୍ପଣ କରୁଛନ୍ତି ଏହା ଆମ ପରିବାରର ସମସ୍ତ ସଦସ୍ୟମାନଙ୍କ ପାଇଁ ଆନନ୍ଦ ଓ ପରମ ସୌଭାଗ୍ୟର ବିଷୟ । ତାଙ୍କର ଜନ୍ମଦିବସ ଆମ ପରିବାରରେ ପ୍ରତ୍ୟେକ ବର୍ଷ ପାଳିତ ହୁଏ । ତାଙ୍କର ବନ୍ଧୁ, ଛାତ୍ର ଛାତ୍ରୀ, ଶୁଭେଚ୍ଛୁମାନଙ୍କ ଅନୁରୋଧ କ୍ରମେ ୧୯୮୯ରେ ତାଙ୍କର ଷଷ୍ଠିପୂର୍ତ୍ତି, ୧୯୯୯ ରେ ୭୦ତମ ଜନ୍ମଦିବସ ଦିନ ବନ୍ଧୁମିଳନର ଆୟୋଜନ କରିଛୁ । ଏ ଅବସରରେ ଯଥାକ୍ରମେ 'ଚର୍ଯ୍ୟା' ଏବଂ 'ଚନ୍ଦ୍ରଶେଖର ୭୦' ଅଭିନନ୍ଦନ ଗ୍ରନ୍ଥ ପ୍ରକାଶ ପାଇଥିଲା । ଏ ପୁସ୍ତକ ଦୁଇଟି ପାଇଁ ପାଠକ ଓ ଗବେଷକ ମାନେ ଆଜି ମଧ୍ୟ ଅନୁରୋଧ ପତ୍ର ପଠାଉଛନ୍ତି କିନ୍ତୁ ସୀମିତ ସଂଖ୍ୟାରେ, ପ୍ରକାଶିତ ହୋଇଥିବାରୁ ଏ ଦୁଇଟିକୁ ପୁନଃ ମୁଦ୍ରଣ ପାଇଁ ମନସ୍ଥ କରିଛି । ଏ ବର୍ଷ ଜନ୍ମ ଦିବସରେ ତୃତୀୟ ପୁସ୍ତକ ଲୋକାର୍ପିତ ହେବ । ମୂଳତଃ ଏ ତିନୋଟି ପୁସ୍ତକ 'ଚର୍ଯ୍ୟା'ର ହିଁ ତିନୋଟି ବର୍ଗ । ବିଭିନ୍ନ ଦୃଷ୍ଟିକୋଣ ଏବଂ ଚର୍ଯ୍ୟାକୁ ପୁସ୍ତକ ଆକାରରେ ପ୍ରକାଶ କରିବା ଅର୍ଥ ଏକ ଚିର ସୃଜନଶୀଳ ଲେଖକଙ୍କୁ ଆକଳନ କରିବା । ଏହା ଏକ ଅପଚେଷ୍ଟା ହିଁ ହୋଇପାରେ । ଏ ପ୍ରକାର ଉଦ୍ୟମ ପାଇଁ ମୁଁ ନନାଙ୍କ ପାଖରେ କ୍ଷମା ମାଗିଆସିଛି । ଯେତେହେଲେ ବି ମୁଁ ତାଙ୍କର ପୁତ୍ର, ଛାତ୍ର ଏବଂ ପାଠକ; ମୋର ବିଶ୍ୱାସ ସେ ମୋତେ କ୍ଷମା କରିଛନ୍ତି ।

ପିତାଙ୍କ ଜନ୍ମତିଥିରେ ପୁତ୍ରର ଶ୍ରଦ୍ଧାସୁମନ ରୂପରେ ଏ ରଚନା ମୁଁ ମୋର ଦୃଷ୍ଟିକୋଣ ପ୍ରକାଶ ନକଲେ ପ୍ରକାଶ କରିବ କିଏ ? ଜ୍ଞାନ ହେବାଦିନୁ ଦେଖିଆସୁଥିବା ବ୍ୟକ୍ତିତ୍ୱର ଉଦବର୍ତ୍ତନ ଏବଂ ପରିବର୍ତ୍ତନ ସମୟରେ କିଛିଟା ବୁଝିପାରୁଥିବା, ଖୁବ୍ ନିକଟରୁ ଅନୁଧ୍ୟାନ କରିଥିବା ଅନେକ ରୂପରେଖକୁ ମୁଁ ଯଦି ନଲେଖେ ଲେଖିବ କିଏ ? ତେଣୁ ବିନମ୍ର ଭାବରେ ଯତ୍ କିଞ୍ଚିତ୍ ପ୍ରକାଶ କରୁଛି ।

**ସାହିତ୍ୟ ସଂସାର** :- ପ୍ରାରମ୍ଭରୁ ମୁଁ ଦେଖି ଆସିଛି ନନା ସମସ୍ତଙ୍କୁ, ଖୁବ୍ ଆପଣେଇ ନେଇଛନ୍ତି, ଭଲପାଇଛନ୍ତି । ତାଙ୍କ ମିତ୍ରାଚରଣ ଶୁଦ୍ଧ ଏବଂ ସ୍ୱଚ୍ଛ । ପରମାନନ୍ଦ ଆଚାର୍ଯ୍ୟ ପ୍ରାଣବଂଧୁକର, ସୀତାକାନ୍ତ ମହାପାତ୍ର ଜୀବନାନନ୍ଦ ପାଣି ରମାକାନ୍ତ ରଥ ଗୋପିନାଥ ମହାନ୍ତି, ନନ୍ଦିନୀ ଶତପଥି ସୁରେନ୍ଦ୍ର ମହାନ୍ତି, ଜାନକୀ ବଲ୍ଲଭ ପଟ୍ଟନାୟକ ରାଧାକୃଷ୍ଣ

ଭଂଜ, ରାମନାଥ ପଣ୍ଡା, ହୃଦାନନ୍ଦ ରାୟ, ମହାପାତ୍ର ନୀଳମଣି ସାହୁ, ଶାନ୍ତନୁ ଆଗ୍ନର୍ଯ୍ୟ, ଶରତକୁମାର ମହାନ୍ତି, ମନୋଜ ଦାସ, ଖଗେଶ୍ୱର ମହାପାତ୍ର, ସୂର୍ଯ୍ୟକାନ୍ତ ଦାସ, ଛୋଟେ ନାରାୟଣ ଶର୍ମା, ପ୍ରପତ୍ତି, ବାବାଜୀ ମହାରାଜ, ଚିତ୍ତରଂଜନ ଦାସ ଏବଂ ଅନ୍ୟ ବ୍ୟକ୍ତିଙ୍କ ସହ ୬୦ ଦଶକରେ ତାଙ୍କର ଆଚରଣ ଏବେବି ମୋ ମାନସପଟ୍ଟରେ ଚିତ୍ରିତ ରହିଛି । ରବିପଟ୍ଟନାୟକ, ହରପ୍ରସାଦ ଦାସ, ପ୍ରବୀଣା ମହାନ୍ତି, କେ.ଭି.କେ. ରାଓ, ପ୍ରଫୁଲ୍ଲକୁମାର ମହାନ୍ତି, ଛନ୍ଦାଚରଣ, ପ୍ରତିଭାରାୟ, ଶୁଭେନ୍ଦୁ ମୁଣ୍ଡ, କଳ୍ପନା ଦାଶ, ସୁନୀଲ ପୃଷ୍ଟି ନିରଂଜନ ମହାନ୍ତି, ସୌମ୍ୟରଂଜନ ପଟ୍ଟନାୟକ, ହୃଷୀକେଶ ମଲ୍ଲିକ, ବାଉରୀବନ୍ଧୁ କର ପ୍ରସନ୍ନ ମହାନ୍ତି ହରପ୍ରସାଦ ପରିଚ୍ଛାପଟ୍ଟନାୟକ, ବିଭୁଆଗ୍ନର୍ଯ୍ୟ, ରାଜେନ୍ଦ୍ର ପଣ୍ଡା ଏବଂ ଆହୁରି ଅନେକଙ୍କୁ ନନା କେତେ ଭଲ ପାଆନ୍ତି ହୁଏତ ସେମାନେ ତହା ଜାଣନ୍ତି ନାହିଁ । ଏମାନଙ୍କ ମଧ୍ୟରୁ ଅନେକ ଦିବଂଗତ କିନ୍ତୁ ମୋ ସ୍ମୃତିରେ ସଦାଜଗ୍ରତ ଏବଂ ମୂର୍ତ୍ତି । ନନାଙ୍କ ସାହିତ୍ୟ ସଂସାରର ଅଂଶ ବିଶେଷ ଏମାନେ ସମସ୍ତେ ଏବଂ 'ପାଠକ କୁଳତ' ମୋର କୁଟୁମ୍ବ ଏପରି ମନେ ହୋଇଛି ମୋତେ । ସେ କାହାପ୍ରତି କଟୁକ୍ତି ବା ଆକ୍ଷେପ କରିବାର ମୁଁ ଜାଣି ନାହିଁ । ବେଳେବେଳେ ନନା କନିଷ୍ଠ ଲେଖକଙ୍କୁ କିଛି ଲଘୁ ଦାୟିତ୍ୱ ଦେଇଛନ୍ତି ଏବଂ କାଳକ୍ରମେ ସେମାନେ ପାସୋରିବା ବା ନକରିବା ଏବଂ ନନା ସେମାନଙ୍କ ପାଇଁ ଚିନ୍ତିତ ହେବା ମୁଁ ଦେଖିଛି । ମୁଁ କ୍ଷୁବ୍ଧ ହୋଇଛି । ସେ ଆଘାତ ପାଇଛନ୍ତି ତଥାପି ସେ ଏମାନଙ୍କୁ କ୍ଷମା କରିଛନ୍ତି ଉଦାର ଭାବରେ । ସେ ଏକ ସଂବେଦନଶୀଳ ମାନବାତ୍ମା, ଏକ ଅଭିନବ ଚେତନାର ବାର୍ତ୍ତାବହ ।

ନନାଙ୍କ ଅଧିକାଂଶ ରଚନାର ପ୍ରଥମ ପାଠକ ଭାବରେ ମୁଁ ନିଜକୁ ଭାଗ୍ୟବାନ ମନେକରେ । ନନା ତାଙ୍କ ସହଜ ଭାବରେ ପଗ୍ନରନ୍ତି, "ତୋତେ କେମିତି ଲାଗିଲା" । ଶ୍ରଦ୍ଧା ସଂଭ୍ରମ ଓ ସଂଯମ ରକ୍ଷାକରି ମୁଁ ମୋର ଭାବନାକୁ ସ୍ୱାଧୀନ ଭାବରେ ବ୍ୟକ୍ତ କରିବାର ସୁଯୋଗ ସେ ସର୍ବଦା ଦେଇ ଆସିଛନ୍ତି । ଅନନ୍ତ ଧୈର୍ଯ୍ୟର ସହ ଶୁଣନ୍ତି ଓ ଗ୍ରହଣ କରନ୍ତି । ଯେତିକି ପଢ଼ିଛି ଯେତିକି ବୁଝିଛି ତାଙ୍କୁ ଅଦ୍ଭୁତ ସମୀକରଣ କରିପାରିଛନ୍ତି ସେ ସାହିତ୍ୟ ଓ ସ୍ୱାଧ୍ୟାୟର । ଅନୁରାଗ ଓ ଅଧ୍ୟାତ୍ମର ମିଳନ ହୋଇଛି ତାଙ୍କ ଶବ୍ଦ ସଂଯୋଜନାରେ । ତାଙ୍କ ସୃଜନ-ଜଗତ ସର୍ବଦା ସ୍ୱଚ୍ଛ ଓ ଆଲୋକିତ । ତାଙ୍କୁ ନିରୀକ୍ଷଣ କରିଥିବା ସୁହୃଦ ମାନେ ମୋତେ କହିଛନ୍ତି ଯେ ତାଙ୍କ ଋଷିପ୍ରତିମ ବ୍ୟକ୍ତିତ୍ୱ ଓ ଗଂଭୀର ଭାବଭଂଗୀରେ ଏକ ପାରମାର୍ଥିକ ଆକର୍ଷଣ ରହିଛି । ଏହା ମୁଁ ମଧ୍ୟ ଅନୁଭବ କରିଛି ।

ତାଙ୍କ ରଚନା ବିଭିନ୍ନ ପର୍ଯ୍ୟାୟ ଦେଇ ଗତି କରିଛି : ରମ୍ୟରଚନା, ପ୍ରବନ୍ଧ, ଉପନ୍ୟାସ, ଗଳ୍ପ ଓ କବିତା । ନିରବଚ୍ଛିନ୍ନ ସେ ଲେଖି ଗ୍ନଲିଛନ୍ତି । ମୋତେ ଲାଗେ ସାକ୍ଷାପୁରୁଷ ପାଖରେ ଦେଖୁଛନ୍ତି ଓ ସେ ଲେଖୁଛନ୍ତି । ଲେଖିବା ସମୟରେ ସେ ବୋଧହୁଏ ସେଇ

ସାକ୍ଷୀ ପୁରୁଷଙ୍କ ଜାଜ୍ଵଲ୍ୟ ଆଭାରେ ଝଟକୁଥାନ୍ତି ଉର୍ଦ୍ଧ୍ୱ ଚେତନାରେ । ସେ ପ୍ରକ୍ରିୟାକୁ ବୁଝିବା କଠିନ । ନନାଙ୍କ ସାହିତ୍ୟ ସାଧନାର କାର୍ଯ୍ୟଶାଳା ଆମ ପାଇଁ ଦେବାଳୟ ।

ଭାରତୀୟ ସଂସ୍କୃତି, ପରଂପରା, ଐତିହ୍ୟ, ବିଶ୍ୱାସବୋଧ ସହ ପାଶ୍ଚାତ୍ୟ ଦର୍ଶନ, ସାହିତ୍ୟ ଓ ବିଜ୍ଞାନ ତାଙ୍କ ଚିନ୍ତାଧାରାର ମୂଳସ୍ରୋତ । ସେ ଚିରସମର୍ପିତ, ଚିରଜାଗତ୍ର, ଚିରସୃଜନଶୀଳ ହୋଇଥିବାରୁ ତାଙ୍କ ସୃଷ୍ଟି ଅନୁପମ ଓ ଐଶ୍ୱର୍ଯ୍ୟମଣ୍ଡିତ ଲାଗେ ମୋତେ । କେବେ କେମିତି ଚର୍ଚ୍ଚା କରୁକରୁ ସେ ଗ୍ଳଲିଯାନ୍ତି ବିଜ୍ଞାନ, ଗଣିତ, ଦର୍ଶନର ଭିତ୍ତିଭୂମିକୁ । ସେ ନିର୍ଜରା ଭୂମିରେ ଉଙ୍କିମାରୁଥିବା ପ୍ରଶ୍ନ ଉପରେ ଚର୍ଚ୍ଚା କରୁ ଉଭୟେ । ବହୁଦିନରୁ ନନା କବିତା ଲେଖିଆସୁଥିଲେ କିନ୍ତୁ ନା କବିତା ପାଠରେ ଅଂଶଗ୍ରହଣ କରୁଥିଲେ ନା କବିତା ସଂକଳନ ପ୍ରକାଶ କରୁଥିଲେ । ୭୦ତମ ଜନ୍ମତିଥିରେ ବନ୍ଧୁ ମିଳନରେ ସେ ପ୍ରଥମ କବିତା ପାଠକଲେ । ସେ ଥିଲା ଏକ ଅପୂର୍ବ ମୁହୂର୍ତ୍ତ ଆମ ବାସଭବନର ଅଗଣାରେ । ପରେ ପରେ ପ୍ରକାଶ ପାଏ ପ୍ରଥମ କବିତା ସଂକଳନ 'ତୁମପାଇଁ ପକ୍ଷୀଗାନ' । ନନା ଲେଖିଛନ୍ତି : "...ଆଉ ବନ୍ଧୁ, ତୁମ ପାଖରେ ମୋର ସମସ୍ତ କୃତଜ୍ଞତା । ମୁଁ ଜାଣେ ଏ ତୁମର ଯୋଗ୍ୟ ନୁହେଁ । ତଥାପି ଅର୍ପି ଦେଉଛି - ବିନୟରେ ଶ୍ରଦ୍ଧାରେ ସନ୍ତର୍ପଣରେ — 'ତୁମପାଇଁ ପକ୍ଷୀଗାନ' ମୋ ପାଇଁ କବିତା ।" ଅଭିଜ୍ଞାନ କବିତାଟି ନିମ୍ନରେ ଉଦ୍ଧାର କରୁଛି ଆପଣଙ୍କ ପାଇଁ :

ଧଳାପିନ୍ଧି କେହିଜଣେ ନିଃଶବ୍ଦ ରାତିରେ
ତୋ ଦୁଆରେ ଠିଆ ହୋଇଥିଲେ
ତାଳଚୂଳେ ଚତୁର୍ଦ୍ଦଶୀ ଜହ୍ନ ନଇଁ ଗଲାବେଳେ
କୁନ୍ଦ କଢ଼ ପରି ଲମ୍ବ, ଭାରି ଲମ୍ବ ସେ ଜଣକ—
ସେ ନିଶ୍ଚୟ ପିନ୍ଧିଥିଲେ
ରଜନୀଗନ୍ଧାର ମାଳ ।
ଭୂଇଁକୁ ଅନାଇରହି ସ୍ଥିର ପ୍ରତୀକ୍ଷାରେ
ରାତ୍ରିର ତୃତୀୟ ଯାମ ବିତିଗଲା ଜହ୍ନ ଆଲୁଅରେ
ଛାଇ ଲମ୍ବିଗଲା,
ବିଷର୍ଣ୍ଣ ପକ୍ଷୀର ଡାକ ଘୁଞ୍ଚିଗଲା ଦୂରରୁ ଦୂରକୁ ।
ତଥାପି ତୋ' ନିଦ ଭାଙ୍ଗିଲାନି ।
କିଛି ଇତସ୍ତତଃ କରି
ଖୁବ୍ ଆସ୍ତେ ତୋ ଦୁଆରେ କରାଘାତ କଲେ;

ତା'ପରେ ମୁହଁ ଫେରାଇ
ଖୁବ୍ ଆସ୍ତେ ଚୁପ୍ ଚାପ୍
ଚାଲିଗଲେ ତାଳବଣ ଜହ୍ନ ଆଲୁଅକୁ ।
ତୁ କହୁଛୁ ଚାରିଟା ଚାଳିଶ୍ ବେଳେ
ତୋ ଦୁଆର ଝରକା ଜଣ୍ଡିର ସବୁ
ଝଣ ଝଣ ହେଲା,
ଦୋହଲିଲା ମୁହୂର୍ତ୍ତକ ପାଇଁ
ଛାତ କାଚ ଦର୍ପଣର ବାଡ଼
ତୁ କହୁଛୁ ଭୂମିକମ୍ପ ହେଲା ।
ତୋ ଦୁଆରେ ଏବେବି ପଡ଼ିଛି
ଗୋଟିଏ ରଜନୀଗନ୍ଧା,
ଆକାଶରୁ ଉଲ୍‌କାଟିଏ ପରି
ଝରିଛି ତୋ ଦୁଆର ଧୂଳିରେ
ହତବାକ ଅପେକ୍ଷାରେ ନିଶ୍ଚଳ ପଡ଼ିଛି
ତୋ ନିଦ ଭାଙ୍ଗିବା ଯାଏଁ ;
ତୁ ଆସି ତୋ ଦ୍ୱାର ମେଲି, ଚମକି ଚାହିଁବା ଯାଏଁ,
ଦରିଦ୍ର ରତନ ପାଇ ହାରିବାର, ପାଇବାର
ବିହ୍ୱଳ ଲୋତକ ସିନ୍ଧୁ ଟଳମଳ ହେବାବେଳେ
ତାକୁ ଏ ଧୂଳି ଉପରୁ ସାଉଁଟି ତୋଳିବା ଯାଏଁ
ବଜ୍ରାହାତ ପରି, ବିଶ୍ୱାସ କରିବାଯାଏଁ
ତୋ ଦୁଆରେ କୁନ୍ଦ କଡ଼ପରି
ସାରାରାତି ଜହ୍ନ ଆଲୁଅରେ
ସେ ନିର୍ବାକ ଠିଆ ରହିଥିଲେ !
ଫେରିବା ପୂର୍ବରୁ, କରାଘାତ କରିଥିଲେ
ତୋ ନିଦ୍ରିତ କବାଟ ଉପରେ !

ତାଙ୍କର ଏ କବିତାଟି ମୋତେ ଖୁବ ଭଲ ଲାଗିଥିଲା ଏବଂ ମୁଁ ଲାଗିପଡ଼ିଥିଲି ସଂଗ୍ରହ କରିବାପାଇଁ ତାଙ୍କର ଅନ୍ୟାନ୍ୟ କବିତା ପୁରାତନ ଓ ନୂତନ । ଏକାଠି କରାଯିବା ପରେ ସଂକଳନଟି ନନା ନାମକରଣ କଲେ '' ଆଗକୁ ବନସ୍ତ'' । ୭୪ତମ ଜନ୍ମତିଥିରେ ଏ ପୁସ୍ତକଟିକୁ ଲୋକାର୍ପଣ କରାଯାଇଥିଲା ଆମ ବାସ ଭବନରେ । ପ୍ରଥମ କବିତା

ସଂଗ୍ରହପରି ଦ୍ୱିତୀୟଟି ମଧ୍ୟ ଗଭୀର ଅନୁଧ୍ୟାନର ପରିପ୍ରକାଶ । ସେଥିରେ ରହିଛି ଜୀବନଦର୍ଶନ, ମାନବୀୟ ସଂପର୍କ ଓ ପ୍ରକୃତିର ରହସ୍ୟ । ସରଳ ମନଛୁଆଁ ଭାଷା । ତାଙ୍କର କବିତାଟିଏ ପଢ଼ିଲେ ମୋତେ ଲାଗେ ସତେଯେପରି ମୁଁ ନିଜେ ନିଜକୁ ଅତିକ୍ରମଣ କରୁଛି । ଅନୁଭବ କରୁଛି ଏକ ଆଧ୍ୟାତ୍ମିକ ଆରୋହଣ । ୨୦୦୨ ରେ ପ୍ରକାଶିତ 'ପାଠକ୍ରେ ଡାଏରି'' ଏ ପର୍ଯ୍ୟାୟଭୁକ୍ତ , ପ୍ରତିଦିନ ପଢ଼ିଲା ପରି ବହିଟିଏ । ତାଙ୍କର ଖୁବ୍ ଆପଣାର ଏବଂ ଖୁବ୍ ନିକଟରେ ଥାଇ ମଧ୍ୟ ତାଙ୍କର ବ୍ୟକ୍ତିତ୍ୱ ଏବଂ ସାହିତ୍ୟକ ବିଭବକୁ ମୁଁ ଆକଳନ କରିପାରିନାହିଁ । ତାଙ୍କ ଉପରେ, ବିଶେଷ କରି ତାଙ୍କ ସାହିତ୍ୟ କୃତୀ ଉପରେ ଗବେଷଣା କରି ଡକ୍ଟରେଟ୍ କରିଥିବା ଛାତ୍ରମାନଙ୍କ ସନ୍ଦର୍ଭ ପଢ଼ିଛି କିନ୍ତୁ ଅନୁଭବ କରିଛି ଯେ ସେଗୁଡ଼ିକ ଏକ ଆଂଶିକ ଆକଳନମାତ୍ର । ତଥାପି ସେମାନଙ୍କ ଉଦ୍ୟମ ପ୍ରଶଂସନୀୟ । ସେ ଆତ୍ମକଥନ -୨ (ଚନ୍ଦ୍ରଶେଖର ୭୦)ରେ ଲେଖିଛନ୍ତି :'' କିନ୍ତୁ ବିଧିର ବିଚିତ୍ର ବିଧାନ - ମୋତେ ଉଭୟ ମାର୍ଗରେ ବିନିଯୋଗ କଲେ ମାଲିକେ । ସେହିପରି ତୁଳୀ ବଟାଳୀ ଧରାଇ ଦେଇଥିବାରୁ ରଂଗ ରୂପର ଛନ୍ଦ ସୃଷ୍ଟି କରିବାକୁ ପ୍ରବୃତ୍ତ ହେଲି । ଜୀବନର ଏ ମୋଡ଼ ଉପରେ ଛିଡ଼ା ହୋଇ ଭାବୁଛି ଯେ କୌଣସି ଗୋଟିଏ ମାଧ୍ୟମରେ ନିଜକୁ ପ୍ରକାଶ କରିବାର ପର୍ଯ୍ୟାପ୍ତ ସାମର୍ଥ୍ୟ ନଦେଇ ମାଲିକ ଗ୍ୱହିଁଲେ ଏପରି ବିବିଧ ମାର୍ଗରେ ନଗ୍ୱଇବାକୁ ।... ସେ ଯେମିତି ଗ୍ୱହିଁଲେ ସେପରି ହେଲି.... କିନ୍ତୁ ବିଶ୍ୱାସ କରନ୍ତୁ ସାରଳା ଯେତେବେଳେ କହନ୍ତି, 'ରାତିରେ ସେ ପଦମାନ କହିଦିଏ, ଦିନ ଆଲୁଅରେ କବି ତାକୁ ପ୍ରବନ୍ଧ କରେ । ସେଥିରେ ଆଦୌ ଅତିରଞ୍ଜିନ ନାହିଁ । ନ୍ୟାୟାଳୟର ଶପଥପାଠ ପରି ଏହା ସତ୍ୟ । ସଭାମଞ୍ଚରେ ଭାଷଣ ଦେବାବେଳେ, ନିଭୃତରେ ବସି କବିତା ଲେଖିଲା ବେଳେ ସେ ହିଁ ଅଦୃଶ୍ୟ ଭୂମିରୁ ପଦକହିଦିଏ । ଏହା ସତ୍ୟ, ସତ୍ୟ !''

କଲେଜରେ ପଢୁଥିବା ବେଳେ ତାଙ୍କ ଛାତ୍ରଥିଲି । ଇଂରାଜୀ ପଢ଼ାଉଥିଲେ । ଶବ୍ଦ ତା ଉଚ୍ଚାରଣରେ ଥିବା ନାନ୍ଦନିକତା ତାଙ୍କ ପାଠ ପଢ଼ାରୁ ମୁଁ ବୁଝିପାରିଛି । ପରବର୍ତ୍ତି କାଳରେ କେଇଗୋଟି ଭାଷଣ ଶୁଣିବାର ଅବକାଶ ମିଳିଛି ଓ ଭାଷଣ ପରେ ଶ୍ରୋତାମାନଙ୍କ ମନ୍ତବ୍ୟ ମୋ ବିଗ୍ୱରକୁ ଦୃଢତର କରିଛି - ସେ ଏକ ଅନନ୍ୟ ବକ୍ତା । ତାଙ୍କ ବକ୍ତବ୍ୟର ସ୍ୱଚ୍ଛ ନିର୍ମଳ ଧାରା । ତା'ର ପୁନରାବୃତ୍ତି ନାହିଁ ବରଂ ଅଛି ନିତ୍ୟ ନୂତନତା । ଡାକ୍ତରମାନଙ୍କ ପାଇଁ, ଇଂଜିନିୟର ମାନଙ୍କ ପାଇଁ, ଆଧ୍ୟାତ୍ମିକ ଜନତାଙ୍କ ପାଇଁ, ଆଶ୍ରମର ଅନ୍ତେବାସୀମାନଙ୍କ ପାଇଁ ତାଙ୍କ ବକ୍ତବ୍ୟ ଝରିଯାଏ ଝରଣାଟିଏ ପରି । ଏପର୍ଯ୍ୟନ୍ତ ସେ କେତେଯେ ଭାଷଣ ଦେଇଛନ୍ତି ତା'ର ହିସାବ ନାହିଁ । ଟେପ କରିବାର ପ୍ରୟାସ କରିଛି କିଛିଟା । ସେ ଭାଷଣ ପାଇଁ ପ୍ରସ୍ତୁତ କରନ୍ତି ନାହିଁ । ସ୍ୱଭାବିକ ଭାବରେ ସୃଷ୍ଟି ହୁଏ ତାଙ୍କ ଅଭିଭାଷଣ, ସେଗୁଡ଼ିକର ଗ୍ରନ୍ଥରୂପ କେତେଦୂର ସଂଭବ ମୁଁ ଜାଣେନା ।

ସେ ଅନୁଷ୍ଠାନ ଅପେକ୍ଷା ବ୍ୟକ୍ତିକୁ ସଦାସର୍ବଦା ଗୁରୁତ୍ୱ ଦେଇଆସିଛନ୍ତି ତେଣୁ ନିମନ୍ତ୍ରଣଟିକୁ ଏଡ଼ାଇ ପାରନ୍ତି ନାହିଁ । ଅନେକ ଥର ଦୂର ଦୂରାନ୍ତ ଅପନ୍ତରା ସ୍ଥାନକୁ ନିମନ୍ତ୍ରିତ ହୋଇ କଷ୍ଟସ୍ୱୀକାର କରିଯାଇଛନ୍ତି । କେତେବେଳେ ମୁଁ ତାଙ୍କୁ କହିଛି ଯେ ଦୂର ଦୂରାନ୍ତକୁ ଆଉ ନଯାଆନ୍ତୁ ନିଜ ସ୍ୱାସ୍ଥ୍ୟ ପ୍ରତି ସତର୍କ ରୁହନ୍ତୁ । ସେ ଜାଣନ୍ତି ଯେ ଅନେକ ବ୍ୟକ୍ତି, ବ୍ୟକ୍ତିଗତ ପରିଚୟ ଆଢୁଆଳରେ ତାଙ୍କୁ ବ୍ୟବହାର କରୁଛନ୍ତି, ନିମନ୍ତ୍ରଣ କରୁଛନ୍ତି ତଥାପି ସେ ଅନୁରୋଧଟିକୁ ପ୍ରତ୍ୟାଖ୍ୟାନ ନକରି ଯାଆନ୍ତି ।

**ତାଙ୍କ ଦିନଚର୍ଯ୍ୟା ଓ ଆମେ ମାନେ :—**

ସେ ଜଣେ ଅଭ୍ୟାସୀ, ତାଙ୍କ ଦିନଚର୍ଯ୍ୟାର ଅଭ୍ୟାସ ମୋତେ ସ୍ତମ୍ଭୀଭୂତ କରେ । ଆପଣ ହୁଏତ ବିଶ୍ୱାସ କରିବେ ନାହିଁ ଯେ ନନାଙ୍କ ଏ ପରିଣତ ବୟସରେ ତାଙ୍କ ଗତି ସହ ମୁଁ ତାଳ ଦେଇପାରେ ନାହିଁ । ସକାଳ ୫ ରେ ଶଯ୍ୟାତ୍ୟାଗ, ସ୍ନାନାଦି ନିତ୍ୟକର୍ମ ପରେ ଧଳାହାପ୍‌ପେଣ୍ଟ, ଟିସାର୍ଟ ଓ କେଡ୍‌ସ୍ ପିନ୍ଧି ଭ୍ରମଣ ଆରମ୍ଭ । ପ୍ରତ୍ୟେକ ଦିନ ୬ କିଲୋମିଟର ଚାଲିବା ନୂଆପଲ୍ଲୀର ସମସ୍ତେ ଜାଣନ୍ତି । ତାଙ୍କର ଏ ଅଭ୍ୟାସର ବ୍ୟତିକ୍ରମ ନାହିଁ । ପ୍ରଭାତ ଭ୍ରମଣ ସେ ଏକଦା ଏକୁଟିଆ କରୁଥିଲେ । ସେ ସମୟରେ ନୂଆପଲ୍ଲୀରେ ସକାଳୁ ଚାଲିବା ଲୋକ ନଥିଲେ କହିଲେ ଚଳେ । ଆଜି ଶହ ଶହ ପ୍ରଭାତ ଭ୍ରମଣକାରୀ ଦୃଷ୍ଟିକୁ ଆସନ୍ତି । ନନାଙ୍କ ସାଙ୍ଗରେ ପ୍ରଭାତ ଭ୍ରମଣ ଏକ ଅଭିନବ ଅନୁଭବ । ଚାଲନ୍ତି ଅଧିକ, କଥାବାର୍ତ୍ତା କରନ୍ତି କମ୍ । ତାଙ୍କୁ ପ୍ରଭାତରେ ଦେଖିଲେ ମନେହୁଏ Life is full of sunshine. No regrets ! ସୂର୍ଯ୍ୟ କାନ୍ତିରେ ଭରପୁର ତାଙ୍କ ଜୀବନ, ଅନୁଶୋଚନାର ସ୍ଥାନନାହିଁ ତାଙ୍କ ଠାରେ ।

ସକାଳ ୭ଟା ସୁଦ୍ଧା ଫେରିଆସନ୍ତି ବାସଭବନକୁ । ଆସନ ପ୍ରାଣାୟମ କରନ୍ତି ଏକଘଣ୍ଟା । ୮ ଟାରେ ଜଳଖିଆ । ସେ ସମୟରେ ଆମେ ପୁଅ ନାତି ସମସ୍ତେ ଜଳଖିଆ ଖାଉ । ସେ ସ୍ଥାନୀୟ ସମ୍ବାଦପତ୍ର ପଢ଼ନ୍ତି ଓ ଚର୍ଚ୍ଚା କରନ୍ତି । ତା'ପରେ ପୂଜାଘରେ କିଛି ସମୟ ସେ ପୂଜାଅର୍ଚ୍ଚନା କରନ୍ତି । ବିଗ୍ରହ ମାନଙ୍କୁ ପୁଷ୍ପାର୍ପଣ କରନ୍ତି ।

ସକାଳ ୧୦ ରୁ ଦ୍ୱିପ୍ରହର ପର୍ଯ୍ୟନ୍ତ ଘରୋଇ କାର୍ଯ୍ୟକ୍ରମ । ଦୋକାନ ବଜାର ପେଟ୍ରୋଲ ସବୁ କିଛି ନିଜେ କରିବାକୁ ଭଲ ପାଆନ୍ତି । ସାହିତ୍ୟ ସଂସାରରେ ନିମଜ୍ଜିତ ରହି ସେ ପରିବାରର ତେଲ ଲୁଣ ସଂସାରକୁ ତିଳାର୍ଦ୍ଧେ ଉପେକ୍ଷା କରିନାହାନ୍ତି । ସ୍ୱପ୍ନରେ ସୁଦ୍ଧା ଆମେ ଅବହେଳିତ ବୋଧ କରିନାହୁଁ । ସର୍ବଦା ଆମେ ଚାହିଁଛୁ ନନା ଆମପାଇଁ ସମୟ ବିନିଯୋଗ ନକରି ସାହିତ୍ୟ ପାଇଁ ଅଧିକ ସମୟ ଦିଅନ୍ତୁ । ସେ କିନ୍ତୁ ସର୍ବଦା ସ୍ୱଭାବ ପ୍ରତିଷ୍ଠିତ । ତାଙ୍କର ଇଚ୍ଛାକୁ ଆମେ କେବେ ପ୍ରଶ୍ନ କରିନାହୁଁ । ପ୍ରତ୍ୟେକ ଜନ୍ମଦିବସରେ ଆମେ ଇଷ୍ଟଦେବତାଙ୍କ ପାଖରେ ପ୍ରାର୍ଥନା କରୁ ତାଙ୍କର ସ୍ୱାସ୍ଥ୍ୟ, ସୃଜନଶୀଳତା ଓ ବିଶ୍ୱଦୃଷ୍ଟି ସହ ଦୀର୍ଘଜୀବନ ପାଇଁ ।

ଆମ ପରିବାରରେ ବୋଉ, ଆମେ ଦୁଇ ଭାଇ ଓ ଗ୍ରିଭଉଣୀ । ଆମ ପରିବାରଠାରୁ ଅଧିକ ସତ୍ୟ ଆମ ବର୍ଦ୍ଧିଷ୍ଣୁ ପରିବାର । ମୋର ଅନେକ ଭାଇଭଉଣୀ ପ୍ରବୀଣା, ହୃଷୀକେଶ, ବାଉରୀବନ୍ଧୁ, ପଞ୍ଚମକନ୍ୟା କଳ୍ପନା, ବିଭୁ, ପ୍ରସନ୍ନ....ମୁଁ ନିଃସଙ୍କୋଚରେ କହିପାରେ ଯେ ଓଡ଼ିଆଟିଏ ଓଡ଼ିଶା ଭୂଇଁରେ ହେଉ ବା ପ୍ରବାସରେ ହେଉ ଯେତେବେଳେ କଲମଟିଏ ଧରିଲେଖେ ବା ଦ୍ୱିପାଦଭୂମିରେ ଠିଆ ହୋଇ କହେ ସମସ୍ତଙ୍କ ସାମ୍ନାରେ ବା ତୁଳୀଟିଏ ବା ନିହାଣ ବା ମାଟିରେ ସର୍ଜନାଟି କରିବା ଆରମ୍ଭ କରେ ମୋତେ ଲାଗେ ସେ ମୋର ଅତିଆପଣାର, ଆମ କ୍ରମବର୍ଦ୍ଧିଷ୍ଣୁ ପରିବାରର ସଦସ୍ୟ । ସେମାନେ ସମସ୍ତେ ନନାଙ୍କ ଆଦରଣୀୟ ।

ନନାଙ୍କ ଜନ୍ମତିଥିରେ ବୋଉ ବିଷୟରେ ଅଳ୍ପ ନଲେଖିଲେ ଏ ଲେଖା ହେବ ଅପୂର୍ଣ୍ଣ । ଆମ ସମସ୍ତଙ୍କ ଆଦରଣୀୟା ସ୍ନେହମୟୀ ବୋଉର ଭୂମିକା ଆମ ପରିବାର ପାଇଁ ଯେ କେତେ ଗୁରୁତ୍ୱପୂର୍ଣ୍ଣ ତାହା ସମସ୍ତେ ଜାଣନ୍ତି । ଷଠୀଓଷା ଦିନ ତାର ଜନ୍ମତିଥି । ତା'ର ଜନ୍ମଦିନ ବି ଘରେ, ସରଳ ନିରାଡ଼ମ୍ବର ଭାବେ ପାଳିତ ହୁଏ । ତାକୁ ଖୁବ୍ ଭଲ ଲାଗେ ଯେତେବେଳେ ଆମେ ତାକୁ ଶୁଭଜନ୍ମଦିନ ସଦିଚ୍ଛା ଜଣାଉ । ଯେତେବେଳେ ଛୋଟ ଛୋଟ ନାତି ନାତୁଣୀମାନେ ସୁଦୂରରୁ "ହେପି ବାର୍ଥ ଡେ ଆଈ" ବା ଜେଜେମା କହନ୍ତି ତା' ଆଖିରୁ ଆନନ୍ଦାଶ୍ରୁ ଝରିଯାଏ ଆମକୁ ଆଶୀର୍ବାଦ କରି । ତା'ର ଜନ୍ମଦିନକୁ ଭୁଲିଗଲେ ବା ବିଳମ୍ବରେ ମନେପକାଇଲେ ସେ ହସି ହସି କ୍ଷମା କରିଦିଏ ଆମକୁ । ମୋର ଜନ୍ମଦାତ୍ରୀ ବୋଉକୁ ପ୍ରଣାମ କରୁଛି ନନାଙ୍କ ଏ ଶୁଭ ଜନ୍ମତିଥିରେ । ଯେତେହେଲେ ବି ନନାଙ୍କ ପ୍ରଥମ ପାଠିକା ବୋଉ ଓ ପ୍ରଥମ ପାଠକ ମୁଁ ପାରିବାରିକ ସଂପର୍କ ଓ ସାହିତ୍ୟ ସଂପର୍କର ଯୁଗଳବନ୍ଦୀ । ନନାଙ୍କ ଦିନଚର୍ଯ୍ୟାର ସମୟାନୁବର୍ତ୍ତିତା ବୋଉ ପାଇଁ ହିଁ ସଂଭବ ହୁଏ । ନନାଙ୍କ ପାଇଁ ନିର୍ଦ୍ଦିଷ୍ଟ ଆହାର, ଗସ୍ତ ସମୟର ଟିକିନିଖି ପ୍ରସ୍ତୁତି, ବିଶ୍ରାମ ବ୍ୟାଘାତ ନକରିବା, ଅତିଥିମାନଙ୍କ ସାଦର ସତ୍କାର, ଆମ ବାସଭବନରେ ଓ୍ୱାର୍ଲଡ଼ ୟୁନିୟନର ସଭାକୁ ଆପଣେଇ ନେବାରେ ବୋଉର ସ୍ୱତନ୍ତ୍ର ଭୂମିକା ରହିଛି । ଆମ ମାନଙ୍କ ଠାରୁ ବିଶେଷକରି ମୋ ଠାରୁ ଛୋଟ ଉପଢୌକନଟିଏ ପାଇଲେ ବୋଉର ମନ କୁଣ୍ଢେମୋଟ ହୋଇଯାଏ । ଖୁସିରେ ଗଦ୍ ଗଦ୍ ହୋଇଯାଏ । ବାରମ୍ବାର ଦେଖେ ତାକୁ । ସାଇତିରଖେ ତା ଗନ୍ତାଘରେ ।

ଋତାୟନ, ଋଷିକେଶ, ବ୍ରତତୀଅନୁରାଗିଣୀ, ଟିନା, ଟିଡ଼ି, ସତରୂପା, ନାତିନାତୁଣୀ ନନାବୋଉଙ୍କ ଅତିଆଦରର ପିତୁଳା । ବୋହୂ ସଂଘମିତ୍ରା କ୍ୱାଇଁ ତ୍ରିଲୋଚନ, ସୁଭାଷ, ଜ୍ଞାନେଶ ନନାବୋଉଁଙ୍କ ପ୍ରାଣଧନ । ଆମେ ସମସ୍ତେ ନନାବୋଉଙ୍କ ଠାରୁ ଦୂରରେ କାର୍ଯ୍ୟରତ ତଥାପି ସେ ଦୁହେଁ ଆମ ପାଖରେ ସର୍ବଦା ବିରାଜମାନ । ସେମାନଙ୍କ ଠାରୁ ପ୍ରାପ୍ତ କାୟିକ,

ମାନସିକ ଓ ବାଚିକ ଆହାର ଚିରକାଳପାଇଁ ଆମ ମାନଙ୍କର ପାଥେୟ ହୋଇ ରହିବ ଏଥିରେ ଦ୍ୱିମତ ନାହିଁ । ଜୀବନର ଶୃଙ୍ଖଳା ଜୀବନଠାରୁ ବେଶୀ ମୂଲ୍ୟବାନ; କାରଣ ସେହି ଶୃଙ୍ଖଳାରୁ ହିଁ ଜୀବନ ତା'ର ମୂଲ୍ୟ ପ୍ରାପ୍ତ ହୋଇଥାଏ - ଏ ଶିକ୍ଷା ମୁଁ ପାଇଛି ସେମାନଙ୍କ ଦିନଚର୍ଯ୍ୟାରୁ ।

ଜୀବନର ବିଭିନ୍ନ ପରିସ୍ଥିତିରେ ତଥା ସ୍ଥାନକାଳପାତ୍ର ଭେଦରେ ମୋର ଆଗ୍ରହ ଓ ବ୍ୟବହାରକୁ ନନାଙ୍କ ଆଶୀର୍ବାଦ ଓ ବୋଉର ସ୍ନେହ ସର୍ବଦା ଅନୁପ୍ରାଣିତ କରୁ ।

ବି- ୧୭୪, ସେକ୍ଟର - ୧୮
ରାଉରକେଲା - ୩
ସଭ୍ୟ ଅଭିନନ୍ଦନ ସମିତି

୧

# ଅସାଧାରଣଙ୍କୁ ଅଭିନନ୍ଦନ

*ମନୋଜ ଦାସ*

ସର୍ବଶ୍ରୀମାନ୍ ବାଉରୀବନ୍ଧୁ ବାବୁ ଏବଂ ଶଶିଭୂଷଣ,

ନମସ୍କାର । ଟେଲିଫୋନ୍ ଯୋଗେ ଶୁଭ ସଂବାଦ ଏବଂ ପରେ ପରେ ଇ-ମେଲ୍ ପାଇବା ବେଳକୁ ବିଳମ୍ବ ହୋଇଗଲାଣି । ଶ୍ରୀଚନ୍ଦ୍ରଶେଖର ରଥ ଅସାଧାରଣ । ତାଙ୍କ ସଂପର୍କରେ ସାଧାରଣ ପ୍ରବନ୍ଧଟିଏ ଲେଖି ମୁଁ ନିଜକୁ କର୍ତ୍ତବ୍ୟ କରିଦେଲି ବୋଲି ଭୁଲାଇ ପାରିବି ନାହିଁ । ଅନୁଶୀଳନ ଧର୍ମୀ ଲେଖା ସମୟ-ସାପେକ୍ଷ । ସମ୍ଭବତଃ ମୋ ସାମର୍ଥ୍ୟର ବହିର୍ଭୂତ । ତାଙ୍କ ପାଇଁ ଯେଉଁ ଅଭିନନ୍ଦନ ମାଲ୍ୟ ପ୍ରସ୍ତୁତ ପଥରେ, ଆଶା କରେଁ ତହିଁରେ ଗୋଲାପ ଓ ମଲ୍ଲିର ମହକ ତଥା ଇନ୍ଦ୍ରଧନୁର ସପ୍ତରଙ୍ଗ ବିଭୂଷିତ କୁସୁମ ସମାବେଶ ଭିତରେ କେତୋଟି ପତ୍ର ଏବଂ କଢ଼ ମଧ୍ୟ ରହିପାରିବେ । ଏ ଚିଠିକୁ ଶେଷୋକ୍ତ ଶ୍ରେଣୀରେ ସ୍ଥାନ ଦେଇପାରନ୍ତି ।

ବିକାଶର ଏକ ବିଶେଷ ସ୍ତରରେ ଉପନୀତ ହୋଇ ମଣିଷ ଜୀବନରେ ଯାବତୀୟ ଅନୁକୂଳ ପରିସ୍ଥିତି ସକାଶେ ଏକ ପରମ ଚେତନା ବା ଭଗବାନଙ୍କ ପାଖରେ କୃତଜ୍ଞ ହେବାର ଆବେଗ ଅନୁଭବ କରେ । ସେ ସ୍ତର ସୁନ୍ଦର; ଶୁଭଙ୍କର । ପରବର୍ତ୍ତୀ ସ୍ତରରେ ସେଭଳି କୃତଜ୍ଞତା ବୋଧ ନିମନ୍ତେ ଜଣେ ଅନୁକୂଳ ଓ ପ୍ରତିକୂଳ ଭିତରେ ତାରତମ୍ୟ ଦେଖେ ନାହିଁ । ସେ ହୃଦୟଙ୍ଗମ କରେ, ତଥାକଥିତ ସୁଖ ଦୁଃଖ, ଆପାତ ଦୃଷ୍ଟିରେ ସୌଭାଗ୍ୟ ଦୁର୍ଭାଗ୍ୟ - ସମସ୍ତ ଅଭିଜ୍ଞତାହିଁ ତା'ର ଚେତନାର ପ୍ରଗତିର ସହାୟକ । ସବୁ ପାଇଁ ସେତେବେଳେ ସେ କୃତଜ୍ଞ ।

ଭାଗ୍ୟବାନ ସାଧକ କ୍ଷେତ୍ରରେ ଏ ସ୍ତର ବି ଅତିକ୍ରାନ୍ତ ହୋଇଯାଏ । ସେତେବେଳେ ସେ ସ୍ୱତନ୍ତ୍ର ଭାବରେ କୃତଜ୍ଞ ଅନୁଭବ କରିବାର ପ୍ରଶ୍ନ ଉଠେ ନାହିଁ । କାରଣ ସର୍ବବ୍ୟାପ୍ତ ଦିବ୍ୟଶକ୍ତିର ଅନ୍ତର୍ଭୁକ୍ତ ହୋଇଥାଏ ତା'ର ଚିନ୍ତା ଓ କାର୍ଯ୍ୟକଳାପ; ବସ୍ତୁତଃ ତା'ର ସମଗ୍ର ସତ୍ତା ।

ଉପରୋକ୍ତ ତିନିସ୍ତରର ପ୍ରଥମ ସ୍ତରରୁ ମୁଁ ଉତ୍ତୀର୍ଣ୍ଣ ହୋଇନାହିଁ । ହୁଏତ ତାର ସୀମାନ୍ତରେ ଠିଆ ହୋଇ, ଦ୍ୱିତୀୟ ସ୍ତରର ମହତ୍ତ୍ୱ ଓ ମାଧୁର୍ଯ୍ୟର ବିଭୂତି ଥରେଥରେ ଅନୁଭବ କରିପାରୁଛି ମାତ୍ର ।

ଅର୍ଥାତ୍ ଜୀବନର ବହୁ ଅନୁକୂଳ ପରିସ୍ଥିତି ପାଇଁ ମୁଁ କୃତଜ୍ଞ । ତହିଁରୁ ଅନ୍ୟତମ ହେଲା ମୋର ବନ୍ଧୁଭାଗ୍ୟ । ସେଥିରେ ଭଗବାନ୍ ମୋତେ ଐଶ୍ୱର୍ଯ୍ୟଶାଳୀ କରିଛନ୍ତି । ସାହିତ୍ୟ କ୍ଷେତ୍ରରେ ଅଗ୍ରଜମାନଙ୍କର ଶୁଭେଚ୍ଛା ଯେପରି ମୋତେ ଅଭିଭୂତ କରିଛି, ମୋର ସମସାମୟିକ ସାହିତ୍ୟ ସ୍ରଷ୍ଟାମାନଙ୍କର ସହୃଦୟତା ମୋତେ ସେହିପରି କୃତାର୍ଥ କରିଛି ।

ମୋର ସେହି ଅମୂଲ୍ୟ ଆତ୍ମୀୟ ପର୍ଯ୍ୟାୟର ବନ୍ଧୁବର୍ଗଙ୍କ ଭିତରେ ଅନ୍ୟତମ ଚନ୍ଦ୍ରଶେଖର ବାବୁ । କିନ୍ତୁ ତାଙ୍କ ସହ ପରିଚୟ ତଥା, ଘନିଷ୍ଠତା ହୋଇଥିଲା ଅପେକ୍ଷାକୃତ ବିଳମ୍ବରେ । ୧୯୬୩ ମସିହାରେ ଫେବୃୟାରିରେ ମୁଁ ଶ୍ରୀଅରବିନ୍ଦ ଆଶ୍ରମରେ ଯୋଗ ଦେବା ପରେ, ସେହି ବର୍ଷ ନଭେମ୍ବର କିମ୍ବା ପରବର୍ତ୍ତୀ ବର୍ଷ ନଭେମ୍ବରରେ ଓଡ଼ିଶାର କେତେକ ପ୍ରତିଷ୍ଠାନରେ ମୋର କିଛି କିଛି କହିବାର କାର୍ଯ୍ୟକ୍ରମ ଥାଏ । ତହିଁର ଅନ୍ତର୍ଭୁକ୍ତ ବାରିପଦାର ମହାରାଜା ପୂର୍ଣ୍ଣଚନ୍ଦ୍ର କଲେଜ । ମାଜିଷ୍ଟ୍ରେଟ ଶ୍ରୀ ବିହାରୀଲାଲ ପଟ୍ଟନାୟକଙ୍କ ତତ୍ତ୍ୱାବଧାନରେ କାର୍ଯ୍ୟକ୍ରମ ହେଉଥାଏ ଏବଂ ତାଙ୍କ ଅତିଥି ହୋଇ ରହିଥାଏ । ସେହି ଅବସରରେ ପାଇଥିଲି ଅଧ୍ୟାପକ ଶ୍ରୀଚନ୍ଦ୍ରଶେଖରଙ୍କ ସାହଚର୍ଯ୍ୟ । ସାଥି ହୋଇ ରାଇରଙ୍ଗପୁର ଓ ଆଉ କେତେକ ସ୍ଥାନ ବୁଲିଥିଲୁ । ଆଜି ବି ସ୍ମୃତିରେ ଜାଗରୁକ ଆଳାପର ସେ ଆନନ୍ଦ ।

ଚନ୍ଦ୍ରଶେଖର ବାବୁ ସଦ୍ୟ ଲେଖାଲେଖି ଆରମ୍ଭ କରିଥାନ୍ତି । କିନ୍ତୁ ଉର୍ବଶୀ 'ବୃନ୍ତହୀନ ପୁଷ୍ପସମ'' ବିକଶିତ ହେବା ପ୍ରାୟେ ତାଙ୍କ ଲେଖା ମୂଳରୁ ପରିପକ୍ୱତାର ନିର୍ଭୁଲ ପ୍ରମାଣ ବହନ କରିଥାଏ ।

ଏହା ଏକ ବିରଳ ବିଶେଷତ୍ୱ ।

ବିରଳ ହେଲେ ବି ଚନ୍ଦ୍ରଶେଖର ବାବୁଙ୍କର ଅନ୍ୟାନ୍ୟ ବିଶେଷତ୍ୱରୁ ଏହା ଗୋଟିଏ । ସବୁଠୁଁ ବଡ଼ ବିଶେଷତ୍ୱ କ'ଣ ? ସୃଜନୀ ପ୍ରେରଣାର ମହତ୍ ସ୍ତରହିଁ ସମ୍ଭବତଃ ସବୁଠୁଁ ବଡ଼ ବିଶେଷତ୍ୱ । ସେ ସ୍ତରର ପଛଭୂମି ତାଙ୍କ ଜୀବନର ଆଧ୍ୟାତ୍ମିକ ଦିଗ - ସର୍ବୋତ୍ତମ ଦିଗ ।

ତାଙ୍କ ଗଙ୍ଗା ଉପନ୍ୟାସର ଉତ୍କର୍ଷ ସର୍ବଜନବିଦିତ । କିନ୍ତୁ ସେ ଜଣେ ଶକ୍ତିମାନ୍ ଚିନ୍ତାବିଦ୍ ମଧ୍ୟ । ତାଙ୍କ ନିବନ୍ଧ ସମୂହରେ ଆମକୁ ଭାବିତ ଏବଂ (ଗଠନମୂଳକ ଅର୍ଥରେ)

ବିବୃତ କଲାଭଳି ଧ୍ୟାନ ଧାରଣା ସହ ସୁଗମ ଓ ସୁନ୍ଦର କଥନ କଳାର ସମାହାର ଚମତ୍କାର ।

ଏସବୁ ତାଙ୍କ ଗହନ ସୃଜନାତ୍ମକ ଦିଗ । ସାମାଜିକ ସ୍ତରରେ ସେ ଜଣେ ଉଚ୍ଚକୋଟିର ବକ୍ତା । ସଂଜତ ଭାଷା ଏବଂ ଉନ୍ନତ ଭାବର ଯେଭଳି ସାବଲୀଳ ଅଭିବ୍ୟକ୍ତି ତାଙ୍କ କଣ୍ଠରେ ସମ୍ଭବ ହୁଏ, ତାହାର ଦୃଷ୍ଟାନ୍ତ କ୍ୱଚିତ୍ କାହିଁ ମିଳିଥାଏ । ତାଙ୍କ ସୃଜନୀ ପ୍ରତିଭାର ଏହା ଏକ ଏକ ଦିଗ । ସୃଷ୍ଟିର ବିଚିତ୍ର ନିୟମରେ ପ୍ରତିଭା ଜଣକ ଭିତରକୁ ଅବତରଣ କରିପାରେ । ଜଣେ ପ୍ରତିଭାବାନ ଭାବରେ ଅସାଧାରଣ ହେବା ସତ୍ତ୍ୱେ ମଣିଷ ଭାବରେ ସାଧାରଣ ହୋଇପାରେ । ମଣିଷ ଭାବରେ ଚନ୍ଦ୍ରଶେଖର ବାବୁଙ୍କ ଚରିତ୍ରର ଏକ ଉଜ୍ଜ୍ୱଳ ଦିଗ ହେଲା, ଅନ୍ୟର କୃତିତ୍ୱରେ, ବଂଧୁର ଗୌରବରେ ସ୍ୱତଃସ୍ଫୁର୍ତ୍ତ ଭାବରେ ସେ ନିଜେ ଉତ୍‌ଫୁଲ୍ଲ ଅନୁଭବ କଲାଭଳି ସୁମହତ୍ ସ୍ୱଭାବର ଅଧିକାରୀ । ଏ ଉତ୍କର୍ଷ, ଏ ପ୍ରସାରିତ ଚେତନା ସହଜଲଭ୍ୟ ନୁହେଁ ।

ଶ୍ରୀ ଚନ୍ଦ୍ରଶେଖର ରଥ ଅସାଧାରଣଙ୍କୁ ମୋର ଅଭିନନ୍ଦନ ।

ଶ୍ରୀଅରବିନ୍ଦ ଆଶ୍ରମ
ପଣ୍ଡିଚେରୀ

***

# ଅନବଦ୍ୟ ସ୍ରଷ୍ଟା ଚନ୍ଦ୍ରଶେଖର

*ଜାନକୀ ବଲ୍ଲଭ ପଟ୍ଟନାୟକ*

ଶ୍ରୀ ଚନ୍ଦ୍ରଶେଖର ରଥ ଓଡ଼ିଆ ସାହିତ୍ୟର ଜଣେ ଶ୍ରେଷ୍ଠ ଶିଳ୍ପୀ । ଗଳ୍ପ, ଉପନ୍ୟାସ, ପ୍ରବନ୍ଧ, ରମ୍ୟରଚନା ସବୁ କ୍ଷେତ୍ରରେ ଓଡ଼ିଆ ସାହିତ୍ୟ ତାଙ୍କର ଅମ୍ଳାନ ସ୍ୱାକ୍ଷର ବହନ କରି ଚାଲିଛି । ରେନେସାଁ ସମୟରେ ଏପରି ବହୁ ଲେଖକ, କବି, ଚିତ୍ରକର, ଶିଳ୍ପୀ ଓ ସଙ୍ଗୀତକାର କଳା, ସାହିତ୍ୟ ଓ ସଙ୍ଗୀତରେ ଏକ ନୂତନ ଯୁଗ ଓ ଜାଗରଣ ସୃଷ୍ଟି କରିଥିଲେ ଏବଂ ଓଡ଼ିଆ ସାହିତ୍ୟରେ ଉନବିଂଶ ଶତାବ୍ଦୀରେ ତା'ର ପୁନରାବୃତ୍ତି ହୋଇଥିଲା ଓ ପରବର୍ତ୍ତୀ ଶତାବ୍ଦୀରେ ତା'ର ଅଭିବୃଦ୍ଧି ସାଧିତ ହେଲା । ଶ୍ରୀ ଚନ୍ଦ୍ରଶେଖର ରଥଙ୍କୁ ସେହି ସ୍ରଷ୍ଟାମାନଙ୍କ ମଧ୍ୟରେ ଗଣାଯିବା ଅତ୍ୟୁକ୍ତି ହେବ ନାହିଁ ।

ତାଙ୍କର ଏକ ନିଜସ୍ୱ ଗଦ୍ୟ ଶୈଳୀ ପାଠକର ମନକୁ ପ୍ରଭାବିତ କରେ । ପରିଶ୍ରମ କରି ସେ ଲେଖକ ହେବାପାଇଁ ଚେଷ୍ଟାକରି ନାହାଁନ୍ତି । ତାଙ୍କ ଅନ୍ତରର ସ୍ୱତଃସ୍ଫୂର୍ତ୍ତ ଭାବକୁ ପ୍ରକାଶ ନ କଲେ ସେ ନିଜକୁ ଏକ ଅବରୁଦ୍ଧ କୋଠରୀରେ ଥିବାପରି ମନେକରନ୍ତି । "Papa Papa pity take, No more shall I verses make" - ବାପାଙ୍କ ଚାପରେ ଅତିଷ୍ଠ ରୋମାନ୍ କବିଙ୍କର ଏହି ଉକ୍ତି ପରି ଚନ୍ଦ୍ରଶେଖର ବାଦବିସମ୍ବାଦ, ବାଧା ଓ ପ୍ରତିରୋଧକୁ ନ ମାନି ତାଙ୍କର ସ୍ୱଚ୍ଛ ହୃଦୟର ଭାବାବେଗକୁ ସୃଷ୍ଟି ମଧ୍ୟରେ ପ୍ରକାଶ କରିଛନ୍ତି । ସମୟର ପରିବର୍ତ୍ତନ ଘଟୁଛି । ନୂତନକୁ ସ୍ୱାଗତ ନ କରି କୌଣସି ଲେଖକ ଉନ୍ନତ ସୃଷ୍ଟି କରି ପାରିବ ନାହିଁ । କିନ୍ତୁ ନୂତନକୁ ସ୍ୱାଗତ କରିବାର ଅର୍ଥ ନୁହେଁ ଯେ ପୁରାତନକୁ ସଂପୂର୍ଣ୍ଣ ଭାବରେ ଭୁଲିଯିବା । ସଂସ୍କୃତ କବି ଯଥାର୍ଥରେ କହିଥିଲେ—

ପୁରାଣ ମିତ୍ୟେବ ନ ସାଧୁ ସର୍ବମ୍
ନ ଚାପି କାବ୍ୟଂ ନବମିତ୍ୟବଦ୍ୟମ୍
ସନ୍ତଃ ପରୀକ୍ଷ୍ୟା ନ୍ୟତରଂ ଭଜନ୍ତେ
ମୂଢ଼ଃ ପରପ୍ରତ୍ୟୟନେୟ ବୁଦ୍ଧିଃ ।

ସବୁ ପୁରୁଣା ଯେ ଭଲ ତା ନୁହେଁ । ନୂଆ ମଧ୍ୟ ଖରାପ ନୁହେଁ । କିନ୍ତୁ ସଜ୍ଜନମାନେ (ସମାଲୋଚକମାନେ) ରଚନାକୁ ପରୀକ୍ଷା କରି ଯାହା ଭଲ ତାକୁ ହିଁ ଆଦର କରନ୍ତି । ମୂଢ଼ମାନେ ଅନ୍ୟମାନଙ୍କ ବୁଦ୍ଧିରେ ପରିଚାଳିତ ହୁଅନ୍ତି । କେବଳ ଆଧୁନିକତାର ସୁଅରେ

ଭାସିଯିବାର ଚନ୍ଦ୍ରଶେଖର ପକ୍ଷପାତି ନୁହଁନ୍ତି । ତାଙ୍କର 'ଓଡ଼ିଆ ସଂସ୍କୃତିର ଅତୀତ ଓ ବର୍ତ୍ତମାନ' ପ୍ରବନ୍ଧରେ ସେ ଲେଖିଛନ୍ତି —''ନଈର ସୁଅ କାଟି ନିର୍ଦ୍ଦିଷ୍ଟ ଦିଗରେ ଯିବା ସିନା ଜାଗ୍ରତ, ଦାୟିତ୍ୱବାନ, ସମର୍ଥ ଓ ମର୍ଯ୍ୟାଦାବନ୍ତ ମଣିଷର କାମ । କିନ୍ତୁ ସ୍ରୋତରେ ଭାସିଯିବାର ସହଜ ପ୍ରକ୍ରିୟାକୁ ଆମେ ଆପଣେଇ ନେଇଛୁ । ପୃଥିବୀରେ ଅନେକ ସଂସ୍କୃତି ଲୋପ ପାଇଯାଇଛି । ଆମ ସଂସ୍କୃତିର ପରମ୍ପରା ଏଇଠି ଯଦି ଛିଣ୍ଡିଯାଏ ସେଥିରେ ସୃଷ୍ଟି ଗୋଡ଼ିମାଟି ହୋଇଯିବ ନାହିଁ । ଜୀବନର ପ୍ରବହମାନତା ଅନିବାର୍ଯ୍ୟ । କାରଣ ତାହା ଆମ ହାତରେ ନାହିଁ, କିନ୍ତୁ ସଂସ୍କୃତିର ପ୍ରବହମାନତା ପାଇଁ ଆମେ ହିଁ ଦାୟୀ । ପ୍ରବଳ ସୁଅ ମୁହଁରେ ଯଦି ଏବେ ତାକୁ ଛାଡ଼ି ଭାସିଯିବା ଆଉ ଦୁଇ ପୁରୁଷ ପରେ ସଚେତନ ଓଡ଼ିଆ ପୁଅମାନେ ଖୋଜିଲେ ଆଉ ତାକୁ ପାଇବେ ନାହିଁ । ବୈତରଣୀରେ କାର୍ତ୍ତିକ ପୂର୍ଣ୍ଣିମାର କଦଳି ବାଉଙ୍ଗା ଦୀପ ଅନେକ ଦୂରକୁ ଭାସିଯାଇଥିବ ।''

ପୃଥିବୀର ସର୍ବଶ୍ରେଷ୍ଠ ଲେଖକ ଓ କବିମାନେ ଅତୀତର ପ୍ରେରଣା ଲାଭ କରି ତାଙ୍କର ଭବିଷ୍ୟତ କାବ୍ୟ କବିତାର ସୌଧ ନିର୍ମାଣ କରିଛନ୍ତି । ରବୀନ୍ଦ୍ରନାଥ ଭାରତୀୟ ସଂସ୍କୃତିର ମୂଳାଧାର, ଗୀତା, ଉପନିଷଦ୍ ଦ୍ୱାରା ବହୁଳ ଭାବରେ ପ୍ରଭାବିତ । ଟି.ଏସ୍. ଏଲିଅଟ୍ ତାଙ୍କର ଆଧୁନିକ କବିତାରେ ଉପନିଷଦ୍‌ର ଅନେକ ବାକ୍ୟ ଉଚ୍ଚାରଣ କରିଛନ୍ତି । ଶ୍ରୀ ରଥ ମଧ୍ୟ ପ୍ରାଚୀନ ସଂସ୍କୃତ ସାହିତ୍ୟ ଓ ଓଡ଼ିଆ ସାହିତ୍ୟରେ ପ୍ରବୀଣ ଓ ତାର ପ୍ରଭାବ ତାଙ୍କର ଲେଖାମାନଙ୍କ ଉପରେ ପଡ଼ିଛି ।

ପୁରାତନ ମଧ୍ୟରେ ନୂତନତ୍ୱ ଉପଭୋଗ କରିବାକୁ ହେଲେ ତାଙ୍କର ଗଳ୍ପ, ଉପନ୍ୟାସ, ବିଶେଷ ଭାବରେ ପ୍ରବନ୍ଧ ପାଠ କରିବା ଆବଶ୍ୟକ । ତାଙ୍କର ଗୋଟିଏ ରମ୍ୟରଚନା 'ମୁଁ କ୍ଷେତ୍ର ଯିବି'ର ଏକ ଅଂଶ ଏଠାରେ ଉଦ୍ଧାର କରାଯାଉଛି । 'ଅଞ୍ଜଳିବଦ୍ଧ ହୋଇ ମୋର ହାତ ଯୋଡ଼ିକ ଯଦି କଟାଳ କରନ୍ତି ଯେ, ସେମାନଙ୍କର ଚରମ ଅଭିଳାଷ ଚରିତାର୍ଥ କରିବାକୁ ସେମାନେ ପ୍ରଭୁର ଗରୁଡ଼ ଖମ୍ବକୁ ଥରେ କୁଣ୍ଢାଇବେ; ଗୋଡ଼ ଯୋଡ଼ିକ ଥାଇ କହନ୍ତି ଯେ, ଶରଧା ବାଲିରେ ଘଡ଼ିଏ ମାତ୍ର ଠିଆ ହେବେ ଏବଂ ଆଖି ଯୋଡ଼ିକ ଅପଲକ ଶୂନ୍ୟକୁ ଗ୍ୱହିଁ ଯାଚନା କରନ୍ତି ଯେ, ପ୍ରଭୁର ଚକାନୟନରେ ଥରେ ପଖାଳି ହେବେ— ତେଣିକି ମୋର ଆଉ କ'ଣ ଆୟତ୍ତ ଥାଇପାରେ ? ମୋ ବଚନ ସତ୍ୟ, ସୁଧିଜନେ । ମୋ ଅଙ୍ଗେ ଅଙ୍ଗେ ଉହଣ୍ଡା । ରୋମେ ରୋମେ ଉନ୍ମୁଖତା, ମୋର ଶାଖାରେ ଶାଖାରେ ଗୋଟିଏ ମାତ୍ର ଶ୍ୟାମଳ ସତ୍ୟ ପଲ୍ଲବିତ ! ମୁଁ କ୍ଷେତ୍ର ଯିବି ସୁଧିଜନେ ! ମୋତେ ବାଟ କାଢ଼ି ନେଇଯାଅ । ସଂସାର ହୁଗୁଳି ଯାଅ ମୋ ପାଦରୁ, ମୋତେ ମୁକ୍ତକର ।

କର୍ମଜଞ୍ଜାଳ ଖସିପଡ଼ ମୋ ହାତ ଯୋଡ଼ିକରୁ, ମୋତେ ସ୍ୱଚ୍ଛନ୍ଦ କର, ସହଜ କର ! ମୋ ଆଖିଯୋଡ଼ିକରୁ ପୋଛିହୋଇ ଯାଉ ମୋହାଞ୍ଜନ । ମୋତେ ଦୃଷ୍ଟିଦିଅ । ହେ ଦଶଦିଗପାଳ, ମୋତେ ଧରି ରଖ ! ଦେବତା, ଗନ୍ଧର୍ବ, ଯକ୍ଷ, ରକ୍ଷାଦି ମୋତେ ବେଢ଼ି ରହ । ହେ ମୋର ଅଗଣିତ ପିତୃପୁରୁଷ, ମୋ ପାଛରେ ଠିଆ ହୁଅ । ମୁଁ କ୍ଷେତ୍ର ଯିବି ! ମୁଁ କ୍ଷେତ୍ର ଯିବି ! ମୁଁ କ୍ଷେତ୍ର ଯିବି !'' ଏଥିରେ ଲେଖକଙ୍କର ଭାବ, ଭାଷା ଓ ସୃଷ୍ଟିଚେତନାର ମଧୁରତା ଓ ଗଭୀରତା ସ୍ପଷ୍ଟ ବାରିହୁଏ ।

ଚନ୍ଦ୍ରଶେଖର ବାବୁଙ୍କର ୭୫ ତମ ଜନ୍ମ ଦିନରେ ମୁଁ ତାଙ୍କର ଦୀର୍ଘ ନିରାମୟ ଜୀବନ କାମନା କରିବା ସଂଗେ ସଂଗେ ତାଙ୍କର ସାହିତ୍ୟ ସୃଷ୍ଟି ଅକ୍ଷୁଣ୍ଣ ରହୁ ବୋଲି ବିଶ୍ୱ ସ୍ରଷ୍ଟାଙ୍କଠାରେ ପ୍ରାର୍ଥନା କରୁଛି ।

ପୂର୍ବତନ ମୁଖ୍ୟମନ୍ତ୍ରୀ, ଓଡ଼ିଶା

***

# ପ୍ରଜ୍ଞା ପୁରୁଷ

**ସୂର୍ଯ୍ୟକାନ୍ତ ଦାସ**

ପ୍ରଫେସର ଚନ୍ଦ୍ରଶେଖର ରଥ ଜଣେ ପ୍ରଜ୍ଞା ପୁରୁଷ । ଏ ବିଷୟରେ ମୁଁ ନିଃସନ୍ଦେହ । ସେ ଅସୀମ ପ୍ରତିଭା ସଂପନ୍ନ ବିଦ୍ୱାନ ଅଟନ୍ତି । ସୁଲେଖକ ଓ ସୁସାହିତ୍ୟକ । ଓଡ଼ିଶାର ସାହିତ୍ୟ ଗଗନରେ ଉଜ୍ଜ୍ୱଳ ଜ୍ୟୋତିଷ୍କପରି ଜାଜ୍ଜ୍ୱଲ୍ୟମାନ । କବିତା, ଗଳ୍ପ, ଉପନ୍ୟାସ, ପ୍ରବନ୍ଧ, ଲଳିତ ରଚନାରେ ଖ୍ୟାତନାମା ସାହିତ୍ୟକ । କେବଳ ସାହିତ୍ୟ ନୁହେଁ, ସାହିତ୍ୟ, ସଂସ୍କୃତି, ଇତିହାସ, ଧର୍ମଶାସ୍ତ୍ର, ବେଦ-ଉପନିଷଦ-ଗୀତା ଆଲୋଚନା, ରାମକୃଷ୍ଣ, ବିବେକାନନ୍ଦ, ଶ୍ରୀ ଅରବିନ୍ଦଙ୍କ ଚିନ୍ତାଧାରା ବୟାନ କରିବାରେ ସେ ଅସାଧାରଣ କୃତୀତ୍ୱ ଅର୍ଜନ କରିଛନ୍ତି । ସାହିତ୍ୟ ସୃଷ୍ଟି ଓ ଧର୍ମ ଧାରା ବ୍ୟାଖ୍ୟାନରେ ଏପରି କୌଣସି ଦିଗ ନାହିଁ, ଯେଉଁଥିରେ ପ୍ରଫେସର ଚନ୍ଦ୍ରଶେଖର ରଥ ଶିଖର ସ୍ତରକୁ ନ ଯାଇଛନ୍ତି । ଯାହା ସ୍ପର୍ଶ କରନ୍ତି, ସବୁ କିଛି ମହନୀୟ ହୋଇଯାଏ, ତାଙ୍କ ଚିନ୍ତାଧାରାରେ 'ମ୍ୟାଜିକ୍' ଅଛି, କଲମ ମୁନରେ କାଉଁରୀ ଶକ୍ତି ରହିଛି । ସବୁ ବେଳେ ନୂଆ କଥା ଲେଖନ୍ତି । ନୂଆ ଶୈଳୀ ସୃଷ୍ଟି କରନ୍ତି । ପାଠକ-ପାଠିକା ମାନଙ୍କୁ ନୂତନ ରସ ଆସ୍ୱାଦନ ସୁଯୋଗ ଦିଅନ୍ତି । ଭାଷଣ ପ୍ରଦାନ ବେଳେ ଶ୍ରୋତା ମଣ୍ଡଳୀକୁ ଚମତ୍କୃତ କରାନ୍ତି । ମନ୍ତ୍ରମୁଗ୍ଧ କରାଇ ପାରନ୍ତି, ଉନ୍ମାଦିତ କରନ୍ତି । ଉଦ୍ଦୀପନା ଖେଳାଇ ଦେଇଥାନ୍ତି ।

ନୂତନ ଆଲୋକ, ଜ୍ଞାନାଲୋକ, ବିକିରଣ କରନ୍ତି । ପ୍ରଫେସର ଚନ୍ଦ୍ରଶେଖର ରଥ ତାଙ୍କ ଭାଷଣରେ କ'ଣ କହିବେ, କିପରି ଶୈଳୀରେ କହିବେ, ତାହା ମୁଁ ଚାତକ ପରି ଅନେଇ ଥାଏ ଏବଂ ତାଙ୍କ ବକ୍ତୃତା ଶୁଣି ମୁଗ୍ଧ ହୁଏ । ସେଇଥିରୁ ତାଙ୍କ ଜୀବନ-ଦର୍ଶନ ଓ ମୂଲ୍ୟବୋଧର ଆଭାସ ମୋତେ ମିଳିଥାଏ ।

ବାଗ୍ମୀ ଭାବରେ ସାଂପ୍ରତିକ ଓଡ଼ିଶାରେ (ମୋ' ମତରେ) ସେ ଅଟନ୍ତି ଅଦ୍ୱିତୀୟ । ଭାଷଣ ଦେବା ବେଳେ ତାଙ୍କ କଣ୍ଠରେ ସରସ୍ୱତୀ ବିଜେ କରିଛନ୍ତି ବୋଲି ମୋର ଦୃଢ଼ ଧାରଣା ହୁଏ । ପଣ୍ଡିତ ନୀଳକଣ୍ଠ ଦାସଙ୍କ ସଂକ୍ରାନ୍ତରେ ଗୋଟିଏ ଭାଷଣରେ ଚନ୍ଦ୍ରଶେଖର ବାବୁ କହିଥିଲେ—ନୀଳକଣ୍ଠଙ୍କ 'ଭାବ ମୂର୍ତ୍ତିରେ ହୁଏତ କିଛି ଦେବତା ମିଶି ଥାନ୍ତି, କିଛି କିଛି ଟଲଷ୍ଟୟ ମିଶିଯାନ୍ତି, କିଛି କିଛି ପ୍ଲାଟୋ ମିଶିଯାନ୍ତି ।''

ପଣ୍ଡିତ ନୀଳକଣ୍ଠଙ୍କ ସଂପର୍କରେ ପ୍ରଫେସର ରଥ ଯାହା କହିଥିଲେ, (ମୋ ବିଶ୍ୱାସରେ) ତାହା ଖୋଦ୍ ପ୍ରଫେସର ଚନ୍ଦ୍ରଶେଖର ରଥଙ୍କ ଲାଗି ମଧ୍ୟ ପ୍ରଯୁଜ୍ୟ ଅଟେ । ପ୍ରଫେସର ରଥ ଜଣେ ଉଚ୍ଚକୋଟୀର ସୁବକ୍ତା । କେବଳ ସୁବକ୍ତା ନୁହନ୍ତି, ଅକଳ୍ପନୀୟ ଉଚ୍ଚକୋଟୀର

ସୁବକ୍ତା । ଭାଷଣ ବେଳର ତାଙ୍କର ମନ୍ତ୍ର ହେଉଛି—"ମୌଳିକତା ଚିନ୍ତାରେ, ଅନୁଭବରେ, ବକ୍ତବ୍ୟରେ, ଭାଷାରେ, ଶବ୍ଦରେ, ନ ରହିଲେ ବକ୍ତା ସଫଳ, ସାର୍ଥକ ହୋଇପାରିବ ନାହିଁ । ନିମଗ୍ନ ରହି ନିଜକୁ କହି ଜାଣିଲେ, ଅନ୍ୟକୁ କହିବା ସହଜ ।"

ଦେଶ ବିଦେଶରେ ବିରାଟ ବିରାଟ ସଭାରେ ପ୍ରଫେସର ଚନ୍ଦ୍ରଶେଖର ରଥ ଭାଷଣ ପ୍ରଦାନ କରି ଖ୍ୟାତି ଅର୍ଜନ କରିଛନ୍ତି । କଲିକତା, ଦିଲ୍ଲୀ, ହାଇଦ୍ରାବାଦ, ଲକ୍ଷ୍ନୌ, ପାଟନା, ଋଷିକେଶ, ଆମେରିକା ଯୁକ୍ତରାଷ୍ଟ୍ରର ୱାଶିଙ୍ଗଟନରେ, ଆଲାବାମାରେ, କାନାଡ଼ାର ଟରଣ୍ଟୋ ସହରରେ ପ୍ରଫେସର ରଥ "ଶ୍ରୋତା ସମୁଦ୍ର"କୁ ପ୍ରକମ୍ପିତ କରାଇଛନ୍ତି । ବିଖ୍ୟାତ କବି ଓ ଲେଖକମାନେ ଆମେରିକାରେ ଯେତେବେଳେ ଭାଷଣ ଦେବାକୁ ନିମନ୍ତ୍ରିତ ହୋଇଆସନ୍ତି, ସେତେବେଳେ ତାଙ୍କ ଭାଷଣ ଶୁଣିବାକୁ ଡଲାର ମୁଦ୍ରା ଦେଇ ଟିକେଟ ସଂଗ୍ରହ କରି ଶ୍ରୋତାମାନେ ସଭାକୁ ଆସନ୍ତି । ପ୍ରଫେସର ରଥଙ୍କ ସଭାକୁ ବୋଧହୁଏ ସେହି ଶ୍ରେଣୀୟ ଶ୍ରୋତା ଆସି ଥାଇପାରନ୍ତି । କୋଲକାତାରେ ରାମକୃଷ୍ଣ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ କଲଚର ସଭାରେ ସ୍ୱାମୀ ବିବେକାନନ୍ଦଙ୍କ ମତରେ "ବିଶ୍ୱ ସଂହତି : ସମସ୍ୟା ଓ ସମ୍ଭାବନା" ଶୀର୍ଷକରେ ପ୍ରଫେସର ଚନ୍ଦ୍ରଶେଖର ରଥ ଯେଉଁ ଭାଷଣ ପ୍ରଦାନ କରିଥିଲେ ସେଇ ସଭାରେ ଶ୍ରୋତା ମାନଙ୍କ ସଂଖ୍ୟା ଥିଲା ଚଉଦ ହଜାର । "ପାର୍ଲିଆମେଣ୍ଟ ଅଫ୍ ରେଲିଜିଅନସ୍" ନାମରେ ସେଇ ସଭା ଅନୁଷ୍ଠିତ ହୋଇଥିଲା ୧୯୯୩ ମସିହାରେ ।

ଚଉଦ ହଜାର ଲୋକଙ୍କୁ ବିଶେଷତଃ ଅନେକ ବିଦେଶାଗତ ବିଦ୍ୱାନ ଅତିଥିଙ୍କୁ ଭାଷଣ ଦେଇ ମୁଗ୍ଧ କରିବା ଶକ୍ତି ସମ୍ପନ୍ନ ବ୍ୟକ୍ତି ପ୍ରଫେସର ଚନ୍ଦ୍ରଶେଖର ରଥଙ୍କ ବ୍ୟତୀତ ଅନ୍ୟ କେହି ଦ୍ୱିତୀୟ ସମର୍ଥ ବ୍ୟକ୍ତି ଓଡ଼ିଶାରେ ନାହାନ୍ତି । ଉତ୍ତର ଭାରତ ଋଷିକେଶ ସହରଠାରୁ ଉତ୍ତର ଆମେରିକା ଟରଣ୍ଟୋ ପର୍ଯ୍ୟନ୍ତ ଜ୍ୱାଳାମୟୀ ଭାଷଣ ଦେଇଛନ୍ତି ପ୍ରଫେସର ରଥ । ସମସ୍ତଙ୍କୁ ଭାବ ବିହ୍ୱଳିତ କରାଇଛନ୍ତି ।

ଓଡ଼ିଆ ସହିତ୍ୟ ଜଗତରେ ଜଣେ ପ୍ରଖ୍ୟାତ ଅଧ୍ୟାପକ ଦାଶରଥି ଦାସ, ପ୍ରଫେସର ଚନ୍ଦ୍ରଶେଖର ରଥଙ୍କ "ଅସାଧାରଣ ବାଗ୍ମିତା-ଭାଷଣ ଦେବା ଦକ୍ଷତା"ଙ୍କୁ ପ୍ରଶଂସା କରିଛନ୍ତି । ପ୍ରଫେସର ରଥ ଭାଷଣ ଦେବା ବେଳେ ସଭାସ୍ଥଳରେ ସମସ୍ତଙ୍କୁ ଆପଣାର କରି ନିଅନ୍ତି, ଯେଉଁଠି ଯେମିତି କ୍ଷଣିକ ନିର୍ବାକ ହୋଇ (ଇଂରାଜୀରେ Pause ଦେଇ) ଶ୍ରୋତାଙ୍କୁ ଉତ୍ସୁକ କରାନ୍ତି, ଏବଂ ସ୍ଥଳ ବିଶେଷରେ ହାସ୍ୟ ରସ ବି ସୃଷ୍ଟି କରନ୍ତି । ତାଙ୍କ ଭାଷଣ ପାଣ୍ଡିତ୍ୟପୂର୍ଣ୍ଣ, ତତ୍ ସହିତ ଭାବୋଦ୍ଦୀପକ ମଧ୍ୟ ହୋଇଥାଏ । ତାଙ୍କ ବକ୍ତୃତା ଶୁଣିଲା ବେଳେ ମୋର ମନେ ହୁଏ ଏହା ଏମିତି ଚାଲୁଥାଉ; ଆଉ ଶେଷ ନ ହେଉ । ମୋ ମତରେ, ତାଙ୍କ ବକ୍ତୃତା ସର୍ବଦା ରସୋତ୍ତୀର୍ଣ୍ଣ ହୋଇଥାଏ । ସୁଚିନ୍ତିତ ଏବଂ ସ୍ୱତଃ ସ୍ଫୁର୍ତ୍ତ ମଧ୍ୟ, ବକ୍ତା ଓ ଶ୍ରୋତାଙ୍କ ମଧ୍ୟରେ ଆତ୍ମୀୟତା ସୃଷ୍ଟି ହୁଏ । ପ୍ରଫେସର ଚନ୍ଦ୍ରଶେଖର ରଥଙ୍କ ପୁତ୍ର ଶ୍ରୀଯୁକ୍ତ ଶଶିଭୂଷଣ

ରଥ ତାଙ୍କ ପିତାଙ୍କ ବକ୍ତୃତା-ଶୈଳୀ ସଂପର୍କରେ ଯଥାର୍ଥ ବର୍ଣ୍ଣନା ଦେଇଛନ୍ତି— "He speaks with inimitable clarity, conviction, equipoise, mellowness and with total faith on a better future."

ପ୍ରଫେସର ରଥଙ୍କ ସାହିତ୍ୟକ କୃତୀ ସମ୍ବନ୍ଧରେ ମୁଁ କୌଣସି ମତ ପ୍ରକାଶ କରିବାକୁ ଅକ୍ଷମ ଅଟେ । ପ୍ରଫେସର ଚିତ୍ତରଂଜନ ଦାସଙ୍କ ଉକ୍ତି ଉଦ୍ଧାର କରୁଛି । ସେ ଲେଖିଛନ୍ତି ''ଶ୍ରୀଯୁକ୍ତ ଚନ୍ଦ୍ରଶେଖର ରଥ ଯାହାକିଛି ଲେଖନ୍ତି, ସେଥିଲାଗି ସତେ ଅବା ତାଙ୍କୁ କେବେ ହେଲେ ଶବ୍ଦଗୁଡ଼ିକୁ ଖୋଜିଯିବାକୁ ପଡ଼େ ନାହିଁ ।'' ଏହା ଏକାନ୍ତ ସତ୍ୟ ଅଟେ, ପ୍ରଫେସର ରଥଙ୍କ ରଚନାରେ ମନୋରମ ଶବ୍ଦବିନ୍ୟାସ ମୋତେ ଉତ୍‌ଫୁଲ୍ଲ କରାଏ । ତାଙ୍କ ଲେଖାରେ ମୁଁ ନୂଆ ଶବ୍ଦ ପଢ଼େ; ଯଥା ''ଚନ୍ଦ୍ର ବିମ୍ବିତ ଜୁଆର'', ''ମେଘ ବଳୟିତ ଶ୍ରାବଣର କଦମ୍ବ'', ''ବ୍ୟଭିଚାରୀ ବିମ୍ବରେଖା'' ଇତ୍ୟାଦି । ତାଙ୍କ ବାକ୍ୟ ସବୁ ମୋ ଲାଗି ବିଶେଷ ସ୍ମରଣୀୟ; ଯଥା—(୧) ଏ ଶୁଷ୍କଂ କାଷ୍ଠଂ ମହାଶୟ ମାନେ ଗୋଟିଏ ଗୋଟିଏ ଦୁଷ୍ଟ ଗ୍ରହ'', (୨) ''ଜହ୍ନକୁ ମାମୁଁ ବୋଲି ଡାକିବା ବୟସରେ ଆପଣ ବେଳେ ବେଳେ ଧରିଥିବା ପ୍ରଜାପତିଟିକୁ ଛାଡ଼ି ଦେଇଛନ୍ତି, ନ ହେଲେ ତା' ମା' କୁଆଡ଼େ କାନ୍ଦିଥାନ୍ତା'', (୩) ''ଅଯାଚିତ ଯାତନା ପରି ଅଯାଚିତ କରୁଣା ମଧ୍ୟ ଏକ ଅତ୍ୟାଚାର । ମୁଁ ଚାହିଁ ନାହିଁ ତୁମ ଦିବ୍ୟ ରୂପ; ଚାହିଁ ନାହିଁ ମୋତେ ତୁମ ଦିବ୍ୟ ଦୃଷ୍ଟି ଦେଇ ଅଭିଭୂତ କରିବାକୁ ।''

ପ୍ରଫେସର ଚନ୍ଦ୍ରଶେଖର ରଥଙ୍କ ଗଳ୍ପ, ଉପନ୍ୟାସ, ନିବନ୍ଧରେ ଅନେକ ସାରଗର୍ଭକ ବାକ୍ୟ ଅଛି ଯାହାକୁ ଇଂରାଜୀରେ "Quotable Quotes" ବୋଲି ମୁଁ ମନେ କରେ ।

''ସୌକୁମାର୍ଯ୍ୟର କବି ମାନସିଂହ'' ଶୀର୍ଷକ ପ୍ରବନ୍ଧରେ ପ୍ରଫେସର ଚନ୍ଦ୍ରଶେଖର ରଥ ଲେଖିଛନ୍ତି—''ଯେ ସଦ୍ୟ ପ୍ରସ୍ଫୁଟିତ ଗୋଲାପକୁ ଦେଖି ଛୁଇଁ ଆଘ୍ରାଣ କରି ଆସ୍ୱାଦ କରି ଜାଣେ, ତା' ପାଇଁ ଉଦ୍ଭିଦ ବିଜ୍ଞାନର ବିବିଧ ତତ୍ତ୍ୱ ଅବାନ୍ତର । ରସାନୁଭବ ସ୍ୱୟଂ ହିଁ ଜ୍ଞାନ ଓ ଆନନ୍ଦ ସ୍ୱରୂପ । ତାହା କସ୍ମିନ୍ କାଳେ ପାଣ୍ଡିତ୍ୟ ସାପେକ୍ଷ ନୁହେଁ ।''

''ରସାନୁଭବ ସ୍ୱୟଂ ହିଁ ଜ୍ଞାନ ଓ ଆନନ୍ଦ ସ୍ୱରୂପ'' ବାକ୍ୟଟି କାଳ କାଳକୁ ଓଡ଼ିଆ ଭାଷାରେ ଗୋଟିଏ "Quotable quote" ହୋଇ ରହିବ ।

ସେହି ପ୍ରବନ୍ଧର ଆଉ ଗୋଟିଏ ବାକ୍ୟ କି ପ୍ରାଞ୍ଜଳ ଓ କି ହୃଦୟସ୍ପର୍ଶୀ ତାହା ଲକ୍ଷ୍ୟ କରନ୍ତୁ । ପ୍ରଫେସର ରଥ ଲେଖିଛନ୍ତି—''ଯାହା ସ୍ଥୂଳ ରୂପରେ ସରଳ, ସୂକ୍ଷ୍ମ ରୂପରେ ତରଳ, ଯାହା ପ୍ରଥମ ସ୍ପର୍ଶରେ ପୁଲକିତ କରେ, ରୋମାଞ୍ଚିତ ଓ ପରିତୃପ୍ତ କରେ, ତାହା କାବ୍ୟ ଭାଷାରେ ଛଣା ଅମୃତ ପରି ସୌକୁମାର୍ଯ୍ୟ'' । ''ଛଣା ଅମୃତ'' ଶବ୍ଦ ଦୁଇଟି ମୋ ମନରେ ଲାଖି ହୋଇ ରହିଯାଇଛି । ମୋ ପାଇଁ ଏହାର ଅପୂର୍ବ ଯାଦୁକରୀ ଶକ୍ତି ଅଛି । ଏହାକୁ ମୁଁ କହେ "Quotable quote"। ଛଣା ଅମୃତ ? କେଡ଼େ ଚିତାକର୍ଷକ ! ମନରେ ମୋର ପୁଲକ ଭରି ଦିଅନ୍ତି ଏଇ ଦୁଇଟି ଶବ୍ଦ ।

୧୯୬୩ ମସିହା ବିଷୁବ ମିଳନ ଉତ୍ସବରେ ପ୍ରଫେସର ରଥଙ୍କୁ ସମ୍ମାନିତ କରିଥିଲେ ବିଖ୍ୟାତ ପ୍ରଫେସର ହୁମାୟୁନ କବିର୍ ଏବଂ ସୁଲେଖକ ହରେକୃଷ୍ଣ ମହତାବ୍ । ତାଙ୍କ "ଉଜ୍ଜ୍ୱଳ ପ୍ରତିଭା" ଉଚ୍ଚ ପ୍ରଶଂସିତ ହୋଇଥିଲା ।

୧୯୮୧ରେ "ବରେଣ୍ୟ ସାହିତ୍ୟିକ' ରୂପେ ଚନ୍ଦ୍ରଶେଖର ରଥଙ୍କୁ ଶାରଳା ପୁରସ୍କାର ପ୍ରଦତ୍ତ ହେଲା । "ଏକ ସଂପ୍ରୀତିପୂର୍ଣ୍ଣ, ଶାନ୍ତ ଓ ସୁନ୍ଦର ସମାଜ ପ୍ରତିଷ୍ଠା ପାଇଁ ହୃଦୟର ବ୍ୟାକୁଳତା ପ୍ରକାଶ କରିଛନ୍ତି" ଏବଂ ଓଡ଼ିଆ "ସାହିତ୍ୟକୁ ମହିମା ମଣ୍ଡିତ କରି ଅଛନ୍ତି" ବୋଲି ପ୍ରଶସ୍ତି ଜ୍ଞାପନ କରାଯାଇଛି ।

ତରୁଣ ସାହିତ୍ୟକ ମାନଙ୍କୁ ପ୍ରଫେସର ଚନ୍ଦ୍ରଶେଖର ରଥ ସଦା ସର୍ବଦା ଅନୁପ୍ରାଣିତ ଓ ଉଦ୍‌ବୋଧିତ କରିଥାନ୍ତି । ତାଙ୍କ ଅଭିଳାଷ ହେଲା, ତରୁଣ ଲେଖକମାନେ "ନିର୍ଭୀକ ହୁଅନ୍ତୁ, ବିଦ୍ୱାନ ହୁଅନ୍ତୁ, ଯଶସ୍ୱୀ ହୁଅନ୍ତୁ ଓ ଆମ ମାନଙ୍କୁ ପଛରେ ପକାଇ ଆଗେଇ ଯାଆନ୍ତୁ । ସେମାନଙ୍କ କୀର୍ତ୍ତି ସୁଦୂର ପ୍ରସାରିତ ହେଉ ।"

ମୋ ବିଗ୍ୱରରେ ପ୍ରଫେସର ଚନ୍ଦ୍ରଶେଖର ରଥ ନିଜେ ଅଟନ୍ତି A writer with a Mission. ତାଙ୍କୁ ମଧ୍ୟ ମୁଁ ବର୍ଣ୍ଣନା କରିପାରେ A writer with a Vision. ଓଡ଼ିଶାର ଜଣେ ବରପୁତ୍ର ରୂପେ ସାହିତ୍ୟ ଓ ସଂସ୍କୃତି ଉଭୟ କ୍ଷେତ୍ରରେ ତାଙ୍କ ଅବଦାନ ଅତୁଳନୀୟ ଅଟେ । ଏଥି ନିମିତ୍ତ ସେ ନମସ୍ୟ ହୋଇ ରହିବେ; କାରଣ, ଆମ ଜାତୀୟ ଜୀବନକୁ ସେ ସମୃଦ୍ଧ କରୁଛନ୍ତି ।

ପୂଜା ପାଠ, ଆରାଧନା, ଧର୍ମ ଚର୍ଚ୍ଚା, ସାହିତ୍ୟ ସେବା, ଲେଖାଲେଖି—ଏ ସବୁ ହେଲା ପ୍ରଫେସର ଚନ୍ଦ୍ରଶେଖର ରଥଙ୍କ ଦୈନନ୍ଦିନ ଜୀବନ କାର୍ଯ୍ୟନିର୍ଘଣ୍ଟ । ଶାରିରୀକ ବ୍ୟାୟାମ ଓ ମାନସିକ କସରତ ଉଭୟର ସମ୍ମିଶ୍ରଣ ସେ ଘଟାଇଛନ୍ତି ନିଜ ବ୍ୟକ୍ତିତ୍ୱରେ । ଆଧ୍ୟାତ୍ମିକ ବ୍ୟକ୍ତିତ୍ୱ ! ପରକୁ ଆପଣାର କରିବା, ଗୁଣର ଆଦର କରିବା, ସ୍ୱଚ୍ଛତାର ପରିପ୍ରକାଶ କିପରି ହୁଏ, ଏ ସବୁ ତାଙ୍କଠାରୁ ଶିଖିବାର କଥା । ତାଙ୍କ ମନ ଭିତରେ ଅଛି ସଂକଳ୍ପ, ଜିହ୍ୱାରେ ମିଷ୍ଟଭାଷା ଏବଂ ଅଧରରେ ମୃଦୁ ହାସ୍ୟ । ଏହା ମୁଁ ଲକ୍ଷ୍ୟ କରିଛି । ଜଣେ ସଂପୂର୍ଣ୍ଣ ଆଶାବାଦୀ (ଅପ୍‌ଟିମିଷ୍ଟ) ଅଟନ୍ତି ପ୍ରଫେସର ଚନ୍ଦ୍ରଶେଖର ରଥ । ତାଙ୍କ ଅପ୍ଟିମିଜିମ୍ ଦ୍ୱାରା ମୁଁ ପ୍ରଭାବିତ ହୋଇଛି ସଦା ସର୍ବଦା । ମୁଁ ବିସ୍ମୟାଭିଭୁତ ହୋଇଯାଏ । ତାଙ୍କ ମାନବିକ ସଦ୍‌ଗୁଣ ଓ ସାହିତ୍ୟକ ଗୌରବ ବିପୁଳ ଅଟେ ।

ବିଂଶ ଶତାବ୍ଦୀ ଭାରତରେ ଅବତାର ପୁରୁଷ ଅଟନ୍ତି ଗାନ୍ଧୀ, ବିବେକାନନ୍ଦ ଓ ଅରବିନ୍ଦ । ଏହି ଯୁଗଜନ୍ମା ପୁରୁଷ ମାନଙ୍କୁ ମନନ, ଚିନ୍ତନ ଓ ଅଧ୍ୟୟନ କରି ପ୍ରଫେସର ଚନ୍ଦ୍ରଶେଖର ଯାହା ଲେଖିଛନ୍ତି, ସେ ସବୁ ପଢ଼ି ମୁଁ ମୁଗ୍ଧ ହୋଇଥାଏ ।

ଅବସରପ୍ରାପ୍ତ ପ୍ରଫେସର
ଶହୀଦ ନଗର ଭୁବନେଶ୍ୱର

***

# ଅଶେଷ ଶ୍ରଦ୍ଧା ଶୁଭେଚ୍ଛା ସହ.......

***ମହାପାତ୍ର ନୀଳମଣି ସାହୁ***

ପୂର୍ବତନ ନାନାଦି କାରଣ ଓ ଅକାରଣରୁ ଏକ ଅଗମ୍ୟ ବ୍ରାତ୍ୟଦେଶ ବୋଲି ଅପନିନ୍ଦିତ ଆମର ପ୍ରିୟ ମାତୃଭୂମି ଓଡ଼ିଶାର ଗୋଟିଏ ସମୁଦ୍ରକୁଳିଆ ଧୂଳିଆ ପଲ୍ଲୀ ଦାଣ୍ଡରେ କୌଣସି ଏକ ଦିବ୍ୟ ମୁହୂର୍ତ୍ତରେ ପୁରୁଷୋତ୍ତମ ଭଗବାନଙ୍କର ତିନୋଟି ଦିବ୍ୟରଥ ଗଡ଼ିଲିବା ଫଳରେ- ଯେପରି ସେ ଦାଣ୍ଡଟି ବଡଦାଣ୍ଡ ବା ଦିବ୍ୟପଥ ନାମରେ ବିଖ୍ୟାତ ହୋଇଗଲା- ସେହିପରି ଓଡ଼ିଶାର ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ ତିନୋଟି ଉଜ୍ଜ୍ୱଳ ପ୍ରତିଭା ଦୀପ୍ତ ରଥଙ୍କର ସାରସ୍ୱତ ଆବିର୍ଭାବ ଫଳରେ ଏହାର ସାହିତ୍ୟିକ ଓ ସାଂସ୍କୃତିକ ମହିମା ଆଦିଗନ୍ତ ପ୍ରସାରିତ ହୋଇଯାଇଛି । ସେହି ସ୍ୱନାମ ଧନ୍ୟ ତ୍ରିରଥ ହେଲେ- କବିସ୍ରଷ୍ଟା ବଳଦେବ ରଥ, ଚନ୍ଦ୍ରଶେଖର ରଥ ଓ ରମାକାନ୍ତ ରଥ । ଏମାନଙ୍କ ମଧ୍ୟରେ ପ୍ରଥମ ଉଜ୍ଜ୍ୱଳତମ ରଥ ଜଣକ ମୋର ନମସ୍ୟ । ଏବଂ ଅନ୍ୟ ଦୁଇ ସମୁଜ୍ଜ୍ୱଳ ରଥ ହେଲେ ମୋର ପ୍ରିୟ ବୟସ୍ୟ ।

ଆଜି ଚନ୍ଦ୍ରଶେଖର ରଥଙ୍କର ଶୁଭ ୭୫ତମ ଜନ୍ମତିଥିରେ ତାଙ୍କର ଗୁଣ ଓ କୀର୍ତ୍ତି କୀର୍ତ୍ତନ ଓ ସ୍ମରଣ କରିବାର ଯେଉଁ ସୁଯୋଗ ମତେ ମିଳିଛି ସେଥିପାଇଁ ମୁଁ ତାଙ୍କର ଗୁଣମୁଗ୍ଧମାନଙ୍କ ପାଖରେ କୃତଜ୍ଞ । ଚନ୍ଦ୍ରଶେଖର ରଥଙ୍କ ସହ ମୋର ପ୍ରଥମ ସାକ୍ଷାତ୍ ବାରିପଦାରେ- ୧୯୬୧ ମସିହାରେ । ପ୍ରଥମ ସାକ୍ଷାତ୍‌ରେ ହିଁ ମୁଁ ତାଙ୍କର ଗୁଣ, ପ୍ରତିଭା ଓ ବ୍ୟକ୍ତିତ୍ୱରେ ମୁଗ୍ଧ ହୋଇଥିଲି । ସେ ଇଂରାଜୀ ଅଧ୍ୟାପକ ଥିଲେ ଓ ମୁଁ ଓଡ଼ିଆ ଅଧ୍ୟାପକ ଥିଲି । ବାରିପଦା ଥିଲା ବାଲ୍ୟକାଳରୁ ମୋର୍ ସ୍ୱପ୍ନର ଭୂମି । ତା'ର ପାହାଡ ପର୍ବତ, ବନ ଲତା, ପଶୁପକ୍ଷୀ ଓ ରଜା ରାଣୀ ଓ ରାଜକନ୍ୟାମାନଙ୍କୁ ନେଇ ନାନାଦି କାହାଣୀ ମୁଁ ଶୁଣିଥିଲି । ଏବେ ସେହି ସ୍ୱପ୍ନିଳ ମନ ଦେଇ ମୁଁ ସେହି ପୃଷ୍ଠ ଭୂମିରେ ଚନ୍ଦ୍ରଶେଖର ରଥଙ୍କୁ ଭେଟିଲି । ଇଂରାଜୀ, ଓଡ଼ିଆ, ସଂସ୍କୃତ ଓ ଉର୍ଦ୍ଦୁ ସାହିତ୍ୟରେ ତାଙ୍କର ପ୍ରବେଶ ଥିଲା ଯେପରି ବ୍ୟାପକ, ସେହିପରି ଗଭୀର । ଏହି ସାହିତ୍ୟ ହିଁ ହେଲା ଆମ ଭିତରେ ଯୋଗସୂତ୍ର । ବାରିପଦାର ସାଂସ୍କୃତି ଐତିହ୍ୟ ଅନନ୍ୟ । ସେତେବେଳେ ମଧ୍ୟ ବାରିପଦା କଲେଜରେ ଥିଲେ ଚନ୍ଦ୍ରଶେଖର ରଥଙ୍କ ସାଙ୍ଗକୁ ବିଖ୍ୟାତ ବାଗ୍ମୀ ପଣ୍ଡିତ ଦାର୍ଶନିକ, କାବ୍ୟରସିକ ହୃଦାନନ୍ଦ ରାୟ । ବାରିପଦା ସହରରେ ଥିଲେ ସ୍ୱର୍ଗତ କବି ଜୀବନାନନ୍ଦ ପାଣି ଏବଂ ବିଖ୍ୟାତ ସ୍ୱରଶିଳ୍ପୀ ସ୍ୱର୍ଗତ ରାଧାକୃଷ୍ଣ ଭଞ୍ଜ ତେଣୁ ଆମର ବନ୍ଧୁ-ପରିସର ଖୁବ୍ ଆନନ୍ଦ ଆଉ ଆଲୋକମୟ ଥିଲା । ପ୍ରାୟ ହିଁ ବର୍ଷକ ଜାକ ଭଞ୍ଜ ଜୟନ୍ତୀ, ରବୀନ୍ଦ୍ର

ଜୟନ୍ତୀ, ରାଗ-ସଙ୍ଗୀତ ଆସର ଓ ସାଂସ୍କୃତିକ ଅନୁଷ୍ଠାନ ଚାଲିଥାଏ । ବାରିପଦା କ୍ଲବ୍‌ରେ ଓ ଆମ ଘରମାନଙ୍କରେ ମଧ୍ୟେ ମଧ୍ୟେ ସଙ୍ଗୀତ ଆସର ଚାଲେ । ରାତି ଅଧରୁ ବଳିଯାଏ ।

ଚନ୍ଦ୍ରଶେଖର ରଥେ କ୍ଲବ୍‌ରେ ସଭ୍ୟ ଥିଲେ । ଜଣେ ଭଲ କ୍ରୀଡାବିତ୍ ଓ ବ୍ୟାୟାମ୍ କୁଶଳୀ ମଣିଷ ମଧ୍ୟ ଥିଲେ । ବେଶ୍ ବଳବାନ୍ ମଣିଷ । ତାଙ୍କର ମନୋବଳ, ପ୍ରାଣବଳ ଓ ଦେହବଳ ସେତେବେଳେ (ଏବେ ମଧ୍ୟ- ଏ ବୟସରେ) ସର୍ବସାଧାରଣରେ ଚର୍ଚ୍ଚାର ବିଷୟ ଥିଲା । ଆମେ ସମସ୍ତେ ମିଶି ମୟୂରଭଞ୍ଜର ପ୍ରାକୃତିକ ଶୋଭା ବିଭିନ୍ନ ଋତୁରେ ବିଭିନ୍ନ ସ୍ଥାନରେ ଉପଭୋଗ କରିଛୁ । ସେହି ବାରିପଦାରେ ହିଁ ସେ ଓ ମୁଁ ଶ୍ରୀମା ଶ୍ରୀଅରବିନ୍ଦଙ୍କର ଶିଷ୍ୟତ୍ୱ ଗ୍ରହଣ କରିଥିଲୁ । ସେହି ବାରିପଦାରେ ହିଁ ସେ ପ୍ରଥମେ ଓଡ଼ିଆରେ ଲେଖା ଆରମ୍ଭ କଲେ ଓ ଚାହୁଁ ଚାହୁଁ ଜନପ୍ରିୟ ଓ ବିଖ୍ୟାତ ହୋଇଗଲେ । ପ୍ରଜାତନ୍ତ୍ର ତରଫରୁ ସମ୍ମାନ ଓ ପୁରସ୍କାର ମଧ୍ୟ ପାଇଲେ । ଏହାପୂର୍ବରୁ କିନ୍ତୁ ସେ ଇଂରାଜୀରେ ଲେଖୁଥିଲେ । ରମ୍ୟରଚନା, ଗଳ୍ପ, ଉପନ୍ୟାସ ଓ କବିତା-ସବୁ କ୍ଷେତ୍ରରେ ତାଙ୍କର ପାରଦର୍ଶିତା ସ୍ୱତଃ ଅଳ୍ପଦିନ ଭିତରେ ପ୍ରମାଣିତ ହୋଇଗଲା । ତାଙ୍କର ଭାଷାଶୈଳୀ ଓ ରଚନାଶୈଳୀ ଅନନୁକରଣୀୟ, ଅନନ୍ୟ । ତାଙ୍କ ସାହିତ୍ୟ ଯେପରି ଚିନ୍ତାଗର୍ଭକ ସେହିପରି ମଧ୍ୟ ରସୋତ୍ତୀର୍ଣ୍ଣ । ତାଙ୍କ ଲେଖାରେ ଦୀପ୍ତିଗୁଣ ଓ ଦ୍ୟୁତିଗୁଣର ଚମତ୍କାର ସମନ୍ୱୟ ଘଟିଛି । ଓଡ଼ିଆ ସାହିତ୍ୟକୁ ତାଙ୍କର ଅବଦାନ ଅକଳନୀୟ । ବିଶେଷତଃ ତାଙ୍କର ସେହି ଅକଳ୍ପନୀୟ ଅନନ୍ୟ ସୃଷ୍ଟି ''ରଥସପ୍ତକ'' ଭଳି ଭକ୍ତିରସ ସମୃଦ୍ଧ ଗ୍ରନ୍ଥ (ବିଶେଷତଃ ଓଡ଼ିଆ ଜାତିର ଇଷ୍ଟ ଦେବତା ଜଗନ୍ନାଥଙ୍କୁ ନେଇ) ବିଗତ ଏକ ଶତକ ଧରି ଆମ ଭାଷାରେ କେହି ଲେଖି ନାହାନ୍ତି । ମୁଁ ସେ ଗ୍ରନ୍ଥଟିକୁ ଦଶ ବାର ଥର ପଢ଼ିଛି । ବହୁବାର ଅନ୍ୟମାନଙ୍କୁ ପଢ଼ି ଶୁଣାଇଛି । ସବୁଥର ମୋର ଆଖିରୁ ଶ୍ରାବଣ ଧାରା ଭଳି ଅଶ୍ରୁ ଝରିଛି ଏବଂ ସବୁଥର ମଧ୍ୟ ଚନ୍ଦ୍ରଶେଖର ରଥଙ୍କ ପ୍ରତି ମୋର ମନ ସମ୍ମାନ ବୋଧ ଓ କୃତଜ୍ଞତାବୋଧରେ ନଇଁ ଯାଇଛି । ଶ୍ରୀଜଗନ୍ନାଥ ଏହି ଗ୍ରନ୍ଥଟିକୁ ସାଦରେ ଗ୍ରହଣ କରିଛନ୍ତି ଏବଂ ସେଥିଯୋଗୁଁ ଆମ୍ଭେମାନେ ଏ ଯୁଗର କବିକୁଳ ମଧ୍ୟ ଧନ୍ୟ ହୋଇଛୁ ।

ସେ ଜଣେ ବିଚକ୍ଷଣ ବାଗ୍ମୀ । ତାଙ୍କର ବକ୍ତୃତା ଯେପରି ଜ୍ଞାନସିଦ୍ଧ ସେହିପରି ମଧ୍ୟ ଭାବସ୍ନିଗ୍ଧ । କଥା କହିବା ବେଳେ ତାଙ୍କର ଉପମା ଓ ନିଦର୍ଶନ ଗୁଡିକ ଅନୁପମ । ଗୋଟିଏ ଦୁଇଟି ଉଦାହରଣ ଦେଉଛି- । ଥରେ କଥା ଛଳରେ ସେ କହିଲେ- ''ପର୍ବତଟାଏ ଟେକିବା ପାଇଁ ଭଗବାନ ଶ୍ରୀକୃଷ୍ଣଙ୍କୁ ଗୋଟିଏ ଆଙ୍ଗୁଠି ମାତ୍ର ବ୍ୟବହାର କରିବାକୁ ପଡିଥିଲା । ମାତ୍ର ବଂଶୀଟିଏ ବଜାଇବାକୁ ତାଙ୍କୁ ଛ'ଟି ଆଙ୍ଗୁଠି ବ୍ୟବହାର କରିବାକୁ ପଡିଥାଏ ।'' କି ସୁନ୍ଦର ଗଭୀର ଉପମା ! ଆଉ ଥରେ କଥା କହୁ କହୁ କହିଲେ- ''ଶ୍ରୀକୃଷ୍ଣ କାହିଁକି ଶ୍ୟାମଳ ବର୍ଣ୍ଣ ଜାଣିଛ ?'' ମୁଁ କହିଲି- କାହିଁକି ? ସେ କହିଲେ-'ଜାଣିନ କି ? ନରାଣାଂ

ମାତୁଳକ୍ରମଃ ତାଙ୍କ ମାମୁଁ କଂସାସୁର କ'ଣ ଗୋରା ଥିଲା ? ଅସୁରଟାଏ । କିଟି କିଟି କଳା ରଙ୍ଗ । ଭଣଜାଙ୍କ ରଙ୍ଗ କେମିତି ଗୋରା ହୁଅନ୍ତା ?'' କି ଚମତ୍କାର ରସିକତା !

ପ୍ରଗଲ୍ଭତା ଓ ବାକ୍‌ବୈଦଗ୍ଧ୍ୟ ତାଙ୍କର ପଣ୍ଡିତ-ବ୍ୟକ୍ତିତ୍ୱର ପ୍ରଧାନ ଗୁଣ । ଆମ ଜୀବନରେ ବହୁତ ଭାବ-ପୂର୍ଣ୍ଣ ସମୟ ସବୁ ବିତିଛି । ସେ ଓ ମୁଁ ଥରେ ସମୁଦ୍ରକୂଳରେ ଘ୍ୱରିଘଣ୍ଟା ବସି ବ୍ୟାସଦେବ, ସାରଳାଦାସ ଓ ଆମ ସମ୍ବନ୍ଧେ ନାନା ରସପୂର୍ଣ୍ଣ କଥାରେ ମଜ୍ଜିଗଲୁ ।

ଆଲୋଚନାର ବିଷୟବସ୍ତୁ ଥିଲା- ବ୍ୟାସଦେବଙ୍କ ଘ୍ୱଟଶାଳୀରେ ସାରଳାଦାସଙ୍କ ସହିତ ସେ ଓ ମୁଁ ଏକାଠି ପାଠ ପଢୁଥିଲୁ । କିନ୍ତୁ ବ୍ୟାସ ଦେବଙ୍କର ସାରଳାଦାସଙ୍କ ପ୍ରତି ପକ୍ଷପାତିତ୍ୱ ଥିଲା । ଏ ସମ୍ବନ୍ଧେ ଘ୍ୱରିଘଣ୍ଟା ବାକ୍ୟାଳାପ କରି ଆମେ ହସି ହସି ଗଡିଯାଉଥିଲୁ ! ମୋତେ ପୌରାଣିକ ଚେତନାରେ ଉଜ୍ଜୀବିତ କରିବାରେ ସେ ଖୁବ୍ ଉଦ୍ଦୀପନା ଯୋଗାଉଥିଲେ ।

ଥରେ ତାଙ୍କର ଗୋଟିଏ ଗଳ୍ପ ପଢ଼ି ମୁଁ ଏତେ ରାଗି ଗଲି ଯେ - ତାଙ୍କ ସହିତ ମାସେକାଳ ମୋର ଘଣ୍ଟା ଘଣ୍ଟା ଧରି ଯୁକ୍ତିତର୍କ ଚାଲିଥିଲା । ଉଭୟେ ସେ ଗଳ୍ପକୁ ନେଇ ତା'ର ସପକ୍ଷ ଓ ବିପକ୍ଷରେ ଖୁବ୍ ତୀକ୍ଷ୍ଣ ବାଣମାନ ପରସ୍ପରକୁ ମାରୁଥିଲୁ । କିନ୍ତୁ ଶେଷ ପର୍ଯ୍ୟନ୍ତ କେହି କ୍ଷତ ବିକ୍ଷତ ହୋଇନଥିଲୁ । ତାଙ୍କର ସେ ଗଳ୍ପଟିର ଲିଖନ ଶୈଳୀ କିନ୍ତୁ ଖୁବ୍ ଚମତ୍କାର ଥିଲା । ମୁଁ କହିଲି A very bad story; but very wonderfully written. ଗଳ୍ପଟିର ନାମ ବୋଧେ ''ରାବଣ'' ।

ଅର୍ଦ୍ଧ ଶତାବ୍ଦୀ ଧରି ଆମେ ଏକାଠି ସାଙ୍ଗ ସୁଖ ହୋଇ ରହିଆସିଛୁ । ଆମ ଭିତରେ ମଧ୍ୟ ବଡ ଅବୁଝାମଣା ପରିସ୍ଥିତି ସୃଷ୍ଟି ହୋଇଛି । ବହୁ ବିଷୟରେ ଆମ ଜୀବନ-ଚର୍ଯ୍ୟା ମଧ୍ୟ ସମ୍ପୂର୍ଣ୍ଣ ପୃଥକ୍ । ତାଙ୍କର କେତେ କଥା ମଧ୍ୟ ମୋ ମନକୁ ପାଏ ନାହିଁ । କିନ୍ତୁ ସେହି ଅଦ୍ଭୁତ ପ୍ରତିଭାଶାଳୀ, ବିଚକ୍ଷଣ ଗୁଣୀ ବ୍ୟକ୍ତିଙ୍କୁ କେହି ଅପମାନ କଲେ ମୁଁ ସହିପାରେ ନାହିଁ । ଆମ ଭିତରେ କେତେ ମନୋ ମାଳିନ୍ୟ ମଧ୍ୟ ହୋଇଛି । ମାତ୍ର ସାମାଜିକ ସ୍ତରରେ ଆମେ କେହିକାହାକୁ ଅପଦସ୍ଥ କରିନାହୁଁ - ଅସମ୍ମାନ କରିନାହୁଁ । ସେ କେବଳ ସାହିତ୍ୟ ସୃଷ୍ଟି କରି ନାହାନ୍ତି । ସେ ମଧ୍ୟ ଜଣେ ବିଚକ୍ଷଣ ଚିତ୍ରଶିଳ୍ପୀ ଓ ପ୍ରସ୍ତର ଶିଳ୍ପୀ । ତାଙ୍କ ଅଙ୍କିତ ଦୁଇଟି ଛବି "milk of kindness" ଏବଂ "and yet I do'nt know" ଛବି ଦୁଇଟି ମୋ ଘରେ ମୁଁ ରଖିଛି । ତାଙ୍କ ଭଳି ଗୁଣୀପୁରୁଷ ଓଡ଼ିଶାରେ କେତେଜଣ ଅଛନ୍ତି ? ଓଡ଼ିଶା ତାଙ୍କୁ ପାଇ ଧନ୍ୟ ହୋଇଛି । ଆମ ସାହିତ୍ୟ, ସଂସ୍କୃତି କ୍ଷେତ୍ରରେ ସେ ଏକ ବିରାଟ ବ୍ୟକ୍ତିତ୍ୱ । ଆମେ ଆମ ଭିତରେ ସେଭଳି ମଣିଷକୁ ପାଇ ଧନ୍ୟ ହୋଇଛୁ ।

ସେ ମୋଠାରୁ ପ୍ରାୟ ଦୁଇବର୍ଷ ସାନ ହେବେ । ତାଙ୍କୁ କୁଆଡ଼େ ୭୫ ବର୍ଷ ହେଲା । ମାତ୍ର ମୋର ମନେ ହୁଏ- ସେ ୫୭ ଟପି ନାହାନ୍ତି । ପ୍ରଭୁଜଗନ୍ନାଥେ ଓ ମା' ଭଗବତୀ ତାଙ୍କୁ ଅକ୍ଷୟ ସ୍ୱାସ୍ଥ୍ୟ ଓ ଦୀର୍ଘ ପରମାୟୁ ଦେଇ ବଞ୍ଚାଇ ରଖନ୍ତୁ । ଏବଂ ତାଙ୍କର ସାରସ୍ୱତ ସୃଜନ ବ୍ୟକ୍ତି ଏହିପରି କ୍ରିୟାଶୀଳ ଥାଉ ମୋର ଏତିକି ପ୍ରାର୍ଥନା ।

**ବିଃଦ୍ରଃ**

ଚନ୍ଦ୍ରଶେଖର ରଥେ ଯୋଉ ବର୍ଷ ଶାରଳା ପୁରସ୍କାର ପାଇଲେ- ସେ ବର୍ଷ ସୁଚରିତାର ବାର୍ଷିକ ଉତ୍ସବରେ ପାଠ କରିବା ପାଇଁ ମୁଁ ଫକୀରମୋହନଙ୍କ "ଉତ୍କଳ ଭ୍ରମଣ" ଶୈଳୀରେ "ଉତ୍କଳ ସାରସ୍ୱତ କ୍ଷେତ୍ର- ପରିକ୍ରମା" ନାମରେ ଏକ ଲାଳିକା ଲେଖିଥିଲି । ସେଥିରେ ଗୋପୀନାଥ, କାଳିନ୍ଦୀ, ସଚ୍ଚିଙ୍କ ଠାରୁ ଆରମ୍ଭ କରି ଚନ୍ଦ୍ରଶେଖର ରଥ, ଶାନ୍ତନୁ ଆଚାର୍ଯ୍ୟ ଓ ରମାକାନ୍ତ ରଥଙ୍କ ପର୍ଯ୍ୟନ୍ତ କବି ଲେଖକମାନଙ୍କୁ ନେଇ ଯେଉଁ ଲାଳିକା ଲେଖିଥିଲି- ତାହା ସେତେବେଳେ ପଢ଼ା ହୋଇ ପାରିନଥିଲା । ମାତ୍ର ସେଥିରୁ ଚନ୍ଦ୍ରଶେଖର ରଥଙ୍କ ସମ୍ପର୍କରେ ଯାହା ଲେଖିଥିଲି- ତାହା ଏଠାରେ ଉଲ୍ଲେଖ କରି ମୋର ଅନ୍ତରର ଗଭୀର ସମ୍ମାନ ଓ ଶୁଭେଚ୍ଛା ଜଣାଇ ଏ ରଚନା ଶେଷ କରୁଛି-....

**(ଫକୀରମୋହନଙ୍କ ଉତ୍କଳ ଭ୍ରମଣ ବାଣୀରେ ଗାଇବା)**

"ଚନ୍ଦ୍ରଶେଖର ରଥଙ୍କୁ ଦେଖ ଚକ୍ଷୁ ଫେଡି
ପଛେ ଆସି ଆଗ ସିଟ୍ ବସିଛନ୍ତି ମାଡି ।
ରମ୍ୟରଚନାରେ ସେହୁ ଅଟନ୍ତିଟି ରାଜା
କିବା ଭାବ, କିବା ଭାଷା ସବୁଥିରେ ତାଜା ।
ସେକ୍ସପିଅର, ମିଲ୍ଟନ, ଟି.ଏସ୍. ଇଲିଅଟ
ତା' ସାଙ୍ଗେ ମିଳାଇ ଅଛ ବ୍ୟାସ ବାଲମୀକ ।
ଇଂରାଜୀ ଓ ସଂସ୍କୃତରେ ସମାନ ବ୍ୟୁତ୍ପତ୍ତି
କବି ଓ ପଣ୍ଡିତ ପଣେ ଲଭିଅଛ ଖ୍ୟାତି ।
ଚିତ୍ରକଳାରେ ବି ରଥେ ଅଟନ୍ତି ନିପୁଣ
ବାଗ୍ମୀତାରେ ତୋଷିଥାନ୍ତି ସର୍ବଜନମନ ।
ଜଗନ୍ନାଥଙ୍କ ଭାବରେ ହୋଇଣ ବିଭୋଳ
ଯାହା ସବୁ ଲେଖିଛନ୍ତି କି ଅମୂଲ ମୂଲ !
କି ଗଭୀର ପ୍ରେମ ଭକ୍ତି କି ଉଜ୍ଜ୍ୱଳ ପ୍ରଜ୍ଞା !
ନିଶ୍ଚୟ ସେ ପାଇଛନ୍ତି ପ୍ରଭୁଙ୍କର ଆଜ୍ଞା ।

''ଯନ୍ତ୍ରାରୂଢ଼'' ହୋଇ ସେହୁ ଅରଜିଲେ ଯଶ
ଗଳ୍ପ ଇଲାକାରେ ମଧ୍ୟ ଦେଖାନ୍ତି ପୌରୁଷ ।
''ସମ୍ରାଟ ଓ ଅନ୍ୟମାନେ'' ଶାରଳା କୃପାରେ
ମହାଯଶ ଅରଜିଲା ସୁଧୀ ଦରବାରେ ।
ତାଙ୍କ ଲେଖାମାନ ପଢ଼ି ଆତ୍ମା ହୁଏ ତୃପ୍ତ
ମନ ଓ ହୃଦୟ ମଧ୍ୟ ହୁଅଇ ପ୍ରଦୀପ୍ତ ।
କି ସୁନ୍ଦର ବପୁ ଦେଖ ଗଣେଶ ସଦୃଶ
ଜଳଦ-ଗମ୍ଭୀର ସ୍ୱର ଭାବ ବି ତାଦୃଶ ।
ବୃକୋଦର ସମ ରଥେ ଆମ ସାହିତ୍ୟରେ
ଲେଖନୀ - ଗଦା ଘୂରିଲେ କେବା ତାଙ୍କୁ ପାରେ ?
ବିଦଗ୍ଧବାକ୍ୟ କୁଶଳୀ, ହେ ରଥ ଆପଣେ
ସୂର୍ଯ୍ୟ ପ୍ରାଏ ବିଭାସୁଛ ସାହିତ୍ୟ ଗଗନେ ।
ଉତ୍କଳ ଭାରତୀଙ୍କର ପ୍ରିୟ ପୁତ୍ର ହୋଇ
ଦୀର୍ଘକାଳ ବଞ୍ଚି ରହ-ଲେଖନୀ ଚଳାଇ ।

ଅକାଶ ପାତାଳ, ଶହୀଦ ନଗର
ଭୁବନେଶ୍ୱର

***

# ମହାଭାଗବତ ଚନ୍ଦ୍ରଶେଖର - କୋଟି କୋଟି ଜୁହାର

**ଡଃ ଗୌରାଙ୍ଗ ଚରଣ ନାୟକ**

*"ବାଗ୍‌ଜନ୍ମବୈଫଲ୍ୟମସହ୍ୟ ଶଲ୍ୟଂ ଗୁଣାଧିକେ ବସ୍ତୁନିମୌନିତା ଚେତ୍ ।*
*ଖଳତ୍ୱମଲ୍ପାୟସି ଜଳ୍ପିତେଽପି ତଦସ୍ତୁ ବନ୍ଦିଭ୍ରମ ଭୂମିତୈବ ॥"*

'ନୈଷଧୀୟ ଚରିତ'-ଅଷ୍ଟମ ସର୍ଗରେ ମହାକବି ଶ୍ରୀହର୍ଷ ଏ ଯେଉଁ ଅପୂର୍ବ ଭାବ ବ୍ୟକ୍ତ କରିଛନ୍ତି, ତା'ର ସାରମର୍ମ ମୁଁ ଯେପରି ବୁଝିଛି, ତା ହେଲା — ବହୁ ଉତ୍କୃଷ୍ଟ ଗୁଣସଂପନ୍ନ କୌଣସି ବସ୍ତୁ ବା ବ୍ୟକ୍ତିବିଶେଷଙ୍କ ସଂପର୍କରେ ଯଦି କେହି ମୌନ ଅବଲମ୍ବନ କରନ୍ତି, ତାଙ୍କର ବାକ୍‌ଶକ୍ତି ଥାଇ ଲାଭ କ'ଣ ? ପୁଣି ପ୍ରଶଂସାରେ କୃପଣତା ବଶତଃ ଅଳ୍ପଟିକେ କହିଦେଇ ଚୁପ୍ ରହିଯିବା ମଧ୍ୟ ଖଳବୁଦ୍ଧିର ପରିଚୟ ଦିଏ । ଏପରିସ୍ଥଳେ ଗୁଣୀବ୍ୟକ୍ତିର ସ୍ତୁତିଗାନ କରି ଚାଟୁକାର ସାଜିବା ବରଂ ଶ୍ରେୟସ୍କର ।

ଏହି ଦୃଷ୍ଟିରୁ ବିଚାରିଲେ ପ୍ରିୟବନ୍ଧୁ ଚନ୍ଦ୍ରଶେଖରଙ୍କ ଉଦ୍ଦେଶ୍ୟରେ ରଚିତ ମୋର ଏ ନିବନ୍ଧଟି ହୁଏତ ସ୍ତୁତିବଚନ ବୋଲି ମନେ ହୋଇପାରେ । ମାତ୍ର ଅନେକ ଦିବ୍ୟ ବିଭୂତିର ପରିପୂର୍ଣ୍ଣ ଏହି ମହାନ୍ ବ୍ୟକ୍ତିତ୍ୱ ସଂପର୍କରେ ମୌନ ଅବଲମ୍ବନ କରି ନୈଷଧକାରଙ୍କ ଦୃଷ୍ଟିରେ ଅପରାଧୀ ହେବା ଅପେକ୍ଷା ଚନ୍ଦ୍ରଶେଖରଙ୍କ ଚାଟୁକାର ସାଜିବାକୁ ବରଂ ମୁଁ ଅଧିକ ପସନ୍ଦ କରିବି । ଅବଶ୍ୟ ମୋର ଯାହା କହିବାର କଥା ମୁଁ ଅଳ୍ପରେ ହିଁ କହିବି : ମାତ୍ର ଏହା କୌଣସି ଖଳବୁଦ୍ଧି ଯୋଗୁଁ ନୁହେଁ, ମୋର ଅଳ୍ପଜ୍ଞତା ହିଁ ଏହାର କାରଣ । " ମହିମାନଂ ଯଦୁତ୍କୀର୍ତ୍ତ୍ୟ ତବ ସଂହ୍ରୀୟତେ ବଚଃ । ଶ୍ରମେଣ ତଦଶକ୍ତ୍ୟା ବା ନ ଗୁଣାନାମୀୟତ୍ତୟା ।" — ମହାକବି କାଳିଦାସଙ୍କ ଭାଷାରେ କହିଲେ ହୁଏତ ଏହା ଭଲ ଭାବେ ହୃଦୟଙ୍ଗମ କରିହେବ ।

ବନ୍ଧୁ ଚନ୍ଦ୍ରଶେଖର ଯେ ମୋ ଦୃଷ୍ଟିରେ ଜଣେ 'ମହାଭାଗବତ', ଭାଗବତୋତ୍ତମ, ଶ୍ରୀଜୀଉଙ୍କର ଅନନ୍ୟ ଭକ୍ତ - ତାଙ୍କର ଅନବଦ୍ୟ ସୃଷ୍ଟି ରଥସପ୍ତକ କୁ ଅବଲମ୍ବନ କରି ଚନ୍ଦ୍ରଶେଖର - ୭୦ରେ ସନ୍ନିବେଶିତ ମୋର କ୍ଷୁଦ୍ର ପ୍ରବନ୍ଧରେ ଏହାର କିଂଚିତ୍ ସୂଚନା ଦେଇଥିଲି । ଚନ୍ଦ୍ରଶେଖରଙ୍କ ଅନନ୍ୟ ସାଧାରଣ ପ୍ରତିଭା ଯେ ବହୁମୁଖୀ, ଏହା ଜଣାଶୁଣା । ମାତ୍ର ଏ କ୍ଷୁଦ୍ର ପ୍ରବନ୍ଧରେ ତାଙ୍କ ପ୍ରତିଭାର ପର୍ଯ୍ୟାଲୋଚନା ମୋର ଲକ୍ଷ୍ୟ ନୁହେଁ । ଚନ୍ଦ୍ରଶେଖରଙ୍କ ବହୁମୁଖୀ ପ୍ରତିଭା ସଂପର୍କରେ ଯଥାଯଥ ଆଲୋଚନା କରିବା ଲାଗି ଆବଶ୍ୟକୀୟ ପ୍ରତିଭା ମଧ୍ୟ ମୋର ନାହିଁ । ସୁନାମଧନ୍ୟ ବକ୍ତା, ସଫଳ ଔପନ୍ୟାସିକ, ବିଶିଷ୍ଟ ଗାଳ୍ପିକ, ବୁଦ୍ଧିଜୀବି, ଜ୍ଞାନୀ ଆଦି କହି ତାଙ୍କ ପ୍ରତିଭାର କିଛିଟା ଆଦର ହୁଏତ

କରାଯାଇପାରେ, ମାତ୍ର ମୋ ଜାଣିବାରେ ସେ ସ୍ୱୟଂ ଏ ସବୁର ଊର୍ଦ୍ଧ୍ୱରେ କାହିଁ କେଉଁ ମହାଭାବରାଜ୍ୟରେ ଅଧିଷ୍ଠିତ ।

ଯେଉଁଠି ସକଳ ପ୍ରତିଭା, ସକଳ ସଦ୍‌ଗୁଣ କେଉଁ ଏକ ନିର୍ଗୁଣ, ନିରହଙ୍କାର ସ୍ଥିତିର ଅନିର୍ବଚନୀୟ ମହାନତାରେ ମହୀୟାନ୍ ହୋଇଯାଏ, ବନ୍ଧୁ ଚନ୍ଦ୍ରଶେଖର ମୋ ଦୃଷ୍ଟିରେ ସେଭଳି ଏକ ବିରଳ ସ୍ଥିତିରେ ହିଁ ବିଦ୍ୟମାନ - ତାହାହିଁ ମହାଭାଗବତର ସ୍ଥିତି, ଆଉ ସେଇଥିଲାଗି ମୋର ନମସ୍ୟ, ବନ୍ଦନୀୟ । ଯୁଗପୁରୁଷୋତ୍ତମ ଶ୍ରୀ ଶ୍ରୀ ଠାକୁର ଅନୁକୂଳଚନ୍ଦ୍ରଙ୍କ ଭାଷାରେ କହିଲେ -'' ଅହଂଟା ଯେତେବେଳେ ମିଳାଇ ଯାଏ, ଜୀବ ସେତେବେଳେ ହିଁ ସର୍ବଗୁଣସଂପନ୍ନ ନିର୍ଗୁଣ ହୁଏ ।''(ସତ୍ୟାନୁସରଣ)

ଚନ୍ଦ୍ରଶେଖରଙ୍କ ସଂପର୍କରେ ଏଠାରେ ମୁଁ ମୋ ନିଜ ଅନୁଭୂତିରୁହିଁ ଦିପଦ ଲେଖିବାକୁ ବାହାରିଛି । ଯାହାଙ୍କୁ ଦେଖିଲେ, ଯାହାଙ୍କ ସହିତ ମିଶିଲେ, କିଛି ସମୟ କଥା ହେଲେ, ସାମୟିକ ହେଉପଛେ ମଣିଷ ମନରେ ଦୁର୍ଲଭ ଭଗବଦ୍ ଚେତନା ଜାଗ୍ରତ ହୁଏ, ସେ ହିଁ ତ ପରମଭାଗବତ । ଚନ୍ଦ୍ରଶେଖରଙ୍କ ଠାରେ ଏହି ଲକ୍ଷଣ ନିଃସନ୍ଦିଗ୍ଧ ରୂପେ ବିଦ୍ୟମାନ । ତାଙ୍କ ସଂପର୍କରେ ମୁଁ ଯେତେବେଳେ ଆସିଛି, ସେତେବେଳେ ଏକ ଦିବ୍ୟ ଚେତନାର ସ୍ପର୍ଶ ପାଇଛି । ମୋ ଭଳି ଏକ ସାଧାରଣ ବଦ୍ଧ ଜୀବକୁ କ୍ଷଣକ ପାଇଁ ହେଲେ ମଧ୍ୟ ସେ ଦିବ୍ୟଭାବରେ ଅନୁପ୍ରାଣିତ କରନ୍ତି, ଏହାହିଁ ମୋ ଲାଗି ସବୁଠୁଁ ବଡ଼ କଥା, ଆଉ ସେଥିଲାଗି ମୁଁ ତାଙ୍କ ନିକଟରେ ଚିରଋଣୀ ।

ଆଉ ଅଧିକ ବା କ'ଣ କହିବି ! ସକଳ ଗୁଣର ଊର୍ଦ୍ଧ୍ୱରେ ଚନ୍ଦ୍ରଶେଖରଙ୍କର ଏହି ଦିବ୍ୟ ଗୁଣର ପଟାନ୍ତର ନାହିଁ । ଅଜି ଏହି ମହାଭାଗବତଙ୍କର ୭୫ତମ ପୁଣ୍ୟ ଜନ୍ମତିଥିରେ କୋଟି କୋଟି ଜୁହାର ଜଣାଇ ହାର୍ଦ୍ଦିକ ଶ୍ରଦ୍ଧା-ଭକ୍ତି ନିବେଦନ କରିବାର ସୁଯୋଗ ପାଇଥିବାରୁ ନିଜକୁ ଧନ୍ୟ ମନେକରୁଛି, ଏବଂ ଯେଉଁ ମହାନୁଭବ ବ୍ୟକ୍ତି ମତେ ଏ ପ୍ରକାର ସୁଯୋଗ ଦେଲେ, ସେହି ଶ୍ରଦ୍ଧେୟ ଶ୍ରୀଯୁକ୍ତ ଶଶିଭୂଷଣଙ୍କୁ ମୋର ବିନମ୍ର କୃତଜ୍ଞତା ଜଣାଉଛି ।

ଫେଲୋ, ଭାରତୀୟ ଅଧ୍ୟୟନ
ସଂସ୍ଥାନ,ସିମଳା

***

# How very Little I know of Srijukta Rath

*Niranjan Mohanty*

Much before I came in personal contact with Srijukta Chandra Sekhar Rath, I was made to believe and accept the fact that he belonged to the galaxy of those English teachers in Orissa who would inevitably make every student of English literature proud. Even if I did not have the good luck of being Srijukta Rath's direct student, the fragrance of his teaching reached me and inspired me to be an English teacher. Today, in the rat-race of the academic world, the illustrious generation of teachers per se is disappearing fat. This disappearance has caused injuries to education in general. If I am to objectively look into Rath's teacherly qualities, I find it in god's plenty — knowledge, wisdom,, oratory, eloquence, reasoning, argumentation, willingness and ability to teach with dedication, sense of decorum and discipline, an unselfish affectionate gesture towards the pupils. Even, today. Hence, my due respect and reverential stance.

When I try to identify another trait of his personality it is that of a writer, of an essayist, an intellectual, an individual, sensitively aware of his own cultural heritage, it is that of a warm human being.

When I read him as a writer or listened to him in a seminar or symposium. I was constantly haunted by the image of the English teacher in Rath because of the kind of discipline that his idiom retained, the kind of erudition that the context possessed, the kind of veracity that the voice articulated with immaculate authenticity. Rath's teacherly traits allowed him to break the boundaries between his essays and fictional writing : one flows into the other, one emanates and exudes from the other, with such delicacy of touch that one often fails to categorise his writings. Only a creative genius can generate the occasion for such wonders, such startling points of departure. His essays embrace narrative elements, and short stories, the poignancy of an argumentative tone. Command over the medium, efficacy of the idiom, solidity of the vision, veracity of the insightful observation, clarity of perception and a

profoundly religious and often devotional stance contribute to the sophistication, richness and uniqueness of his writings, whether it is Rathasaptak or Jantraruda or Drusti 'O' Darshan. A sensitive writer and a conscientious artist in Rath through his writings could chart ways and directions for the society and culture to follow so as to retain human dignity and identity. He knows that if the writer can adhere to a set of human values which would have ennobling effects on the individual in the society, his writings can be claimed to have access to success. Chandra Sekhar Rath is, to my mind, such a writer, such a feeling human being, such an incorrigible optimist whose vision is earthbound, life-bound. I'm sure, his writings would remain as mile stones in the history of Oriya literature. He would remain for us a source of inspiration, a beacon.

I had the opportunity of becoming a member of the Oriya Advisory Board of Sahitya Akademi. For a period of five years, I had the opportunity of attending the Board's meeting under the able guidance of Srijukta Rath. Being the chairman of the Board, he discharged his duties with sincerity and dedication. He was humble when the situation demanded humility and he was strong to safeguard the interest of the Akademi and of Oriya literature. It is for others to evaluate the contribution of Srijukta Rath and the Advisory Board to Oriya Literature. Let Srijukta Rath live longer to inspire all of us who value life, love life, read life and measure the rhythms of life in literature.

Prof of English,
Viswa Bharati Santiniketan

***

# Remembering my Teacher
## Prof. Chandra Sekhar Rath

***Dharanidhar Sahu***

When I was a student in the P.G. Department of English at Vani Vihar, Prof. Chandra Sekhar Rath who was teaching in B.J.B. College at that time was invited by the University to teach us. He taught us for full two years and left a lasting memory on our mind. It is a memory laced with gratitude and admiration. The teachers who are creative in the classroom and passionate about the texts they teach, create that sort of impression on the mind of their students. They inspire students and win hearts. He taught us Milton's Paradise Lost Book one and Book Two. In these two Books in particular the fallen archangel Satan makes his august presence felt. Though both the poet Milton and our teacher Chandra Sekhar Rath were deeply religious persons (or that's what we generally believed), they were so persuaded by their creative imagination (while writing and teaching) that they unwittingly presented the enemy of God as the ultimate hero, as our idea of a hero.

Sage he stood,
With Atlantean shoulders, fit to bear
The weight of mightiest monarchies; his look
Drew audience and attention still as night
Or summer's nootide air.... (Paradise Lost, Book II)

Those words uttered in his bass voice still resonate in my ears. We had a feeling our teacher identified, though in spite of himself, with the banished prince of Heaven. Affectionately we named our teacher great Lucifer, though in reality two personages could not be more dissimilar in so far as their attitude to Almighty was concerned. He had the formidable size and the resonating voice to match his namesake. And also his unyielding sicnerity and fierce determination to overcome the heaviest of odds. Even after more than thirty years, when we classmates meet and chat going down the memory lane, our old teacher

Prof Rath figures prominently in our conversation as an unforgettable teacher who made us love Paradise Lost for the rest of our life.

Soon after, he established himself as one of the major prose writers of Oriya language and as a public orator par excellence. I have read most of his short stories and novels and essays with pleasure and profit. I have also listened to many of his public lectures. He has the insight of a mystic, enthusiasm of a reformer and robustness of a professional body-builder when he holds his pen to write and opens his mouth to speak.

In the course of these thirty plus years, we have had the chance to meet many times, more by cooncidence than by planning, and found some time to discuss the topics we both like. During one such hapy session, he simply surprised me by his proficiency in Sanskrit language and his close reading of the Vedanta. Though many of his prose pieces reveal his familiarity with Indian philosophical systems and scriptures,I did not know he was such a thorough scholar. His study of Vedantic literature and Indian literatures seemed to be the secret of his strength and the source of his inspiration.

Prof. Rath's mind is as healthy as his body. He radiates a deep conviction and eclectic erudition when he speaks and writes. Another admirable quality that he possesses is that he can be popular and intellectually elitist at the same time. That is a fine combination. It makes him one of the most sought-after public speakers of Orissa. As a speaker, he elevates his listeners to his own level instead of stooping to their levels as many other public speakers generally do.

It is good news that my beloved teacher Prof.Rath has completed his seventy-fourth year. But that is still twenty five short of a centrury. This redoubtable fighter would not return to the pavilion without completing his glorious century. If his form is anything to go by, he will certainly accomplish it to the cheers of his million admiring spectators. That is my prayer to the dispenser of Destiny. This is my hope as one of these spectators.

Bhanja Vihar, Berhampur



# Dakshnia From a Student

***Sura Rath***

On this happy occasion in the life of my teacher, mentor, and friend Professor Chandrasekhar Rath, I remember two instances of his unforgettable presence in my life. First, in 1972, when I was a student in the English Department at Utkal University in Vani Vihar, he tought my clas Milton's epic Paradise Lost. He used to ride a bicycle to campus all the way from BJB College and arrive drenched in sweat, but when he walked into calss his voice rose with the thunderous tenor of Milton and he made me understand the "way of God to man' in a way that perhaps no other teacher does in Orissa.

I left Orissa in 1975, and lost touch with him for a while, but then came his message : he was coming to United States and wanted me to meet him. In 1999, when I was living in Shreveport and worked at the Louisiana State Univesity. I had the good fortune again to meet him at the Orissa Society of the Americas (OSA) meeting in Nishville. He agreed to travel with me to Shreveport and stay with me a few days guest-lecturing to my graduate seminar on India for high school teachers. He gave two talks, one on jagannath culture and the other on his experience as a writer. His lucid narrative, his explanation of the nuances of culture, and finally his personal reminiscences as a writer made an indelible mark on my students. Even now, after four years, many local teachers who attended that seminar remember his lactures with forndness. My wife Manju and I had the great privilege and pleasure to have him as our family guest for five days, and our children Siddhartha and Gautam got his blessings.

On the same trip, I took him to the Ekta Mandir in Dalls, where he made the comment that the temple was incomplete without Lord Jagannath there. Mr. Hari Arjun Patro and his wife Vishnu quietly took

his comment as an order to bring Jagannath to Dallas. Although the temple authorities were initally opposed to the idea because of lack of space, Chandrasekhar Rath's prophetic words and the will of Jagannath enabled the Dallas Oriya community to overcome all opposition and instal the deities last year. He served as an emissary of Jagannath to communicate the Lord's desire to us. We are forever grateful for that trip and for those remarks. In retrospect, I see this miraculous event as a teacher's journey to collect his dakshhina from a former student, but what he asked for was not something for himself but for Jagannath whose mission he carried half a world away.

May Jagannath keep him in good helath and spirit the next half of his life !

Director,
William O'Douglas Honors College
Central Washington University
Ellensburg, Washington

***

## PROFESSOR CHANDRASEKHAR RATH

*Dr. Ramesh Bijlani*

The seventy fifth birthday of Professor Chandrasekhar Rath is a welcome opportunity to say a few words about him. But it is not easy to describe a multifaceted man like him, far less to measure him. He combines profound scholarship with deep humility. One has to simply listen to him to realise his extensive knowledge of ancient scriptures and his photographic memory. He is equally at home with Sanskrit and English, and his talks reflect his clarity of thought, gentle personality, and respect for the student. He is one of those exceptionally talented teachers who can deliver an in-depth lucid talk on complex philosophical or spiritual issues with little preparation, without any notes. He is particularly devoted to Sri Aurobindo and the Mother, whom he refers to as the Master and the Divine Mother, and is an authority on their works. He does not talk much about himself, but occasionally when he is off-guard in the company of people to whom he feels close, he narrates incidents from his rich experience as a teacher. These moments reveal his exemplary affection for his students, and the faith his students have had in him as a role model and guide in difficult times. I have seen in him nothing but love for the people around him, and have had the privilege of feeling the peace of his affectionate embrace.

AIIMS, New Delhi

***

# କିଛି ସ୍ମୃତି

**ରାମନାଥ ପଣ୍ଡା**

ଆମ୍ଭମାନଙ୍କର ପ୍ରିୟ ବଂଧୁ ଶ୍ରୀଯୁକ୍ତ ଚନ୍ଦ୍ରଶେଖର ରଥଙ୍କର ୭୫ତମ ଶୁଭ ଜନ୍ମ ତିଥି ଉପଲକ୍ଷେ ଏକ ସ୍ମରଣିକା ପ୍ରକାଶ ପାଇବ ଜାଣି କିଛି ଲେଖିବାପାଇଁ ମନ ବଳିଛି । କିନ୍ତୁ ଲେଖି ବସିଲା ବେଳ ସେହି ମନ କହୁଛି - କଣ ଲେଖିବ ? ଦୁଃଖ ଲେଖିବ ନା ସୁଖ ଲେଖିବ ? ବାସ୍ତବିକ ବହୁବର୍ଷ ପୂର୍ବେ ରଥେ ଜୟପୁର ବିକ୍ରମଦେବ କଲେଜର ଅଧ୍ୟାପକ ହୋଇ ଜୟପୁରକୁ ଆସି ରହିଲା ପରେ ପରେ ତାଙ୍କ ସହ ମୋତେ ଯେଉଁଭଳି ଅନ୍ତରଙ୍ଗ ବନ୍ଧୁତାର ଡୋରିରେ ଛନ୍ଦି ପକାଇଲେ ତାହା ଅବର୍ଣ୍ଣନୀୟ । ଯେତେବେଳେ ନିରୋଳା ଖରା ଦିନିଆ ସଞ୍ଜବେଳର ଖୋଲା ଆକାଶ ତଳେ ଜୟପୁରସ୍ଥ ଶ୍ରୀ ଅରବିନ୍ଦ ଭବନର ଛାତ ଉପରେ ଦୁଇବନ୍ଧୁ ଯେଭଳି ଭାବରେ ଘଣ୍ଟା ଘଣ୍ଟା ଧରି ଆଳାପ ଆଲୋଚନା କରୁଥିଲୁ ଏବଂ ଅନେକ ସମୟ ଧରି କେବଳ ନୀରବରେ ବସି ଅଗଣିତ ତାରକା ଖଚିତ ଆକାଶର ବିପୁଳ ବିଶଳତାକୁ ଅନୁଭବ କରୁ କିନ୍ତୁ ବିନା ବାକ୍ୟ ବ୍ୟୟରେ ପରସ୍ପର ମଧ୍ୟରେ ଯେଉଁ ମହାର୍ଘ ଭାବ ବିନିମୟ ହେଉଥିଲା, ତାହା ଅବର୍ଣ୍ଣନୀୟ । ମଝିରେ ମଝିରେ ସେ ଟିକିଏ ହସିଦେଇ ଯେତେବେଳେ କହି ପକାଉଥିଲେ - 'ହଁ ସେୟା ତ' ଉତ୍ତରରେ ମୁଁ କହୁଥିଲି - 'ନିଶ୍ଚୟ' ! ଏତେବର୍ଷ ପରେ ଆଜି କିପରି ବର୍ଣ୍ଣନା କରିବି ସେ ମହାନ୍ ଅନୁଭବକୁ ? ଅତଏବ ସେ ସବୁ ଗଭୀରତମ ଭାବ ବିନିମୟର ଚିତ୍ରକୁ ଚିତ୍ରଣ କରିବାକୁ ଗଲେ ତାହା ଏକ ପ୍ରକାଣ୍ଡ ଗ୍ରନ୍ଥ ହୋଇଯିବ ....

ଛାଡ଼ନ୍ତୁ ! ସେ ସବୁ ବିଷୟକୁ ନେଇ ଗ୍ରନ୍ଥ ରଚନା କରାଯାଇପାରେ କିନ୍ତୁ ଜନ୍ମଦିନ ପ୍ରସଙ୍ଗରେ ବିଶେଷ କିଛି ଲେଖାଯାଇ ନପାରେ । ତେବେ ଏହାମଧ୍ୟରେ ରଥେ ସାହିତ୍ୟ, ସଂସ୍କୃତି ତଥା ଆଧ୍ୟାତ୍ମିକ ଚିନ୍ତା କ୍ଷେତ୍ରରେ ଯେଉଁ ସଫଳ ସାଧନା କରି ପୁରେ ପୁରେ ଯଶସ୍ୱୀ ହୋଇ ଅଗ୍ରସର ହେଉଛନ୍ତି, ଆଗକୁ ଆଗକୁ ସେ ବିଷୟରେ ଏଠି ଉଲ୍ଲେଖ କରାଯାଇପାରେ ! ଉଦାହରଣ ସ୍ୱରୂପ ତାଙ୍କ ରଚିତ ପାଠଚକ୍ର ଡାଏରୀ । ବହିର ପ୍ରଥମ ପୃଷ୍ଠାର ଶେଷ କେଇ ଧାଡ଼ି ଏଠାରେ ଉଲ୍ଲେଖ କରାଯାଇପାରେ । ସେହି ପ୍ରଣାମ ଶୀର୍ଷକ ସୁନ୍ଦର ଲେଖାଟିର ପ୍ରାର୍ଥନା ଶେଷରେ ସେ ପୁଣି କହୁଛନ୍ତି —''ହେ ପରମ ପାବନ, ଅବାରିତ କରୁଣାର ମନ୍ଦାକିନୀ ! ପ୍ରଶମିତ କର ଯାବତୀୟ ତୃଷା, ଶାନ୍ତକର,

ଶୁଦ୍ଧକର ସଂଗ୍ରାମ ରତ ପ୍ରାଣ ପୁରୁଷକୁ ! ସଂଯତ କର, ଶୀତଳ କର ଉତ୍‌କ୍ଷିପ୍ତ, ଉତ୍ତପ୍ତ ବାସନାପିଣ୍ଡକୁ ନିରବିତ କର ସମସ୍ତ କୋଳାହଳ, ବିମଳ କର, ଧ୍ୟାନସ୍ଥ, ସମାଧିସ୍ଥ କର ଚେତନା, ଲାଳନ କର ଅବୋଧ ଚପଳତା, ପାଳନକର, ପରିପୁଷ୍ଟକର ବିଶ୍ୱାସ, ଦୀପ୍ତିମାନ କର ଆସ୍ପୃହା, କ୍ଷମାକର ସମସ୍ତ ଜଟିଳତା, ଅପରିଚ୍ଛନ୍ନତା, ଅଯୋଗ୍ୟତା, ଅପାରଗତା ! ଶୁଦ୍ଧି ଦାନକର, ବୁଦ୍ଧିଦାନ କର, ବିନୟ କୃତଜ୍ଞତା ଦାନକର, ପ୍ରେମଦାନ କର, ହେ ପ୍ରେମମୟ ପାବନ ପ୍ରବାହ !

ଅଗ୍ନିମୟ ଆଲୋକମୟ ହେ ପ୍ରଭୁ ! ତୁମର ଜୟ ହେଉ !"

ପରିଶେଷରେ ଏତିକିମାତ୍ର କହେ ଶ୍ରୀମାନ୍ ରଥ ଆପଣଙ୍କର ସର୍ବମଙ୍ଗଳମୟ ଜନ୍ମ ଦିବସ ଉପଲକ୍ଷେ ନିବିଡ଼ ସ୍ନେହ, ଶୁଭେଚ୍ଛା ସହ ସାଦର ସମ୍ବର୍ଦ୍ଧନା ଜ୍ଞାପନ କରୁଛି । ତାଙ୍କ ହୃଦୟ ଓ ମନର ବିପୁଳତା ଆହୁରି ଆହୁରି ବଢ଼ି ବଢ଼ି ଚାଲୁ । ସେ ଦୀର୍ଘାୟୁ ଓ ମହାନ୍ ହୁଅନ୍ତୁ । ଶ୍ରୀ ଅରବିନ୍ଦ ଓ ଶ୍ରୀମା'ଙ୍କ କୃପାରୁ ତାଙ୍କର ଅନ୍ତର୍ଜୀବନ ଓ ଅନ୍ତର୍ଚେତନା ଆହୁରି ପ୍ରଜ୍ୱଳିତ, ଆଲୋକିତ ହେଉ ।

ୟୁନିଟ୍ - ୩, ଭୁବନେଶ୍ୱର

***

୨

# ଚନ୍ଦ୍ରଶେଖର ରଥ : ଫିନିକ୍ ବିହଙ୍ଗ

*ଦାଶରଥି ଦାସ*

ଚନ୍ଦ୍ରଶେଖର ରଥ ଆମ ସମୟର ଅନ୍ୟତମ ମହତ୍ ଶିଳ୍ପୀ । ତେଣୁ ଆମେ ତାଙ୍କୁ ଅନେକ ଦିନରୁ ସତ୍ କବି ବୋଲି ଜାଣୁ । କାରଣ ମହତ୍ ଶିଳ୍ପୀ ମାତ୍ରେ ସ୍ୱଭାବଧର୍ମତଃ କବି । ଅଧିକନ୍ତୁ ଆଳଙ୍କାରିକମାନେ କବିଙ୍କର ଯେଉଁ ଭାବମୂର୍ତ୍ତି ଗଢ଼ିଛନ୍ତି ତାହାକୁ ଆମ ଚେତନାରେ ପ୍ରତ୍ୟକ୍ଷ କରି ତୋଳନ୍ତି ଶ୍ରୀ ରଥ । ସୁନ୍ଦର ସ୍ୱାସ୍ଥ୍ୟ, ଆଚରଣର ଶାଳୀନତା, ନିରନ୍ତର ଅନୁଶୀଳନ, ଅନୁଭବର ସୌକୁମାର୍ଯ୍ୟ, ଜିଜ୍ଞାସାର ବ୍ୟାପ୍ତି, ଅଗାଧ ପାଣ୍ଡିତ୍ୟ, ସରସ ବୈଦଗ୍ଧ୍ୟ, ନୈତିକ ଦାର୍ଢ୍ୟ, ଐତିହ୍ୟ ଚେତନା, ସହୃଦୟସମ୍ବେଦନଶୀଳତା, ସୁବେଦୀ ରୂପବୋଧ, ସ୍ଥାୟୀ ଓ ପ୍ରଖର ସ୍ମୃତିଶକ୍ତି, ପରିହାସ ପ୍ରିୟତା ଉତଫୁଲ୍ଲତା, ପବିତ୍ରତା ଓ ଆଧ୍ୟାତ୍ମିକତା—ଏହିସବୁ ମିଶି ଶ୍ରୀ ରଥଙ୍କ ସାରସ୍ୱତ ବ୍ୟକ୍ତିତ୍ୱ ଆମକୁ ନିୟତ ରଖିଲା ଭରସା ଯୋଗାଏ ଯେ, ସେମାନେ ସେଦିନ ଯେଉଁ କବି ବ୍ୟକ୍ତିତ୍ୱ ଗଢ଼ିଥିଲେ ତାହା ପୋଥିଗତ ବ୍ୟାପାର ନୁହେଁ କି ବିଗତ ସମୃଦ୍ଧିର ସ୍ମୃତି ମାତ୍ର ନୁହେଁ, ଆମ ସମକାଳରେ ବି ଜାଗ୍ରତ ଓ ଜୀବନ୍ତ । ଏହି ସାରସ୍ୱତ ବ୍ୟକ୍ତିତ୍ୱଟି ପୁଣି ବିଚିତ୍ର, ବିଶାଳ ଓ ବହୁଶାଖୀ । ଏକ ପକ୍ଷରେ ଶ୍ରୀ ରଥ ପ୍ରତ୍ୟକ୍ଷତଃ ଯେପରି ଗଳ୍ପ, ପ୍ରବନ୍ଧ ଓ ଉପନ୍ୟାସ କ୍ଷେତ୍ରରେ ଅବାଧରେ ବିଚରଣ କରିପାରନ୍ତି ଠିକ୍ ସେପରି ନେପଥ୍ୟରେ ଚିତ୍ରାଙ୍କନ, ଭାସ୍କର୍ଯ୍ୟ ସୃଷ୍ଟି ଓ କବିତା ରଚନାରେ ବ୍ୟାପୃତ ଥାନ୍ତି । ଆହୁରି ଅଛି ତାଙ୍କର ଅସାଧାରଣ ବାଗ୍ମିତା—ଭାଷଣ ଦେବା ଦକ୍ଷତା । ସବୁଠି ଧାର ଲଳିତ କବିତ୍ୱର ସ୍ପର୍ଶ ବର୍ତ୍ତମାନ । ଯେଉଁମାନେ ଗଳ୍ପ, ପ୍ରବନ୍ଧ ଓ ଉପନ୍ୟାସରେ କବିତ୍ୱକୁ ସହ୍ୟ କରିପାରନ୍ତି ନାହିଁ; ସେମାନେ ନା ବୁଝିଥାନ୍ତି କବିତ୍ୱକୁ ନା ଚିହ୍ନିଥାନ୍ତି ଯଥାର୍ଥ ଗଳ୍ପ ପ୍ରବନ୍ଧ ଉପନ୍ୟାସକୁ । ଲେଖା ମାତ୍ରେ ସାହିତ୍ୟ ନୁହେଁ । ଲେଖାକୁ କବିତ୍ୱ ସାହିତ୍ୟ ପର୍ଯ୍ୟାୟକୁ ଉନ୍ନୀତ କରିଥାଏ । ଲେଖା ଶରୀର । କବିତା ଚୈତନ୍ୟ । ପାଷାଣୀକୁ ଜୀବନ୍ତ ପ୍ରତିମା ହେବାକୁ ହେଲେ ଲୋଡ଼ା ଉଷ୍ମ ସ୍ପର୍ଶଟିଏ । ପ୍ରେମ, ବିସ୍ମୟ ଓ କଳ୍ପନାର ସ୍ପର୍ଶ । ଶ୍ରୀ ରଥ ପ୍ରଥମେ ପ୍ରବନ୍ଧ ଘେନି ଓଡ଼ିଆ ସହିତ୍ୟ ଇତିହାସରେ ଆବିର୍ଭୂତ ହୋଇଥିଲେ । କବିତ୍ୱ ବଳରେ ସେ କିପରି ଯତ୍ ସାମାନ୍ୟ ବିଷୟବସ୍ତୁକୁ ସେଥିରେ ଅସାମାନ୍ୟ କରିପାରନ୍ତି ତାହା ପ୍ରାୟ ସମସ୍ତେ ଜାଣନ୍ତି । ବ୍ୟାପ୍ତି, ପ୍ରତିପାଦ୍ୟର ମୌଳିକତା ଓ ପୁଁଖାନୁପୁଁଖ ବିସ୍ତୃତ ବିଶ୍ଳେଷଣରେ ତାଙ୍କ ପ୍ରବନ୍ଧଗୁଡ଼ିକ ଯେପରି ତାତ୍ପର୍ଯ୍ୟପୂର୍ଣ୍ଣ, ଠିକ୍ ସେହିପରି କଳ୍ପନା-ପ୍ରବଣ ମନନର ସୁବେଦୀ କ୍ଷିପ୍ରତାରେ ତଥା କାବ୍ୟିକ ବିନ୍ୟାସ ନୈପୁଣ୍ୟରେ ତୁଳନାରହିତ । ଆଉ ଗଳ୍ପ ଉପନ୍ୟାସ ? ଗଳ୍ପ ଉପନ୍ୟାସରେ ବାସ୍ତବ

ଭୂମିର ସ୍ପର୍ଶ ଅବଶ୍ୟ ପ୍ରୟୋଜନୀୟ । ଯେତେ ଭଲ କାହାଣୀ କୁହାଯାଉ କି ଜୀବନର ଯେତେ ବଡ଼ ସମସ୍ୟା କି ଦର୍ଶନ ଉପସ୍ଥାପିତ ହୋଇଥାଉ ଚରିତ୍ରଗୁଡ଼ିକର ସ୍ଥାନିତ ଅବସ୍ଥାନ ଓ ବାସ୍ତବ ଭୂମି ଭିନ୍ନ ତାହା ବିଶ୍ୱାସଯୋଗ୍ୟତା ଲାଭ କରିପାରିବ ନାହିଁ । ତେବେ କବିତା କି କାମରେ ଲାଗେ ? ବାସ୍ତବ ଜଗତର ବସ୍ତୁସତ୍ତାକୁ ବିଦୀର୍ଣ୍ଣ କରି ବସ୍ତୁ ସତ୍ୟକୁ ଆବିଷ୍କାର କରିଥାଏ କବିତ୍ୱ । ଫଳତଃ ବାସ୍ତବ କାହାଣୀ ମଧ୍ୟରୁ ସହସା ଉଦ୍‌ଭାସିତ ହୋଇ ଉଠେ ଜୀବନର ଭିନ୍ନତର କୌଣସି ଅର୍ଥ କି ତାତ୍ପର୍ଯ୍ୟ, ଆବିଷ୍କୃତ ହୋଇଯାଏ ଜୀବନର କୌଣସି ନବତମ ବାର୍ତ୍ତା କି ଦିଗନ୍ତ—ଯାହାର ସମ୍ବାଦ ଆଗରୁ କେହି ରଖି ନଥାଏ; ବାସ୍ତବତାର ପରିପ୍ରେକ୍ଷୀରେ ଯାହାର କୌଣସି ଅସ୍ତିତ୍ୱ ପର୍ଯ୍ୟନ୍ତ ନଥାଏ । ସେହି ଅନସ୍ତିତ୍ୱକୁ ଜୀବନର ମୁହାଁମୁହିଁ ଉଭା କରାଇ ଦେଇଥାଏ କଥାକାରଙ୍କ ଅନ୍ତର୍ଲୀନ କବିତ୍ୱ ଶକ୍ତି । ଏହି କବିତ୍ୱ ଯେ କେହି ସହୃଦୟ ପାଠକ 'ଯନ୍ତ୍ରାରୂଢ଼' ଓ 'ନବ ଜାତକ'ରେ ଲକ୍ଷ୍ୟ କରିଥିବେ ନିଶ୍ଚୟ । ଅଧିକନ୍ତୁ ପାଖକୁ ପାଖ ଅଛି ସେଥିରେ ଅନେକତ୍ର ଆଶ୍ଚର୍ଯ୍ୟ ସୂକ୍ଷ୍ମ କବିତ୍ୱମଣ୍ଡିତ ବର୍ଣ୍ଣନା ବି । 'ରଥ ସପ୍ତକ'ର ଅଧିକାଂଶ ରଚନା ତ ଆମୂଳାନ୍ତ କବିତାକ୍ରାନ୍ତ—ଭାଷା ଓ ରୀତି ଆବେଗମୟ, ଋଜୁ ଓ ତୀବ୍ର । ସେଇଥିପାଇଁ କହିବାକୁ ହୋଇଛି, ଶ୍ରୀ ରଥଙ୍କ କବିତାର ସାକ୍ଷାତ୍ ଦର୍ଶନର ବହୁ ପୂର୍ବରୁ ଆମେ ତାଙ୍କୁ ସର୍ବାନ୍ତଃକରଣରେ ସତ୍ କବି ବୋଲି ଜାଣିଥିଲୁ ।

ଏ ମଧ୍ୟରେ ପ୍ରକାଶ ପାଇଛି ଚନ୍ଦ୍ରଶେଖର ରଥଙ୍କର ପ୍ରଥମ କବିତା ସଙ୍କଳନ । ନାମ "ତୁମ ପାଇଁ ପକ୍ଷୀଗାନ" (୨୬.୨.୨୦୦୦) । ଆଶ୍ଚର୍ଯ୍ୟର ବିଷୟ । ସବୁଗୁଡ଼ିକ ଥିଲା ତଦବଧି ଅପ୍ରକାଶିତ । ଅତ୍ୟନ୍ତ ସୂକ୍ଷ୍ମ ଅନୁଭୂତି ପରାୟଣ ସମ୍ବେଦନଶୀଳ ସ୍ପର୍ଶକାତର ଲେଖକଟିଏ ହୋଇଥିବାରୁ ଶ୍ରୀ ରଥ ହୁଏତ ନିଜ କବିତା ସମ୍ବନ୍ଧରେ ନିଶ୍ଚିତ ନହୋଇ ସେଗୁଡ଼ିକୁ ପ୍ରକାଶ କରିବାକୁ ଚ୍ଛାହିଁ ନାହାନ୍ତି । ଏବେ ଦ୍ୱିଧା କଟିଛି । ସେ ଅନେକ ଦିନରୁ କବିତା ଲେଖୁଛନ୍ତି । ଏହା ଯେବେ ତାଙ୍କ ପ୍ରାଥମିକ ସ୍ତରର ରଚନା ହୋଇଥାଏ ତେବେ ବୁଝିବାକୁ ହେବ ଯେ, ଶ୍ରୀ ରଥଙ୍କ କବିତା ଜନ୍ମରୁ ପୂର୍ଣ୍ଣ ଯୌବନା— born in full panoply । ଏତେ ଉତ୍ତୀର୍ଣ୍ଣତାରୁ କ୍ୱଚିତ କେହି କବିତା ଲେଖା ଆରମ୍ଭ କରିଥାନ୍ତି । ପରିଣତ ହାତର ସ୍ପର୍ଶ ବିନ୍ୟସ୍ତ ସର୍ବତ୍ର ।

'ତୁମ ପାଇଁ ପକ୍ଷୀଗାନ' ଠିକ୍ କବିତା ସଙ୍କଳନଟିଏ ନୁହେଁ । ବରଂ ଏକ ସଙ୍କଳନ ସଂଗ୍ରହ ବା କବିତା ସଂଗ୍ରହ । ଏଥିରେ ପ୍ରଥମରୁ ଅଛି ଉପୋଦ୍‌ଘାତ ସ୍ୱରୂପ ସ୍ତ୍ରରୋଟି କବିତାର ଗୋଟିଏ ପର୍ବ । ନାମ ଆତ୍ମାହୁତି । (ଯଦିଓ କବି କହନ୍ତି ଉପୋଦ୍‌ଘାତ ନାହିଁ) । ଏତଦ୍‌ବ୍ୟତୀତ ଆଉ ତିନୋଟି ପର୍ବ—(୧) ଅର୍ଦ୍ଧନାରୀଶ୍ୱର—ଶ୍ରୀ ରଥଙ୍କ ପ୍ରେମ କବିତା । (୨) ଈଶ୍ୱରଠୁ ବଡ଼—ଥୀମ୍ ଦୃଷ୍ଟିରୁ ବିଚିତ୍ରବର୍ଣ୍ଣା । (୩) ନୀଳ ସମୁଦ୍ର— ମୃତ୍ୟୁ ସଚେତନତାର କବିତା । କବିତାଗୁଡ଼ିକରେ ଆଧୁନିକ କବିତାର ଅନେକ ସଦ୍‌ଗୁଣ ବିଦ୍ୟମାନ; ଆଧୁନିକ ଫର୍ମବୋଧଠାରୁ ଆରମ୍ଭ କରି ଆତ୍ମ ସଚେତନତା ପର୍ଯ୍ୟନ୍ତ । ଅବଶ୍ୟ ପ୍ରଥମରୁ ଯେଉଁ

ଗୁଣ ଆମ ମନୋଯୋଗ ଆକର୍ଷଣ କରିଥାଏ  ତାହା ସଂଗ୍ରହଟିର ସପ୍ରତିଭ ସମୁଜ୍ଜ୍ୱଳ ବାକ୍ ଚାତୁର୍ଯ୍ୟ । ଆଙ୍ଗିକ ସଚେତନତା, ପରିଶୀଳିତ ରୂପ ନିର୍ମାଣ, ପ୍ରତୀକ ଚିତ୍ରକଳ୍ପ, ବୟନ ନୈପୁଣ୍ୟ, ଶ୍ରବଣସୁଭଗ ଶବ୍ଦ ପ୍ରୟୋଗ, ବୈଚିତ୍ର୍ୟ ଓ ଶାଣିତ ଶ୍ଳେଷବକ୍ରୋକ୍ତି ପ୍ରୟୋଗ କୁଶଳତାରେ ଶ୍ରୀ ରଥ ଆମକୁ ଚମତ୍କୃତ କରିଥାନ୍ତି ।

'ତୁମ ପାଇଁ ପକ୍ଷୀଗାନ' ନାମଟି ବଡ଼ ତାତ୍ପର୍ଯ୍ୟପୂର୍ଣ୍ଣ । ଏହା ଯୁଗପତ୍ ଶ୍ରୀ ରଥଙ୍କ କାବ୍ୟଶିଳ୍ପ ଓ କବିମନର ବୈଶିଷ୍ଟ୍ୟ ସୂଚାଇଥାଏ । ଗାନ ପାଇଁ କାନର ଯେଉଁ ସହଜ ପ୍ରବୃତ୍ତିଜାତ ଆଗ୍ରହ ଅଛି ତାହାର ସୁଯୋଗ ନେଇପାରନ୍ତି କବି । କବିତା ପଢ଼ିବା ଅପେକ୍ଷା ଆବୃତ୍ତି ଶୁଣିବା ଶ୍ରେୟସ୍କର । ଉପଯୁକ୍ତ ଆବୃତ୍ତି ଭାବସ୍ରୋତରେ ହାତଧରି ମନକୁ ପ୍ରେମ, ବିସ୍ମୟ ତ କଳ୍ପନାର ରହସ୍ୟ ଲୋକକୁ ଉତ୍ତୀର୍ଣ୍ଣ କରିଦିଏ । କବି ତେଣୁ କବିତାର ଆବୃତ୍ତି ଯୋଗ୍ୟତା ଉପରେ ଗୁରୁତ୍ୱ ଦିଅନ୍ତି । କବି ମନଟି ସବୁଦିନେ ପକ୍ଷୀମନ । ବଡ଼ ପୁରୁଣା ପ୍ରତୀକ କିନ୍ତୁ ଅଶେଷ ଶକ୍ତିସଂପନ୍ନ । ପୁରୁଣା ପ୍ରତୀକ ମାତ୍ରେ ଆର୍କିଟାଇପାଲ୍ — ସାମୂହିକ ଅବଚେତନର ସାମଗ୍ରୀ — ତେଣୁ ସହସ୍ର-ଜିହ୍ୱ — ଅନେକ ଅର୍ଥ ବିଚ୍ଛୁରିତ କରିଥାଏ । ଶ୍ରୀ ରଥ ସୁନିପୁଣ ଭାବରେ ପ୍ରତୀକଟି ବ୍ୟବହାର କରି ଇଦାନୀନ୍ତନକୁ ଚିରନ୍ତନ ସହିତ ସଂଯୁକ୍ତ କରି ଦେଇଛନ୍ତି, ବ୍ୟକ୍ତି ନିୟତିକୁ ମାନବ ନିୟତି ସହିତ ଯୋଡ଼ି ପାରିଛନ୍ତି — ପକ୍ଷୀ ଉଚ୍ଚତା-ଅନ୍ୱେଷଣର ପ୍ରତୀକ — ତେବେ ସେ ପୃଥିବୀକୁ ନ ଓହ୍ଲାଏ ନୁହେଁ, ଓହ୍ଲାଏ । ସେ ନୀଡ଼ ଚାହେଁ, ନୀଳାମ୍ବର ବି ଚାହେଁ — ଶ୍ରୀ ରଥଙ୍କ କବି ମନ ସେଦିନ 'ରଥ ସପ୍ତକ'ରେ ଆମ ପରିଚିତ ଆକାଶ ଛାଡ଼ି ଅନ୍ୟ କୌଣସି ଆକାଶରେ ପହଞ୍ଚି ଯାଇଥିଲା, ଓହ୍ଲାଇଛି ଅବଶ୍ୟ ତଳକୁ, କିନ୍ତୁ ଅମୃତଲୋକର ସ୍ମୃତି ସୁରଭିତ ରହିଛି ଚିରଦିନ । ଶେଷ ପର୍ଯ୍ୟନ୍ତ ଶ୍ରୀ ରଥ କବିଙ୍କ ପାଇଁ ଫିନିକ୍ ବିହଙ୍ଗ (Phoenix)ର ପ୍ରତୀକ ବ୍ୟବହାର କରିଛନ୍ତି, ଆତ୍ମାହୁତିରେ ଯାହାର ପୁନରୁଜ୍ଜୀବନ ଘଟିଥାଏ । ଅଧିକନ୍ତୁ ତାହାକୁ ପ୍ରଭାତ ସୂର୍ଯ୍ୟ ସହିତ ଅନ୍ୱିତ କରାଯାଇଥାଏ । ରାତ୍ରି ଯେତେ ଦୀର୍ଘ ଓ ଗଭୀର ହେଲେ ବି ପ୍ରଭାତେ ସୂର୍ଯ୍ୟ ଉଦୟ ଘଟେ; ତେଣୁ ଭୟଙ୍କର ଦୁଃସ୍ଥିତିରେ ଭାଙ୍ଗି ପଡ଼ିବାର କିଛି ନାହିଁ । କବିତା ଅନଳରେ ଝାସି ନବଯୌବନ ଜୀବନ ଲାଭ କରନ୍ତି କବି, ମଣିଷ ମୃତ୍ୟୁରେ ଅମୃତତ୍ୱ ଲାଭ କରେ । ଶ୍ରୀ ରଥଙ୍କ କାବ୍ୟ ସାଧନା ମୃତ୍ୟୁରୁ ପୁନରୁଜ୍ଜୀବନର ସାଧନା । ଅସୂର୍ଯ୍ୟ ଉପନିବେଶ ଶେଷକଥା ନୁହେଁ, ମୃତ୍ୟୁ ବି ପୂର୍ଣ୍ଣଚ୍ଛେଦ ନୁହେଁ । ସେଥିପାଇଁ ପ୍ରତୀକଟି ଶ୍ରୀ ରଥଙ୍କ ପାଇଁ ସୁପ୍ରଯୁକ୍ତ— ସେ ଫିନିକ୍ ବିହଙ୍ଗ — କବିତା ଲେଖୁଥାନ୍ତୁ, ବାରମ୍ବାର ନବ ଜୀବନ ଓ ଯୌବନ ଲାଭ କରୁଥାନ୍ତୁ । ଆଉ ମଣିଷକୁ ସ୍ୱୟଂ ପୁନରୁଜ୍ଜୀବିତ ହେବା ଶକ୍ତିରେ ଅଭିଷିକ୍ତ କରାନ୍ତୁ । ଏହାହିଁ ତାଙ୍କ ଜନ୍ମ ତିଥିରେ ଆମର ପ୍ରାର୍ଥନା ।

ଅବସରପ୍ରାପ୍ତ ପ୍ରଫେସର, ଗୋଧୂଳି ଲେନ୍,
ଦେଉଳ ସାହି, କଟକ



# ଚନ୍ଦ୍ରଶେଖରଙ୍କ ପ୍ରବନ୍ଧ - ମାନସର ସାରସ୍ୱତ ଦୃଷ୍ଟି, ଦର୍ଶନ ଓ ବିଗ୍ଭର

***ବୈଷ୍ଣବ ଚରଣ ସାମଲ***

ଚଳିତ ଅର୍ଦ୍ଧଶତାବ୍ଦୀ ଓଡ଼ିଆ ସାହିତ୍ୟର ଇତିହାସରେ ଚନ୍ଦ୍ରଶେଖର ରଥ ଏକ ପ୍ରତିଷ୍ଠିତ ସାରସ୍ୱତ ପୁରୁଷ କେବଳ ନୁହଁନ୍ତି, ଅନେକ ଦୃଷ୍ଟିକୋଣରୁ ଏକ ବିସ୍ମୟ ମଧ୍ୟ । ଏହି ବିସ୍ମୟ ତାଙ୍କ ବ୍ୟକ୍ତିତ୍ୱ ପାଇଁ ନୁହେଁ, ତାଙ୍କ ପ୍ରଜ୍ଞା ପାଇଁ ମଧ୍ୟ ନୁହେଁ । ଏହା ତାଙ୍କର ଅଦ୍‌ଭୂତ ସୃଜନୀ ଶକ୍ତି ପାଇଁ, ଯାହା ତାଙ୍କର ଅନ୍ତର୍ଜ୍ଞାନ, ବହିର୍ଜ୍ଞାନ ଓ ପୂର୍ବଜନ୍ମର ସଂସ୍କାର ଜନିତ ଜ୍ଞାନର ସମନ୍ୱୟ କରି ଅବାରିତ ଭାବରେ ପ୍ରବାହିତ ହୋଇଯାଇଛି କଳନାଦିନୀ ଝରଣା ପରି । କେହି ସେହି ସ୍ରୋତକୁ ଅଟକାଇ ପାରୁ ନାହିଁ । ଆଗେ ଆଗେ ସ୍ୱୟଂ ସ୍ରଷ୍ଟା । ଠିକ୍ ଭଗୀରଥ ପରି ଗ୍ଭଲିଛନ୍ତି । ଏକାଗ୍ର ତାଙ୍କର ଲକ୍ଷ୍ୟ । ସେହି ଲକ୍ଷ୍ୟକୁ ବ୍ୟର୍ଥ କରିପାରୁ ନାହିଁ ବିନ୍ଧ୍ୟଗିରି, ସୁରାପ୍ରସ୍ତୁତକାରୀ ସୁରେଶ୍ୱର ବା ଜହ୍ନୁ ଋଷି । ସୃଜନର ସ୍ରୋତ ଆଗେଇ ଗ୍ଭଲିଛି । ଲାଳସା ଦୃଷ୍ଟିରେ ଉପଭୋଗ କରିବାକୁ ଇଚ୍ଛା କରି ଐରାବତ ତାର ଆଘାତରେ ଗଡ଼ି ପଡ଼ିଛି । ଯାହାର ଲକ୍ଷ୍ୟ ମାନବ-କଲ୍ୟାଣ, ଅଗ୍ନି ଦଗ୍ଧ ମଣିଷମାନଙ୍କର ଉଦ୍ଧାର ତାକୁ ଅଟକାଇ ପାରିବ କିଏ ? ଉଦାତ୍ତ ତାର ଗତି । ତାହାହିଁ ପାଠକକୁ ଆପଣାର କରିନିଏ, କେତେବେଳେ କୋଳେଇ ନିଏ ମାଆପରି, କେତେବେଳେ ବନ୍ଧୁପରି ହସି ହସି ବାହୁଦୁଇଟି ପ୍ରସାରିତ କରିଦିଏ ଆଲିଙ୍ଗନ କରିବାପାଇଁ । ବେଳେବେଳେ ଦାର୍ଶନିକ ପରି କେତେ ନାଇ କେତେ ତତ୍ତ୍ୱକୁ ବ୍ୟାଖ୍ୟା କରିଦିଏ ନୂତନ ଢ଼ଙ୍ଗରେ । ପୁଣି କେଉଁଠି କେଉଁଠି ନୀତିବାନ ଗୁରୁପରି ଗ୍ଭବୁକ ମାରିଦିଏ ବ୍ୟଙ୍ଗ ଓ ବିଦ୍ରୂପ ମାଧ୍ୟମରେ । ସର୍ବତ୍ର ଏକମାତ୍ର ଲକ୍ଷ୍ୟ ମାନବ-କଲ୍ୟାଣ । ଏହି ମଙ୍ଗଳବୋଧ ସତ୍ୟକୁ ଛାଡ଼ିନାହିଁ; ଛାଡ଼ିନାହିଁ ମଧ୍ୟ ସୁନ୍ଦରକୁ । କଳ୍ପନାକୁ ଛାଡ଼ି ନାହିଁ; ଛାଡ଼ିନାହିଁ ମଧ୍ୟ ବାସ୍ତବକୁ । ସବୁ ଯେମିତି ଏକାକାର ହୋଇ ସୃଷ୍ଟି କରିଛି ଅପୂର୍ବ ଭାବରସ । ଗଳ୍ପ ହେଉ, ଉପନ୍ୟାସ ହେଉ, କବିତା ହେଉ ଅଥବା ପ୍ରବନ୍ଧ ବା ରମ୍ୟ ରଚନା ହେଉ ସର୍ବତ୍ର ସେଇ ଗୋଟିଏ ଲକ୍ଷ୍ୟ-ମାନବ-କଲ୍ୟାଣ । ଚନ୍ଦ୍ରଶେଖର ଏହି ଲକ୍ଷ୍ୟ ନେଇ ସାହିତ୍ୟ ସୃଷ୍ଟି କରିଛନ୍ତି । ଆପଣାର ସୃଷ୍ଟି ଭିତରେ ସେ କେଉଁଠି ନିର୍ଲିପ୍ତ ହୋଇ ରହିନାହାନ୍ତି; ବରଂ ସର୍ବତ୍ର ସେ ମିଶିଯାଇଛନ୍ତି । ଆପଣାର ଜୀବନ-ରସକୁ ଜାରିତ କରିଦେଇ ସୃଷ୍ଟି କରିଦେଇଛନ୍ତି ମାନବୀୟ ରସ, ଯେଉଁଥିରେ ଦୁଃଖ ଅଛି, ଯନ୍ତ୍ରଣା ଅଛି, ଅସହାୟତା ଅଛି; ଅଛି ମଧ୍ୟ ଆଶା, ଅନ୍ୱେଷା, ଜିଜ୍ଞାସା ଓ ଆତ୍ମପରିଚୟର ଇଙ୍ଗିତ । ଆଲୋଚ୍ୟ ପ୍ରବନ୍ଧରେ ଶ୍ରୀ ରଥଙ୍କର ବହୁମୁଖୀ

ସାରସ୍ୱତ ଦୃଷ୍ଟି ଓ ଦର୍ଶନ ସଂପର୍କରେ ଆଲୋଚନା କରା ନଯାଇ ତାଙ୍କ ବିପୁଳ ରଚନା (ପ୍ରବନ୍ଧ, ରମ୍ୟରଚନା) ମଧ୍ୟରୁ କେବଳ ତାଙ୍କର ସାରସ୍ୱତ ବିଗ୍ରହ ଓ ଦୃଷ୍ଟିକୋଣ ସଂପର୍କରେ ଆଲୋଚନା କରାଯାଉଅଛି ।

ଶ୍ରୀ ରଥ ଔପନ୍ୟାସିକ, ଗାଳ୍ପିକ, କବି ଓ ପ୍ରାବନ୍ଧିକ । ପ୍ରବନ୍ଧ ତାଙ୍କର ପ୍ରଜ୍ଞା-ମାନସର ପ୍ରବୋଧକ । ଏହା କିନ୍ତୁ ନିରୋଳା ପ୍ରଜ୍ଞାର ନୁହେଁ; ଆବେଗର ମଧ୍ୟ । ମନ ଏବଂ ହୃଦୟ ଯେମିତି ହାତ ଧରାଧରି ହୋଇ ବନ୍ଧୁପରି ଗ୍ଲଲିଛନ୍ତି । ମୌନ ନୁହଁନ୍ତି; ଆଳାପ ରତ । ସେହି ଆଳାପ ବଡ଼ ମନୋରମ ଓ ହୃଦୟଭେଦୀ । ପ୍ରବନ୍ଧ ଭିତରକୁ ବିଶ୍ୱ ସାହିତ୍ୟର ବହୁ ମନିଷୀ ପଶିଆସିଛନ୍ତି, ବହୁ କବି ଓ ଲେଖକ ମଧ୍ୟ ଆସିଛନ୍ତି । ମୁଖ୍ୟ ଭାବରେ ଆସିଛି ଉପନିଷଦ, ପ୍ରାଚ୍ୟ ସଂସ୍କୃତିର ରାମାୟଣ ଓ ମହାଭାରତ । ପ୍ରାବନ୍ଧିକଙ୍କ ମାନସ ମୁକୁରରେ ନିତ୍ୟ ନିୟତ ପ୍ରତିସରିତ ଉପନିଷଦର ବ୍ରହ୍ମତତ୍ତ୍ୱ, ଜୀବନ ଓ ବ୍ରହ୍ମାଣ୍ଡ ତତ୍ତ୍ୱ । ତେଣୁ ପ୍ରସଙ୍ଗ କ୍ରମେ ଉପନିଷଦର ଗୋଟିଏ ଗୋଟିଏ ଚିତ୍ର ଏପରି ପ୍ରତୀକିତ ଭାବରେ ରୂପ ନେଇଯାଇଛନ୍ତି ଯାହା ପାଠକକୁ ଟିକିଏ ଅଟକେଇ ଦିଏ ଚିନ୍ତା କରିବା ପାଇଁ । ଏହିପରି ଭାଗବତ, ରାମାୟଣ ଓ ମହାଭାରତର କେତେ କେତେ ଚରିତ୍ର ଓ ପ୍ରସଙ୍ଗ ମଧ୍ୟ ପ୍ରତୀକିତ ହୋଇ ଉଠିଛି ନାନା ପ୍ରବନ୍ଧରେ, ରଚନାରେ । ଏହା ମାଧ୍ୟମରେ ସେ ଯୋଡ଼ି ଦେଇଛନ୍ତି ବର୍ତ୍ତମାନକୁ ଅତୀତ ସହିତ- ପ୍ରତିଷ୍ଠିତ ହୋଇଯାଇଛି ଗୋଟାଏ ସଂପର୍କର ସେତୁବନ୍ଧନ । ସେହି ସେତୁ ଦେଇ ପାଠକ ବାରମ୍ବାର ଯାତାୟତ କରୁଛି ବର୍ତ୍ତମାନରୁ ଅତୀତକୁ ଓ ଅତୀତରୁ ବର୍ତ୍ତମାନକୁ । ଅତୀତରେ ଯାହା ମୂଲ୍ୟବୋଧ ଦ୍ୟୋତକ, ଯାହା ଶାଶ୍ୱତର ବାର୍ତ୍ତାବହ, ତାକୁ ଆଣି ବର୍ତ୍ତମାନର ନୂତନ ମୁକୁଟ ପିନ୍ଧାଇଦେଇଛନ୍ତି । ଏହାହିଁ ତାଙ୍କର ବାହାଦୁରୀ । ସେ ତେଣୁ କହନ୍ତି - 'ବ୍ୟାସ, ବାଲ୍ମିକି, ସାରଳା, ଜଗନ୍ନାଥ ଯେଉଁ ସାହିତ୍ୟର ପରଂପରା ସେଥିରେ କ'ଣ ଗୋଟାଏ ସଂପୂର୍ଣ୍ଣ ନୂଆ କଥା କହିଦେବି, ସେ ଧୃଷ୍ଟତା ମୋର ନାହିଁ, କିନ୍ତୁ ଜୀବନ ଜାହ୍ନବୀରେ ଐରାବତ ସ୍ନାନ କରିଗ୍ଲଲିଗଲା ପରେ ସ୍ରୋତ ସରିଯାଏ ନାହିଁ ଏବଂ ପିମ୍ପୁଡ଼ିଟିଏ ମଧ୍ୟ ତା' ଶକ୍ତି ଅନୁସାରେ ସେଥିରେ କିଛିବାଟ ପହଁରିଯିବା ପାଇଁ ନୂତନ ସମ୍ଭାବନା ଥାଏ । ବ୍ୟାସେ ଯାହା ଦେଖିଛନ୍ତି, ହୁଏତ ମଣିଷ ଜନ୍ମରେ କେହି ସେତେ ଦେଖିବ ନାହିଁ । ତଥାପି ପୁରୁଣାକୁ ମଧ୍ୟ ନୂଆ ଭଙ୍ଗୀରେ ଦେଖାଯାଇପାରେ । ବେଳେବେଳେ ଏ ଅନନ୍ତ ଧାରାରେ ସଂପୂର୍ଣ୍ଣ ନୂଆଟିଏ ମଧ୍ୟ ଆସି ନ ଯିବ ଏପରି ନୁହେଁ ।' (ରଚନା ସଂପର୍କରେ-କ୍ରୀତ ଦାସର ସ୍ୱପ୍ନ)

ଚନ୍ଦ୍ରଶେଖର ବାରମ୍ବାର ଭାରତର ପ୍ରାଚୀନ ସଂସ୍କୃତି ଓ ପରଂପରାକୁ ସମ୍ମାନ ଜଣାଇଛନ୍ତି । ପ୍ରାଚୀନ ଗ୍ରନ୍ଥର ମହିମା ଓ ମହତ୍ତ୍ୱ ନିକଟରେ ମୁଣ୍ଡ ନୁଆଁଇ ଦେଇ ଅଛନ୍ତି । ଏହାର ଅର୍ଥ ନୁହେଁ ଯେ ତାଙ୍କର ସ୍ରଷ୍ଟା-ପୁରୁଷ ନୂତନ ସୃଷ୍ଟି ପାଇଁ ଅସମର୍ଥ । ସକଳ

ସାମର୍ଥ୍ୟ ସତ୍ତ୍ୱେ ପରଂପରା ପ୍ରତି ଶ୍ରଦ୍ଧା ଓ ମାନ୍ୟତା ତାଙ୍କ ବ୍ୟକ୍ତିତ୍ୱର ଏକ ମହିମାମୟ ଦିଗ । ଯେଉଁ ବ୍ୟକ୍ତି ବା ଜାତି ପରଂପରାକୁ ଭୁଲି ଯାଏ ସିଏ ହିଂସ୍ର ହୋଇଯାଏ, ପ୍ରମତ୍ତ ହୋଇଯାଏ । ସିଏ ହୁଏତ ଧ୍ୱଂସ କରିପାରେ ମାତ୍ର ନୂଆ କିଛି ସୃଷ୍ଟି କରିପାରେ ନାହିଁ । ଉତ୍ତର-ଆଧୁନିକ ଚେତନାରେ ପରଂପରାକୁ ଅସ୍ୱୀକାର କରାଯାଇନାହିଁ । ବରଂ ପରଂପରା ଭିତରୁ ନୂତନ ଜୀବନ-ରସର ଅନୁସଂଧାନ କରି ତାହାକୁ ଆଧୁନିକ ସହିତ ମିଶାଇ ଦିଆ ଯାଉଛି । ସେହିପରି ସାହିତ୍ୟର କେନ୍ଦ୍ରରୁ ଏକଦା ଇତିହାସକୁ, ମଣିଷକୁ ଓ ମୂଲ୍ୟବୋଧ ବା ଆଦର୍ଶକୁ ବହିଷ୍କାର କରାଯାଇଥିଲା । ଉତ୍ତର-ଆଧୁନିକ ଚେତନାରେ ସେ ସବୁର ପୁନଃ ପ୍ରତିଷ୍ଠା କରାଗଲା । ଚନ୍ଦ୍ରଶେଖର ଏ ବିଷୟରେ ଗଭୀର ସଚେତନ । ତେଣୁ ସେ ପରଂପରା, ଇତିହାସ, ମଣିଷ ଓ ମୂଲ୍ୟବୋଧ ପ୍ରତି ଆନ୍ତରିକ ସମ୍ମାନ ଜଣାଇଅଛନ୍ତି । ଅଥଚ ସେଥିରେ ସେ ଅଟକି ଯାଇ ନାହାନ୍ତି । ତାହାରି ଭିତର ଦେଇ ସେ ନୂଆ କିଛି କହିଛନ୍ତି । ସେ ଜାଣନ୍ତି ଯେ ଭାବ ଓ ବିଷୟ ସମସ୍ତଙ୍କ ପାଖରେ ସମାନ । ନିଆରା କେବଳ ପ୍ରକାଶଭଙ୍ଗୀ । ଏହି ପ୍ରକାଶଭଙ୍ଗୀହିଁ ଜଣେ ଲେଖକଙ୍କୁ ଅନ୍ୟଜଣଙ୍କଠାରୁ ନିଆରା କରି ଚିହ୍ନାଇଦିଏ । ସେଇଥିରେ ଲେଖକୀୟ ସତ୍ତାକୁ ଗଭୀର ଭାବରେ ଦୋହଲାଇ ଦେଇ ନୂଆ ଭାବଟିଏ ସଂଚରି ଆସେ । ପରଂପରା ସହିତ ତାର ସଂପର୍କ ଥିଲେ ହେଁ ତାହା ନୂଆ ହୋଇଯାଏ, ଯେମିତି 'ପାହାଡ଼ ଦେହରେ ଲଟେଇଥିବା କୁନ୍ଦ ଲଇ ମୂଳରେ କାଲିର ଫୁଲଯାକ ଆଉରି ମଉଳି ନାହିଁ; କିନ୍ତୁ ତା'ର ଚୂଳେ ଚୂଳେ ନୂଆ କଢ଼ ସବୁ ପାଖୁଡ଼ାମେଲି, ଆସୁଛନ୍ତି । ଦେଖିବାକୁ ଅବିକଳ ସେମିତି; କିନ୍ତୁ ଏ ଫୁଲ କ'ଣ ସେଇଫୁଲ ?' ଲେଖକଙ୍କ ଭାଷାରେ—'ଫୁଲର ଆଉ ଅନେକ ଗୁଣ ପରି ଗୋଟିଏ ଗୁଣ ହେଲା, ଆମ ମନ ଭିତରେ ଫୁଲ ଫୁଟେଇବା । ଚିନ୍ତାର ଗୁଣ ହେଲା, ପାଠକର ଚିନ୍ତା କେନ୍ଦ୍ରକୁ ଆଲୋଡ଼ିତ କରିବା । ସମୟ ସମୟରେ ସଂପୂର୍ଣ୍ଣ ମୁହ୍ୟମାନ କରିବାର ଶକ୍ତି ମଧ୍ୟ ତା'ର ଅଛି ।' (ରଚନା ସଂପର୍କରେ)

ଚନ୍ଦ୍ରଶେଖରଙ୍କ ରଚନାକୁ ଉପରୋକ୍ତ ଦୃଷ୍ଟିକୋଣରୁ ଅନୁଧ୍ୟାନ କଲେ ଜଣାଯାଏ ଯେ ସେଥିରେ ସେ ଫୁଲ ଫୁଟେଇଛନ୍ତି ଓ ତାରି ଭିତରେ ଗଭୀର ଚିନ୍ତାଟିଏ ଦେଇ ଦେଇଛନ୍ତି, ଯାହା ସେହି ଫୁଲର ଫଳ । ସାହିତ୍ୟରେ ବିଷୟବସ୍ତୁକୁ ନୈର୍ବ୍ୟକ୍ତିକ ଭାବରେ ବର୍ଣ୍ଣନା କରନ୍ତି । କେହି ମଧ୍ୟ ବ୍ୟକ୍ତିକ ଶୈଳୀରେ ଉପସ୍ଥାପନ କରନ୍ତି । ଉଭୟ ଶୈଳୀ ସାହିତ୍ୟ ପାଇଁ ସତ୍ୟ ହେଲେହେଁ ବ୍ୟକ୍ତିକ ଶୈଳୀରେ ଥିବା ପ୍ରଥମ ପୁରୁଷ 'ମୁଁ'ଟି ଆପଣାର ଅନ୍ତର ଭିତରୁ ଏପରି ଭାବରେ ବହିଯାଏ ଯେ ସେହି 'ମୁଁ'ଟି ଆଉ ଏକାନ୍ତ ବ୍ୟକ୍ତିଗତ 'ମୁଁ' ହୋଇ ନ ରହି, ସର୍ବଜନୀନ 'ମୁଁ' ହୋଇଯାଏ । ପାଠକ ଭାବେ ଲେଖକଙ୍କ 'ମୁଁ'ଟି ସତେ ଯେମିତି ତାର 'ମୁଁ' ।ସେହି 'ମୁଁ'ଟିକୁ ଲେଖକ ଯେମିତି ତାର କୋମଳ କରପଲ୍ଲବରେ

କେତେବେଳେ ଆଉଁସି ଦେଉଛି, କେତେବେଳେ ହାତୁଡ଼ିରେ ନିର୍ମମ ପ୍ରହାର କରିଦେଉଛି । ଚନ୍ଦ୍ରଶେଖର ଏହିପରି ଶୈଳୀକୁ ରଚନାରେ ଗ୍ରହଣ କରିଛନ୍ତି ଓ ସେହି ଶୈଳୀରେ ସତେ ଯେପରି ତାଙ୍କର ଅନ୍ତଃସତ୍ତା ଭାସି ଭାସି ଯାଇଛି ଓ ସେହି ସତ୍ତା ଅନ୍ୟାନ୍ୟ ଅନେକଙ୍କୁ ଆପଣା ସହିତ ଏକାତ୍ମ କରି ନେଇଛି । ତାଙ୍କ ମତରେ 'ବିଷୟବସ୍ତୁ ଉପରେ ବିଭିନ୍ନ ଚିନ୍ତାରେ ତୋରଣ ଟେକିବା ଅବଶ୍ୟ ଅନିବାର୍ଯ୍ୟ; କିନ୍ତୁ ତାହା ସଂପୂର୍ଣ୍ଣ ନୈର୍ବ୍ୟକ୍ତିକ ହେବା କ'ଣ ସେଭଳି ଅନିବାର୍ଯ୍ୟ ? ନୈର୍ବ୍ୟକ୍ତିକ ହେବା ଅନେକଙ୍କ ମତରେ ପ୍ରକୃତ ସତ୍ୟଦ୍ରଷ୍ଟାର କାମ । ସେ ସବୁ କଥା ସ୍ଥିର ଭାବରେ ବୁଝିଥାଏ । ତାର ଆଉ ଗୋଳମାଳ କିଛି ନାହିଁ । ଏଣୁ ଅସଂପୃକ୍ତ ଦ୍ରଷ୍ଟା ରୂପେ ସେ ଦୂରରୁ ରହି କଥାଟାକୁ ଦେଖେ ବା କହେ । ଟିକିଏ ବିଗ୍ରହ କଲେ ଜଣାଯାଉଛି, ସତେ ବା ଏଇଟା ଗୋଟାଏ ଠାଣି ମାତ୍ର । କୌଣସି ପ୍ରକାଶିତ ବା ଭାଷାରେ ରୂପାୟିତ ସତ୍ୟ କ'ଣ କେବେ ନୈର୍ବ୍ୟକ୍ତିକ ହୋଇପାରେ ? ନିଜକୁ ବିଷୟ ସହିତ ସଂଶ୍ଳିଷ୍ଟ ନ କଲା ପର୍ଯ୍ୟନ୍ତ, ତା' ଭିତରେ ନିଜ ପ୍ରାଣ ପ୍ରତିଷ୍ଠା ନ କଲା ପର୍ଯ୍ୟନ୍ତ ସେ କ'ଣ କେବେ ପ୍ରାଣବନ୍ତ ହୁଏ ? ଯେ ସଂପୂର୍ଣ୍ଣ ନୈର୍ବ୍ୟକ୍ତିକ, ଅସଂପୃକ୍ତ ଦ୍ରଷ୍ଟା, ସେ ଅବିକ୍ରିୟ; ନିଜକୁ ପ୍ରକାଶ କରିବାର ଜ୍ୱାଳାରୁ ମୁକ୍ତ । ଏଣୁ ସେପରି 'ବ୍ରହ୍ମ ହୋଇଯାଇଥିବା ବ୍ରହ୍ମବିଦ୍'କୁ ନେଇ ସାହିତ୍ୟ କ'ଣ କରିବ ?' ଏଥିରୁ ସ୍ପଷ୍ଟ ଜଣାଯାଏ ଯେ ଚନ୍ଦ୍ରଶେଖର ସଂପୂର୍ଣ୍ଣ ଅସଂପୃକ୍ତି ନୈର୍ବ୍ୟକ୍ତିକ ସୃଷ୍ଟିର ପକ୍ଷପାତୀ ନୁହନ୍ତି । ସୃଷ୍ଟି ଭିତରେ ସ୍ରଷ୍ଟା ଆପଣାର ପ୍ରାଣ ପ୍ରତିଷ୍ଠା କଲେ ହିଁ ସେହି ସୃଷ୍ଟି ହୁଏ ସାର୍ଥକ । ଏପରି କେତେ ମହାନ ସାରସ୍ୱତ ସୃଷ୍ଟି ଅଛି, ଯାହା ବାହାରକୁ ନୈର୍ବ୍ୟକ୍ତିକ ପରି ଜଣାଯାଉଥିଲେ ମଧ୍ୟ ତା' ଭିତରେ ସ୍ରଷ୍ଟା ପୁରୁଷର ହୋଇଛି ପ୍ରାଣପ୍ରତିଷ୍ଠା । ଏହି ଦୃଷ୍ଟିରୁ ହୋମର, ବାଲ୍ମୀକି, ବ୍ୟାସ ଓ ସେକ୍ସପିୟର ଆଦିଙ୍କ କୃତିଗୁଡ଼ିକ ବିଷୁବୀୟ ମହାରଣ୍ୟ ପରି ନିରନ୍ଧ୍ର, ଦିଗନ୍ତ ପ୍ରସାରୀ ଓ ନୈର୍ବ୍ୟକ୍ତିକ ପରି ଆମକୁ ଦିଶୁଥିଲେ ମଧ୍ୟ ସେସବୁର ବିଶାଳତା ଭିତରେ ସେମାନଙ୍କ ବ୍ୟକ୍ତିତ୍ୱ ପ୍ରକାଶ ପାଇଯାଇଛି । ତେଣୁ ବାଲ୍ମୀକିଙ୍କ ରାମାୟଣରେ ବର୍ଣ୍ଣିତ ଜରତା, ସୂର୍ପଣଖା, ରାବଣ, ବଶିଷ୍ଠ, ଦଶରଥ ଓ ରାମଚନ୍ଦ୍ର ଆଦି ଚରିତ୍ରକୁ ଅନୁଧ୍ୟାନ କଲାବେଳେ ସେଠି ଅବଶ୍ୟ କୌଣସି ଏକକ ବ୍ୟକ୍ତିତ୍ୱ ମିଳେ ନାହିଁ; ତଥାପି ତାକୁ ନୈର୍ବ୍ୟକ୍ତିକ କହିବା ଅବିଗ୍ରହ ହେବ ବୋଲି ଲେଖକଙ୍କର ଅଭିମତ ।

ରଚନାରେ ବ୍ୟକ୍ତିଗତ ସ୍ୱରଟି ଅତି ସ୍ପଷ୍ଟ । ଯେଉଁ ରଚନାରେ ଏହି ସ୍ୱରଟି ଯେତେ ଗଭୀର ଓ ସ୍ପଷ୍ଟ ସେହି ରଚନାଟି ସେତେ ସାର୍ଥକ ଓ ହୃଦୟସ୍ପର୍ଶୀ । ତଥାପି ଦେଖାଯାଏ ଯେ ସାହିତ୍ୟର ପରିସର ମଧ୍ୟରେ ଲେଖାଯାଏ ଆଲୋଚନାତ୍ମକ ପ୍ରବନ୍ଧ । ରତ୍ନାକର ପତି, ଶଶିଭୂଷଣ ରାୟ, ବିପିନ ବିହାରୀ ରାୟ ପ୍ରମୁଖ ଯେଉଁ ସବୁ ଆଲୋଚନାତ୍ମକ ପ୍ରବନ୍ଧ ଲେଖିଛନ୍ତି ତାହାକୁ ପଢ଼ିଲେ ମନେହୁଏ ସତେ ଯେମିତି 'ମୋଟା ମୋଟା କାଛର

ବେଶ୍ ମଜବୁଦ୍ ସାତଶେଣିଆ ଘରସବୁ ସାହାଲା ସାହାଲା ହୋଇ ପିଟା ହୋଇଛି ।' ଏଇ କେତୋଟି ଶବ୍ଦ ଭିତରେ ଚନ୍ଦ୍ରଶେଖର ଯେପରି ପୂର୍ବସୂରୀଙ୍କ ପ୍ରବନ୍ଧକୁ ବିଗ୍ରହ କରିଅଛନ୍ତି ତାହା ତାତ୍ପର୍ଯ୍ୟପୂର୍ଣ୍ଣ ମନେହୁଏ । ଏହା ସତ୍ତ୍ୱେ ସେ କହନ୍ତି ଯେ ଖୁବ୍ ଟାଣୁଆ ଶବ୍ଦ ମଧ୍ୟ ଭାଷାକୁ ବଳ ଯୋଗାଏ, ଏଇ ଯେମିତି ମଧୁସୂଦନ ରାଓଙ୍କର 'ଜୀବତତ୍ତ୍ୱ' 'ପୂର୍ଣ୍ଣଧର୍ମ' ବା ରାଧାନାଥ ରାୟଙ୍କର 'ବିବେକୀ' ପ୍ରବନ୍ଧ । ତେବେ ଏ ପରିଭାଷାରେ ଏକପ୍ରକାର ଆଭିଜାତ୍ୟ ପ୍ରକାଶ ପାଇଥିଲେହେଁ ମନେହୁଏ ପାଠକ ସତେ ଯେପରି ତିଖ ଉପରକୁ ଚଢ଼ିଯାଇ ଆଉ ତଳକୁ ଓହ୍ଲାଇ ପାରୁ ନାହିଁ । ଗୋପାଳଚନ୍ଦ୍ର ପ୍ରହରାଜଙ୍କ 'ବାଇମହାନ୍ତି ପାଞ୍ଜି' ବା ଗୋବିନ୍ଦ ତ୍ରିପାଠୀଙ୍କ 'ବଟୁଆ' ନିଶ୍ଚୟ ବ୍ୟତିକ୍ରମ । ଲେଖକଙ୍କ ମତରେ ଏହିଠାରୁ ରଚନା ଲେଖାଯିବା ଆରମ୍ଭ ହେଲା । ଭାଷାର ଆଟୋପ ନ ଥାଇ ମଧ୍ୟ ପାକଳ ଚିନ୍ତାକୁ ପ୍ରକାଶ କରାଯିବାର ଏକ ନୂତନ ପ୍ରବଣତା ଓଡ଼ିଆ ସାହିତ୍ୟରେ ଦେଖାଦେଲା ।

ଲେଖକ ପୁଣି କହନ୍ତି ଯେ ସଂପୂର୍ଣ୍ଣ ଜାଗତିଆର ହୋଇ ଲେଖିଲେ ଖାଲି ବ୍ୟାକରଣ ଗୁଡ଼ିଏ ଲେଖି ହୋଇଯାଏ । ତେଣୁ ଅସନ୍ତୁଷ୍ଟ ଲାଗେ । ଏପରି କ୍ଷେତ୍ରରେ ଭାଷାରେ କବିତାର ଆତ୍ମା ସଂଚରେ ନାହିଁ, କଥାର ମଧ୍ୟ ପ୍ରାଣପ୍ରତିଷ୍ଠା ହୁଏ ନାହିଁ । ତାଙ୍କ ମତରେ— 'ଭୂଇଁରୁ କଞ୍ଚା ତାଳପତ୍ର ମେଲି ଉଭିଦ ଉଠି ଆସିଲାପରି ଗୋଟାଏ ଗହୀରିଆ ପ୍ରତ୍ୟୟ ଭିତରୁ କଞ୍ଚା ଜୀଅନ୍ତା ଭାଷାଟିଏ ମୁଣ୍ଡ ଟେକି ଉଠି ଆସିଲେ ଲାଗେ ଯେ ଭାବ ସ୍ୱୟଂ-ପ୍ରକାଶ ହେଲା ।' ଲେଖକ ଓ ପାଠକ ମଧ୍ୟରେ ଯେଉଁ ସବୁ ବାହାରିଆ ଖୋଳପାଗୁଡ଼ିଏ ଅଛି ସେସବୁ ଖସିଗଲେ ମୌଳିକ ବୁଝାମଣା ହୋଇଯାଏ ଓ ସେତିକିବେଳେ ଲେଖକ ଯେଉଁ ଭାଷା ବ୍ୟବହାର କରେ ତାହା ଆପଣେଇ ହୋଇଯାଏ । ଏପରି କ୍ଷେତ୍ରରେ ଲେଖକ ନୂଆ ନୂଆ ଶବ୍ଦ ଗଢ଼ିଦିଏ, ପୁଣି ପୁରୁଣା ଶବ୍ଦ ନୂଆ ସଂପର୍କରେ, ନୁଆ ରଙ୍ଗରେ ପ୍ରକାଶ ପାଇଯାଏ । ଏସବୁ ଶବ୍ଦ ଜଣାଯାଏ ଚିହ୍ନା ଚିହ୍ନା, ଆପଣାର ଆପଣାର । ଲେଖକ ତେଣୁ କହନ୍ତି—'ଏ ଅସରନ୍ତି ଅର୍ଥ ସଂପଦରେ ଭାଷା ନୂଆ ନୂଆ ବସନ୍ତରେ ପୁଷ୍ପିତ ହୋଇ ଗ୍ୱଲିଥିବ ଯେତେ ଦିନ ପର୍ଯ୍ୟନ୍ତ ମଣିଷ ବଂଚିଛି ।' ଲେଖକ ସବୁବେଳେ ଚେଷ୍ଟା କରୁଥାଏ ଜୀବନର ଏକ ବିଶେଷ ମୂହୂର୍ତ୍ତର ଶ୍ରେଷ୍ଠ ଚିନ୍ତାକୁ ଲୋଗ୍ୱକୋଗ୍ୱ ନ କରି ସ୍ୱାଭାବିକ ଭାବରେ ପ୍ରକଶ କରିବା ପାଇଁ । ସେତିକିବେଳେ ପାଠକ ଅନୁଭବ କରେ ସତେ ଯେମିତି ଲେଖକ ତାର ଗଭୀର ପ୍ରତ୍ୟୟର ଆନ୍ତରିକ ଭାଷାରେ ଏପରି କହିଯାଉଛି ଯେ ତାହା ଯେପରି ଆତ୍ମୀୟତାରେ ଛୁଇଁଯାଉଛି ତାର ଅନ୍ତରକୁ ଓ ସେ ମନେକରୁଛି ଯେପରି ତାରି ଭାବକୁ, କଥାକୁ ଘରୋଇ ଭାଷାରେ କହିଦେଉଛି । ଏଇଠି ହୋଇଯାଏ ଲେଖକ ଓ ପାଠକ ମଧ୍ୟରେ ନିବିଡ଼ ସଂପର୍କର ସେତୁ ବନ୍ଧନ । ଯେଉଁଠି ଲେଖକ ଏହି ସଂପର୍କର ସେତୁ ବନ୍ଧନ କରିପାରେ ନାହିଁ ସେଠି ସେ ଯେତେ ଉଚ୍ଚକୋଟିର ଭାବକୁ ଦେଇଥିଲେ ହେଁ ତାହା ପାଠକକୁ ସ୍ପର୍ଶ କରେ ନାହିଁ ।

ନୂଆ ସାହିତ୍ୟର ଜୟଜୟ କରି ପୁରୁଣା ସାହିତ୍ୟକୁ ସଂପୂର୍ଣ୍ଣ ଆଡ଼େଇ ଦେବାକୁ ଚନ୍ଦ୍ରଶେଖର ଆଦୌ ପସନ୍ଦ କରିନାହାନ୍ତି । ପୁରୁଣା ତ ଆମର ବୁନିୟାଦି, ଆମର ଉର୍ବର ମାଟି । ତାକୁ ଛାଡ଼ି ଦେଇହେବ କିପରି ? ଏହାର ଅର୍ଥ ନୁହେଁ ଯେ ପୁରୁଣା ସାହିତ୍ୟ ଯେମିତି ଥିଲା ନୂଆ ସାହିତ୍ୟକୁ ସେହିପରି ଲେଖାଯିବ । ପୁରୁଣାର ରସ ଆହରଣ କରି ନୂଆକୁ ଆହୁରି ଚକ୍ ଚକ୍ କରିବାକୁ ହେବ । ଯେଉଁସବୁ ନୂତନ ନୂତନ ଆହ୍ୱାନ ଗୁଡ଼ିକ ଆସୁଛି ତାକୁ ସାହିତ୍ୟରେ ସ୍ଥାନ ଦେବାକୁ ହେବ । ପୁରୁଣା ଭାଷା ଓ ପୁରୁଣା ଶୈଳୀ ଏଥିପାଇଁ ସମର୍ଥ ନୁହେଁ । ନୂଆ ନୂଆ ଶବ୍ଦ ଖୋଜିବାକୁ ହେବ, ନୂଆ ନୂଆ ଶୈଳୀର ଉଦ୍‌ବର୍ତ୍ତନ କରିବାକୁ ହେବ । ପୁରୁଣାରୁ ଉପାଦାନ ନେଇ ତା' ଭିତରୁ ଶାଶ୍ୱତ ମୂଲ୍ୟବୋଧକୁ ଖୋଜିବାକୁ ହେବ । ନୂଆ ଭିତରେ ସେହି ମୂଲ୍ୟବୋଧକୁ ଖଞ୍ଜିଦେବାକୁ ହେବ । ଲେଖକ କହନ୍ତି—'ପୁରୁଣା ଗଛ ପରି ପୁରୁଣା ସାହିତ୍ୟ ମଧ୍ୟ ପ୍ରତି ବସନ୍ତରେ ନୂଆ ଶାଖା ମେଲିଯିବା କଥା । ଯେତେଦିନ ପର୍ଯ୍ୟନ୍ତ ସେ ବଂଚିଛି ଏ ଧାରା ଅବଶ୍ୟ ଗ୍ଳଲିଥିବ । ଯଦି କୌଣସି କାରଣରୁ ନ ଗ୍ଳଲେ, ତେବେ ଜଣାଯିବ ଯେ, ଶିଖ ଆଡୁ ଗଛ ମରିଆସୁଛି । ଅନେକ ଗଛ ପରି ଅନେକ ସାହିତ୍ୟ ମଧ୍ୟ ଏଭଳି ମରିଗଲେଣି । ସେମାନେ ଅଧିକରୁ ଅଧିକ ଆଉ ବଢ଼ିପାରିଲେ ନାହିଁ, ନୂଆ ଆକାଶରେ ଶାଖା ମେଲିବା ସହଜ ହେଲା ନାହିଁ ।' (ରଚନା ସଂପର୍କରେ) ପୁରୁଣା ଓ ନୂଆ ମଧ୍ୟରେ ଗୁଡ଼ାଏ ଆନ୍ଧାରର ବ୍ୟବଧାନ । ସାହିତ୍ୟ-ବୃକ୍ଷ ତଳରୁ ପାଣିଧାର ଶୁଖିଗଲେ ତାହା ଆଉ ରସ ଟାଣି ପାରେ ନାହିଁ । ତେଣୁ ତାର ଶାଖା ଆଉ ମେଲେ ନାହିଁ । କେବଳ ମଂଜି ଫୋପାଡ଼ିଦିଏ । ଭବିଷ୍ୟତ ଗର୍ଭରେ ସେହି ବୀଜ କୋଷ ପୁଣି ଗଜା ମାରି ବାହାରି ଆସେ । ଯେତେବେଳେ ସାହିତ୍ୟ ସମୃଦ୍ଧ ହୁଏ ସେତେବେଳେ ନୂଆ ନୂଆ ଦିଗରେ ତାର ଡଙ୍କ ମାଡ଼ିଯାଏ । ନୂଆ ନୂଆ ବର୍ଗ ସୃଷ୍ଟି ହୋଇଯାଏ । ପ୍ରାଚୀନ ସାହିତ୍ୟରେ ଯେମିତି କାବ୍ୟ, ଚଉତିଶା, କଳସା, ଚଂପୂ, ଚଉପଦୀ ଆଦି ସୃଷ୍ଟି ହୋଇଥିଲା ଆଧୁନିକ ସାହିତ୍ୟରେ ସେହିପରି ସୃଷ୍ଟି ହୋଇଛି ପ୍ରବନ୍ଧ, ଉପନ୍ୟାସ, କ୍ଷୁଦ୍ରଗଳ୍ପ, ନାଟକ, କାବ୍ୟ, କବିତା ଇତ୍ୟାଦି । 'ପଡ଼ିଶା ଘରୁ ଶିଖି ନୂଆ ତିଅଣ ରାନ୍ଧିଲା ପରି ଅନ୍ୟାନ୍ୟ ବିଦେଶୀ ସାହିତ୍ୟରୁ ଢ଼ଙ୍ଗ, ଭଙ୍ଗୀ ଆଣି ପ୍ରାଦଶିକ ଭାଷାରେ ପରୀକ୍ଷା ଗ୍ଳଲେ ।' ପରୀକ୍ଷା ନାମରେ ସ୍ୱେଚ୍ଛାଗ୍ଳରିତା ପ୍ରକାଶ ପାଇଲେ ତାହା ସାହିତ୍ୟ ହୁଏ ନାହିଁ; ହୁଏ ଅପସାହିତ୍ୟ । ପରୀକ୍ଷା କିନ୍ତୁ ଅନିବାର୍ଯ୍ୟ । ତାହା କିନ୍ତୁ ଆପଣାର ମାଟି-ପ୍ରତ୍ୟୟଟିକୁ ଛାଡ଼ି ଦେଇ ଆକାଶଗ୍ଳରୀ ହେବା ବିଧେୟ ନୁହେଁ । ଜଗନ୍ନାଥଙ୍କର ନବକଳେବର ବେଳେ ପୁରୁଣା ଦାରୁ ବିଗ୍ରହରୁ ବ୍ରହ୍ମ ନେଇ ନୂଆ ଦାରୁ ବିଗ୍ରହରେ ସ୍ଥାପନ କରାଯାଏ । ତେବେ ଯାଇଁ ନୂଆ ବିଗ୍ରହ ହୁଏ ଜଗନ୍ନାଥ । ବ୍ରହ୍ମ ସ୍ଥାପିତ ନ ହେଲେ ତାହା ଜଗନ୍ନାଥ ହୁଏ ନାହିଁ; ହୁଏ ଏକ ପ୍ରତିମା ମାତ୍ର । ଠିକ୍ ସେହିପରି ସାହିତ୍ୟରେ ପରୀକ୍ଷା ଅନିବାର୍ଯ୍ୟ ମାତ୍ର ସେଥିରେ ଯଦି ଉପଯୁକ୍ତ ଭାବ-ବ୍ରହ୍ମଟି ସ୍ଥାପିତ ନ ହୁଏ ତେବେ ତାହା ସାହିତ୍ୟ ହୁଏ ନାହିଁ ।

ଚନ୍ଦ୍ରଶେଖର ସାହିତ୍ୟରେ ପରୀକ୍ଷା କରାଯିବାର ପକ୍ଷପାତୀ ମାତ୍ର ତାହାକୁ ସ୍ୱେଚ୍ଛାଗ୍ରରୀ କରିଦେବାର ପକ୍ଷପାତୀ ନୁହନ୍ତି । ତାଙ୍କ ନିକଟରେ ସାହିତ୍ୟହିଁ ଜୀବନ । ତେଣୁ ସାହିତ୍ୟକୁ ସ୍ୱେଚ୍ଛାଗ୍ରରୀ କରିଦେବା ଅର୍ଥ ଜୀବନକୁ ସ୍ୱେଚ୍ଛାଗ୍ରରୀ କରିଦେବା । ସାହିତ୍ୟର ଗଢ଼ଣ-କଳାରେ କେବଳ ପରୀକ୍ଷା କରିଦେଇ ତାର ଆତ୍ମାକୁ ନିଃସ୍ୱ କରିଦେଲେ ସେହି ସାହିତ୍ୟର ମଧ୍ୟ କୌଣସି ପ୍ରଭାବ ରହେ ନାହିଁ । ଲେଖକ ସାହିତ୍ୟର ଶଗଡ଼ ଦଣ୍ଡା ଧରି କିଛିବାଟ ସାହିତ୍ୟର ବ୍ୟବସାୟକୁ ଆଗେଇ ନେବ ହୁଏତ, ମାତ୍ର ସେ ତାର ଗ୍ରରିପଟରେ ଅନନ୍ତକାଳରୁ ବିରାଜିତଥିବା ସବୁଜ ଅରଣ୍ୟରେ ନୂଆ ବାଟ ଫିଟାଇ ପାରେ ନାହିଁ । 'ଯେ ନୂଆ ବାଟ ଦେଖାନ୍ତି, ସେମାନେ ପୁରୁଣାକୁ ଅପର୍ଯ୍ୟାପ୍ତ ମନେ କରନ୍ତି । ତା' ହୁଡ଼ା ଡେ଼ଇଁ ଉଛୁଳି ଯିବାକୁ ସେମାନେ ଏକପ୍ରକାର ବାଧ୍ୟ । ତାଙ୍କ ଧାତୁରେ ଧାଡ଼ିବନ୍ଧା ରେଳରାସ୍ତା ପରି ନିର୍ମଳ ହଲେ ପଇ ସୁହାଏ ନାହିଁ; ସେମାନେ ନିର୍ଭୀକ । ସେମାନେ ଯୁଗ ରୁଚିର ପ୍ରବାହକୁ ନୂଆ ମୋଡ଼ ଦେଖେଇ ଦିଅନ୍ତି; ସେଥିରେ ଭାସିଯିବା ସେମାନଙ୍କର ଧର୍ମ ନୁହେଁ ।' ଗୋଟାଏ ଶୃଙ୍ଖଳା ଭିତରେ ସାହିତ୍ୟକୁ ପ୍ରକାଶ କରାଯାଏ । ଯୁଗ-ଲେଖକ ସେହି ଶୃଙ୍ଖଳାକୁ ମାନି ନିଏ । ମାତ୍ର ଯିଏ ଯୁଗ ଭିତରେ ଥାଇ ଯୁଗାତୀତକୁ ଦେଖେ ସିଏ ଶୃଙ୍ଖଳାକୁ ଭାଙ୍ଗି ଆଗକୁ ମାଡ଼ିଯାଏ । ଶୃଙ୍ଖଳା ଭାଙ୍ଗିଲାବେଳେ ଥୋକାଏ ପାଟି କରନ୍ତି, କ'ଣ ଗୋଟାଏ ଅଘଟଣ ଘଟିଗଲା ବୋଲି ବୋବାଳି ଛାଡ଼ନ୍ତି । କିନ୍ତୁ କିଛି ଦିନ ପରେ ଦେଖାଯାଏ ଯେ ସେହି ଲେଖକ ଯେଉଁ ନୂତନ ଧାରାଟିଏ ସୃଷ୍ଟି କରିଥିଲା ତାହା ପ୍ରତି କ୍ରମେ ଶ୍ରଦ୍ଧା ପ୍ରକାଶ ପାଉଛି । ସେହି ଅପ୍ରତିହତ ସ୍ରୋତକୁ କେହି ଅଟକାଇ ପାରେ ନାହିଁ । ଗଙ୍ଗାର ତୀବ୍ର ଆଘାତରେ ଐରାବତ ଗଡ଼ିଗଲା ପରି ସେ ଗଡ଼ିଯାଏ । ଲେଖକଙ୍କ ଭାଷାରେ ସିଏ ହେଉଛି ଗୋଟାଏ ମହାଦ୍ରୁମ । କାନ୍ଥ ଭୁଷୁଡ଼େଇ ତାହା ବାହାରି ଆସେ । ତାକୁ ରୋଧିବାର ଶକ୍ତି କାହାରି ନାହିଁ । ତାକୁ ତଳୁ ଭିଡ଼ି ଧରିଲେ ସେ ଆରିଷ୍ଟଟଲ ସାହେବଙ୍କ ସମେତ ଟୋଳି ନେଇ ଆକାଶିଆ ଛାତ ଉପରକୁ ଗ୍ରଲିଯାଏ ।

ସବୁବେଳେ ସବୁ କଥା ସମସ୍ତଙ୍କୁ ଏକାପରି ଦିଶେ ନାହିଁ । ଦେଶ କାଳ ରୁଚିକୁ ନେଇ ବଦଳିଯାଏ ରଙ୍ଗ ଓ ରୂପ । ଯିଏ କେବଳ ତୈଜସ ଦୃଷ୍ଟିରେ ଦେଖେ ସିଏ ବାହାରକୁ ଦେଖେ, ସ୍ଥୂଳ ରୂପକୁ ଦେଖେ । ଯିଏ ବୈଶ୍ୱାନର ଦୃଷ୍ଟିରେ ଦେଖେ ସିଏ ଅନନ୍ତ ବ୍ରହ୍ମାଣ୍ଡକୁ ଦେଖେ । ଭିତର ଓ ବାହାର ତା' ପାଖରେ ଏକାକାର ହୋଇଯାଏ । ସଚ୍ଚା ଲେଖକର ତେଣୁ ଥାଏ ତୈଜସ ଓ ବୈଶ୍ୱାନର ଦୃଷ୍ଟି । ଉଭୟ ଦୃଷ୍ଟିକୁ ମିଳାଇ ସେ ସାହିତ୍ୟ ଲେଖେ । ଚନ୍ଦ୍ରଶେଖର ଏହି ଉଭୟ ଦୃଷ୍ଟିର ଲେଖକ । ତେଣୁ ତାଙ୍କ ରଚନାରେ ଯେମିତି ଅଛି ପରିଦୃଶ୍ୟମାନ ଜାଗତିକ ବସ୍ତୁର ଚିତ୍ର, ସେହିପରି ଅଛି ଏକ ଅଶରୀରୀ ଦିବ୍ୟ ଜଗତର ଭାବ । ସମକାଳୀନ ସାମାଜିକ, ରାଜନୀତିକ ଓ ପ୍ରଶାସନିକ କ୍ଷେତ୍ରରେ

ଯେଉଁ ଅହଂଦୃପ୍ତ ମଣିଷମାନେ ବିଚରଣ କରୁଛନ୍ତି, ସେବା ଓ ତ୍ୟାଗ ନାମରେ ଉଇହୁଙ୍କା ଉପରେ ଗାଈଆଳ ଚୋକା ବସି ରାଜା ବୋଲାଇଲା ପରି ନାନା ସ୍ୱେଚ୍ଛାଗ୍ରର ଓ ପ୍ରମତ୍ତତାରେ ଲିପ୍ତ ରହୁଛନ୍ତି, ସେମାନଙ୍କୁ ବ୍ୟଙ୍ଗ କରିଛନ୍ତି, ସେମାନଙ୍କ ଛଦ୍ମ ମୁଖାକୁ ଖୋଲି ଦେଇ ଭିତରର ପ୍ରକୃତ ରୂପକୁ ଆବିଷ୍କାର କରିଛନ୍ତି । ଏହାଦ୍ୱାରା ତାଙ୍କର ସମାଜ-କଲ୍ୟାଣ ଦିଗଟି ବେଶ ମାର୍ମିକ ଭାବରେ ଫୁଟି ଉଠିଛି । ତାଙ୍କ ମଥୁରା କଟକଟି ଯେମିତି ହୋଇଯାଇଛି ଏବର କ୍ଷମତାଦୃପ୍ତ ନେତାମନ୍ତ୍ରୀ ଓ ଅଧିକାରୀଙ୍କ କଟକ । ତାଙ୍କ ବୈଶ୍ୱାନର ଦୃଷ୍ଟିଟି ପୁଣି ଖୋଜିଛି ଜଗତ ଓ ଜୀବନର ପରମ ସତ୍ୟକୁ, ଯାହା ମଣିଷକୁ ଦିଏ ଶାଶ୍ୱତ ଆନନ୍ଦ । ଏହି କାରଣରୁ ତାଙ୍କ ଦୃଷ୍ଟି ସଂଚରିଯାଇଛି ଉପନିଷଦର ପୃଷ୍ଠାକୁ । ସେ ଲକ୍ଷ୍ୟ କରିଛନ୍ତି ଯେ ଆଧୁନିକ ସାହିତ୍ୟରେ ବେଶୀ ବିଦେଶୀ ସାହିତ୍ୟର ପ୍ରଭାବ ଅନୁଭୂତ ହେଉଛି । ତାଙ୍କ ମତରେ—'ଦେଶୀ ଅପେକ୍ଷା ବିଦେଶୀ ବନ୍ଧୁଙ୍କ ଓଟରାଟା ବେଶି ଅନୁଭୂତ ହୁଏ; କିନ୍ତୁ ଗହୀରରୁ ଭୂଇଁ ଭସେଇ ଆଉ ଗୋଟାଏ ମହା ପ୍ରବାହ ତଡ଼ି ନେଇଯାଏ । ସେ ହେଉଛି ଏ ଦେଶର ଚିରନ୍ତନ ଉପନିଷଦୀୟ ଧାରା । ତାକୁ ତ ଏଡ଼ିବା ସମ୍ଭବ ନୁହେଁ; ବାଞ୍ଛନୀୟ ମଧ୍ୟ ନୁହେଁ । ଏଣେ ପୁଣି 'ପ୍ରାଚୀନ ଯୋଗ୍ୟ' ହେବା ମଧ୍ୟ ସହଜସାଧ୍ୟ ନୁହେଁ ।'

ଚନ୍ଦ୍ରଶେଖର ଇଂରାଜୀ ସାହିତ୍ୟର ମୁଗ୍ଧ ଛାତ୍ର । ମାତ୍ର ସେଥିରେ ସେ ଆଦୌ ଭାସି ଯାଇନାହାନ୍ତି । ତାଙ୍କର ଗଳ୍ପ, ଉପନ୍ୟାସ, କବିତା ଓ ରଚନା ଯେଉଁଆଡ଼କୁ ଦୃଷ୍ଟି ପକାଇଲେ ସର୍ବତ୍ର ଉପଲବ୍ଧ ହୁଏ ଭାରତୀୟ ସଂସ୍କୃତିର ଆତ୍ମାର ପରଶ । ବାହାରୁ ଯାହା ଆଣିଛନ୍ତି ତାକୁ ଆପଣା ଭିତରେ ମିଳେଇ ଦେଇ ତାହାକୁ ଏହି ମାଟିର ବାସ୍ନାରେ ବାସ୍ନାୟିତ କରିଦେଇଛନ୍ତି । ଜଣେ ସତ୍ୟଦ୍ରଷ୍ଟା ହେଲେ ହିଁ ସବୁ ବିଷୟରେ ରଚନା ଲେଖିପାରେ । କବିତା ମଧ୍ୟ ସମ୍ଭବ ହୁଏ ନାହିଁ ସତ୍ୟଦ୍ରଷ୍ଟା ନ ହେଲେ । ଗୋଟିଏ ଗୋଟିଏ ଦିବ୍ୟ ମୁହୂର୍ତ୍ତରେ ସୃଜନ କେନ୍ଦ୍ରରେ ସୃଷ୍ଟି ହୁଏ କଂପନ । ଫଳରେ ଏକ ସାଧାରଣ ବା ନଗଣ୍ୟ କଥା ହୋଇଯାଏ ଆସାଧାରଣ ବିଭୂତି । ତାହା ଯେତେବେଳେ ସ୍ରଷ୍ଟାକୁ ଆବିଷ୍ଟ କରେ ସେତେବେଳେ ସେ ଲେଖେ ଗଳ୍ପ, କବିତା ବା ରଚନା ଇତ୍ୟାଦି । ତେଣୁ ଲେଖକ କହନ୍ତି—'ସବୁ ବେଳେ ତ ମନରେ ଫୁଲ ଫୁଟେ ନାହିଁ, ଫୁଟିଲେ ମଧ୍ୟ ସବୁ ଫୁଲରେ କସି ଧରେ ନାହିଁ । ସବୁ କସିଗୁଡ଼ିକ ବି ପାଚିପାରନ୍ତି ନାହିଁ କିମ୍ବା ସବୁ ଫଳ ବୀଜବନ୍ତ ହୁଅନ୍ତି ନାହିଁ ।' ଚନ୍ଦ୍ରଶେଖରଙ୍କ ମନ ଭିତରେ ଯେଉଁ ମୁହୂର୍ତ୍ତରେ ଫୁଲଫୁଟିଛି ସେହି ମୁହୂର୍ତ୍ତରେ ସେ ଲେଖିଛନ୍ତି ରଚନା ବା ପ୍ରବନ୍ଧ, ଗଳ୍ପ, କବିତା, ଉପନ୍ୟାସ । ଏକଥା କହିଲେ ବୋଧହୁଏ ଅତିରଂଜିତ ହେବ ନାହିଁ ଯେ ଚନ୍ଦ୍ରଶେଖରଙ୍କ ସବୁ ଫୁଲ ଫଳ ଧରିଛି, ପାଚିଛି ଓ ବୀଜବନ୍ତ ହୋଇଛି । କେଣସିଟି ଅଧାବାଟରୁ ମଉଳିଯାଇ ନାହିଁ ।

ଚନ୍ଦ୍ରଶେଖରଙ୍କ ରଚନା କବିତା ସହିତ ମୈତ୍ରୀ ସୂତ୍ରରେ ବାନ୍ଧି ହୋଇଯାଇଛି । ତାହା କିନ୍ତୁ କବିତା ନୁହେଁ; ଅଥଚ ତା' ଭିତରେ ଅଛି କବିତାର ଅନ୍ତରୀଣ ପ୍ରବାହ । ସେ ନିଜକୁ ସତ୍ୟଧର୍ମା ସକ୍ରେଟିସ୍ ପରି ମନେ କରି କ୍ଷମତାଦୃପ୍ତ ରାଜପୁରୁଷ, କ୍ଷମତା ନିୟନ୍ତ୍ରିତ ବିଗ୍ରହକ ଓ ପ୍ରଶାସକ, କ୍ଷମତା-ସିଂହାସନକୁ ସ୍ତୁତି ଓ ତୋଷାମୋଦ କରି ଆର୍ଥିକ ସଂଗତି ଆକାଂକ୍ଷା କରୁଥିବା ତଥାକଥିତ ସାମନ୍ତବର୍ଗଙ୍କୁ କଠୋର ସମାଲୋଚନା କରିଛନ୍ତି । ସୂଚାଇ ଦେଇଛନ୍ତି ଯେ ସତ୍ୟ କେବେ ମରେ ନାହିଁ । ତାହା ପଥର ଚାପାକୁ ଫୁଟାଇ ବାହାରି ଆସେ । କଥା ଅସରନ୍ତି । ତାର କେବେ ଶେଷ ନାହିଁ । 'ଆଲୋକ ଓ ଅନ୍ଧାରର ଆବର୍ତ୍ତନ ପରି ଆମ ଭିତରେ ଗୁଡ଼ିଏ ବିପରୀତ ଧର୍ମର ଚକ୍ରବତ୍ ଆବର୍ତ୍ତନ ଚାଲିଥାଏ—ସୁଖ, ଦୁଃଖ, ଆଶା ନିରାଶା, ଜନ୍ମ ମୃତ୍ୟୁ, ଏପରିକି 'ନିଃଶ୍ୱାସ ପ୍ରଶ୍ୱାସ ।' ତେଣୁ ଏହି ଚକ୍ରଗତିର ଶେଷ ନାହିଁ । କଥାର ମଧ୍ୟ ଶେଷ ନାହିଁ । ସାହିତ୍ୟର ମଧ୍ୟ ଶେଷ ନାହିଁ। ବଦଳୁଛି ତାର ରୂପ, ତାର ଭାଷା, ତାର ଚାହାଣି । ଭିତରେ ରହିଯାଉଛି ଚିରନ୍ତନ ଭାବଟିଏ । ସେହି ଚିରନ୍ତନ ଭାବ ସତ୍ତାକୁ ଘେରି କିଛି ତାତ୍କାଳିକ ଭାବ ଆସିଯାଉଛି । ମାତ୍ର ଯାହା ଶାଶ୍ୱତ, ସତ୍ୟ, ଶିବ ଓ ସୁନ୍ଦର, ତାହା ହିଁ ହୋଇଯାଉଛି ମୁଖ୍ୟ । ଚନ୍ଦ୍ରଶେଖର ଏହି ଶାଶ୍ୱତକୁ ସ୍ୱାଗତ କରିଛନ୍ତି । ତାହାହିଁ ଅତି-ମୁହୂର୍ତ୍ତର ସଂପତ୍ତି । ତାହାହିଁ ଆତ୍ମାର ମୁହୂର୍ତ୍ତ । ସେଥିରେ ଥାଏ ଅସୀମ କାରୁଣ୍ୟ ସହିତ ଅହେତୁକି ଆନନ୍ଦ । କାଳକୁ ଅତିକ୍ରମ କରିଯାଏ ଏହି ଅତି ମୁହୂର୍ତ୍ତ । ସାହିତ୍ୟ ଯୁଗେ ଯୁଗେ ଏହି ଅତି-ମୁହୂର୍ତ୍ତକୁ ଖୋଜିଛି । ଏହି ଖୋଜିବା ବେଳେ ସତ୍ୟ ଓ ମିଛକୁ ମିଳେଇଛି । ସାହିତ୍ୟର ସତ୍ୟ ବିଜ୍ଞାନର ସତ୍ୟ ନୁହେ । ତାହା କଳ୍ପନା ଓ ବାସ୍ତବର ମିଶ୍ରରାଗ । କଳ୍ପନା ନ ଥିଲେ, ମିଛ ନ ଥିଲେ ବାସ୍ତବ ବା ସତ୍ୟ ରମ୍ୟ ରୂପ ଧାରଣ କରିପାରନ୍ତା ନାହିଁ । 'କଳ୍ପନାର ଇନ୍ଦ୍ରଜାଲରେ ସର୍ଜନା କରିଚାଲିଥିବା ସ୍ରଷ୍ଟା ସ୍ୱପ୍ନ-ବିଭୋର ନୁହେଁ, ସେ ଆଉ ଏକ ଘନିଷ୍ଠ ପର୍ଯ୍ୟାୟରେ ସତ୍ୟ-ବିଭୋର ।' (ଅଶ୍ରୁତ ସ୍ୱର) ସାହିତ୍ୟର ଧର୍ମ କଳ୍ପନାର ଅଭିଷେକ କରି ବାସ୍ତବକୁ ଭାସ୍ୱର କରିବା । ଶ୍ରୀ ରଥ ତାଙ୍କର ନାନା ପ୍ରବନ୍ଧ ବା ରଚନାରେ ମଣିଷର ଭିତିରି ସ୍ୱରୂପକୁ ଉଖାରି ଦେଖାଇଦେବା ସହିତ ତାର କ୍ଷମତାମଦମତ୍ତ ଭାବକୁ ବ୍ୟଙ୍ଗ କରିଅଛନ୍ତି ମାତ୍ର ତାଙ୍କର ପ୍ରଧାନ ବକ୍ତବ୍ୟ ହୋଇଛି ଜୀବନ ଓ ଜଗତ ସଂପର୍କରେ ଦାର୍ଶନିକ ଅନୁଚିନ୍ତା । ଗୋଟାଏ ଅଦୃଶ୍ୟ ସର୍ବମୟ ସତ୍ତା ପ୍ରତି ତାଙ୍କର ଅନ୍ତରରୁ ଝରି ଆସିଛି ଗଭୀର ଶ୍ରଦ୍ଧା ଓ ପ୍ରେମ । ସାହିତ୍ୟ ସଂପର୍କିତ ଆପଣାର ଚିନ୍ତା ଓ ଭାବନା କେତେକ ପ୍ରବନ୍ଧରେ ବେଶ୍ ଚମତ୍କାର ଭାବରେ ରୂପ ନେଇଅଛି ।

ଶ୍ରୀ ରଥଙ୍କ ଲେଖକୀୟ ବ୍ୟକ୍ତି-ସତ୍ତାଟି ବଡ଼ ଶ୍ରଦ୍ଧାଶୀଳ । ଏହି ଶ୍ରଦ୍ଧାରୁହିଁ ଜଣେ ନିଜକୁ ଅନ୍ୟଜଣେ ପରି ମନେ କରିଥାଏ । ତେଣୁ ଶ୍ରରଥ ଆପଣାକୁ ବାମଚରଣ ମିତ୍ର

ମନେ କରି ଲେଖିଛନ୍ତି ରମ୍ୟ ରଚନାଟିଏ । ବାମାଚରଣ ମିତ୍ର ଥିଲେ ଏକନିଷ୍ଠ ସାରସ୍ୱତ ସେବକ । ସଂସାର ପ୍ରତି ସେ ବଡ଼ ଉଦାସୀନ । ସାହିତ୍ୟହିଁ ଥିଲା ତାଙ୍କ ଜୀବନର ସବୁ କିଛି । ଗଳ୍ପ, ଉପନ୍ୟାସ ଓ ରମ୍ୟରଚନାର ସେ ଜଣେ ସଫଳ ସ୍ରଷ୍ଟା । ତାଙ୍କ ପ୍ରତି ଶ୍ରୀରଥଙ୍କର ଗଭୀର ଅନୁରାଗ । ତେଣୁ ସେ ବାମାଚରଣଙ୍କ ବ୍ୟକ୍ତିତ୍ୱ ସହିତ ଆପଣାକୁ ମିଶାଇ ଦେଇ କହନ୍ତି ଯେ ତାଙ୍କର ପାରିବାରିକ ସମସ୍ୟାକୁ ତୁଲାଇଦେଲା ଭଳି ସାମର୍ଥ୍ୟ ନଥିଲା । 'କାରଣ ମୁଁ ପରା ସାହିତ୍ୟ ଲେଖୁଥିଲି । ସେଇଟା ତ କିଛି ସୌଖୀନ ବ୍ୟପାର ନୁହେଁ ଯେ ଷୋଳଅଣା ସୁବିଧା ହେଲେ ଯାଇ ଟିକିଏ ଆମୋଦ କରି ନେବା, ନ ହେଲେ ନାହିଁ । ସେ ନିଶା ନ ଘାରିଲେ ଜାଣିହେବ ନାହିଁ ସେଇଟା କେତେ ସାଂଘାତିକ । କେମିତି ଭୂତ ଚଢ଼ିଲା ପରି ମଥା ଉପରେ ମଢ଼େଇ ହୋଇଥାଏ । ରାତି ଗୋଟାକଯାକ ଚୌକିରୁ ଚୌକିକୁ ସ୍ଥାନ ବଦଳକରି ନାନାପ୍ରକାର, ସରଳ ଏବଂ ଜଟିଳ ଯୋଗାସନରେ ସାହିତ୍ୟ ସାଧନା କରିବାକୁ ପଡ଼େ । ନିଶାର୍ଦ୍ଧ ପରେ ହୁଏତ ଗ୍ୱ' କପେ ସକାଶେ ଦାଂପତ୍ୟକୁ ବାଜି ଲଗେଇ ଦିଆହୁଏ ଏବଂ ସନ୍ୟାସ ନେବା ବାହାନାରେ ଦୁଇନମ୍ବର ଇଉନିଟ୍‌ରେ ଯାଇ ନୀଳମଣି ପାଖରେ ବୈରାଗ୍ୟତକ ଝାଡ଼ିଦେବାକୁ ହୁଏ ଏବଂ ଅନୁରାଗରେ ବୋଝେଇ ହୋଇ ଫେରି ଆସିବାକୁ ହୁଏ ।' (ନିଜକୁ ବାମା ମିତ୍ର ମନେକରି) ଏଥିରୁ ଶ୍ରୀରଥଙ୍କ ଶ୍ରଦ୍ଧାମୟ ସ୍ରଷ୍ଟା—ବ୍ୟକ୍ତିତ୍ୱକୁ ଅନୁଭବି ହୁଏ । ବାମାଚରଣ ମିତ୍ର ଓ ମହାପାତ୍ର ନୀଳମଣି ସାହୁ—ଏହି ଉଭୟଙ୍କ ସହିତ ତାଙ୍କର ଅନ୍ତରାତ୍ମା ଯେପରି ଯୋଡ଼ି ହୋଇଯାଇଛି ।

ବାମାଚରଣଙ୍କ ସାରସ୍ୱତ ବ୍ୟକ୍ତିତ୍ୱକୁ ଆକଳନ କରୁ କରୁ ଲେଖକ ପହଞ୍ଚି ଯାଇଛନ୍ତି ବ୍ୟାସଦେବଙ୍କ ପାଖରେ । ସତେଯେପରି ବ୍ୟାସଦେବ ତାଙ୍କୁ କିଣା ଗ୍ୱକର କରି ରଖିଥିଲେ । ତାଙ୍କ ପାଖରେ ବ୍ୟାସଦେବ ଗୋଟାଏ ହିମାଳୟ ଭଳି ମହାପୁରୁଷ । ସମୁଦ୍ରଭଳି ତାଙ୍କର ବ୍ୟକ୍ତିତ୍ୱ । 'ସେ ସାରା ସଂସାରଟାକୁ ହାତ ପାପୁଲି ଉପରେ ଥୋଇ ନଚେଇ ପାରୁଥିଲେ । ମଣିଷଟାକୁ ଭିତରେ, ବାହାରେ, ଉପରେ, ତଳେ କୋଉଠି ସେ ନ ଦେଖିଛନ୍ତି ବୋଲି ନୁହେଁ ।' ତେଣୁ ସେ ବାରମ୍ବାର ବ୍ୟାସଦେବଙ୍କୁ ପ୍ରଣାମ ଜଣାଇଛନ୍ତି । ବ୍ୟାସଦେବ ଅସମ୍ଭବ ଭାବରେ ତାଙ୍କୁ ମନେହୋଇଛନ୍ତି ବିରାଟ । ସେ ତାଙ୍କୁ ନିଶା ଭଳି ଘାରିଛନ୍ତି । ଅନ୍ଲେ ବହୁତେ ସବୁ ସାହିତ୍ୟକ ମଧ୍ୟ ତାଙ୍କର ନିଶା ପାଲଟିଛନ୍ତି । ତଥାପି ସେ ସଚେତନ ହୋଇଛନ୍ତି ଓଡ଼ିଶାର ସାହିତ୍ୟିକମାନଙ୍କ ସଂପର୍କରେ । ପାଞ୍ଚଜଣଙ୍କ ନାଁ କହିଦେଲେ ଷଷ୍ଠଜଣକ ଗଛ ଉହାଡ଼ରେ ଥାଇ ବୋଲୁଅ ଫିଙ୍ଗି ଦିଏ । ବାମାଚରଣ ଅବହେଳିତ ହୋଇଛନ୍ତି ଘରେ ଓ ବାହାରେ । ଅଥଚ ତାଙ୍କୁ ସମସ୍ତେ ସୋଦର କୁଟୁମ୍ବୀ ପରି ମନେହୁଅନ୍ତି । ସାରଳା ଦାସ, ଗୋପାଳକୃଷ୍ଣ, କବିସୂର୍ଯ୍ୟ ଓ ଦୀନକୃଷ୍ଣ ତାଙ୍କୁ ବିଭୋର କରୁଥିଲେ । ଓଡ଼ିଆ ସାହିତ୍ୟରେ ଯେଉଁ ବୈଷ୍ଣବ କବିମାନେ କାବ୍ୟକବିତା ଲେଖିଯାଇଛନ୍ତି ସେମାନେ ତାଙ୍କୁ

ଦୁର୍ବଳ କରିଦେଇଛନ୍ତି । ଲେଖକ ବାମାଚରଣଙ୍କ ସହିତ ଏକାତ୍ମ ହୋଇ କହନ୍ତି—'ମୁଁ ସେ ପ୍ରସଙ୍ଗ ଉଠିଲେହିଁ କାନ୍ଦେ । ଗୋପୀ ପାଇଁ, ନନ୍ଦ, ଯଶୋଦା, ଦେବକୀ, ବସୁଦେବ ସମସ୍ତଙ୍କ ପାଇଁ ବହେ ଲେଖାଏ କାନ୍ଦି ପକାଏ । ତା'ପରେ ଶଠଶିରୋମଣି ଧୋକାବାଜ ମୋର ପ୍ରିୟତମ ପାଇଁ ଜୀବନ ସାରା କାନ୍ଦି କାନ୍ଦି ବିତାଇଦିଏ । 'ବାମାଚରଣଙ୍କ ବୈଷ୍ଣବୀୟ ବ୍ୟକ୍ତିତ୍ୱ ଏ ପ୍ରସଙ୍ଗରୁ ଯେ କେବଳ ସୂଚିତ ହୁଏ ତାହା ନୁହେଁ; ତତ୍‌ସହିତ ସ୍ୱୟଂ ଲେଖକଙ୍କ ଭକ୍ତିପୂତ ବ୍ୟକ୍ତିତ୍ୱଟି ମଧ୍ୟ ପ୍ରକାଶିତ ହୋଇଥାଏ । ଓଡ଼ିଶାରେ ଯେଉଁ ଲେଖକଙ୍କର ଉଚ୍ଚ ପଦାଧିକାରୀ ଦାୟାଦ ଥାଆନ୍ତି ବା ବଡ଼ ବଡ଼ ଲୋକ ଥାଆନ୍ତି ତାଙ୍କର ବାର୍ଷିକ ସଭାସମିତି ହୁଏ ତୈଳଚିତ୍ର ଉନ୍ମୋଚିତ ହୁଏ ମାତ୍ର ଯାହାର କେହି ନ ଥାନ୍ତି ତାଙ୍କର କିଛି କରାଯାଏ ନାହିଁ । ବାମାଚରଣଙ୍କ ଅବସ୍ଥା ସେଇଆ ହେଲା । ଶ୍ରୀରଥ ଏଥିପାଇଁ କ୍ଷୋଭ ପ୍ରକାଶ କରିଛନ୍ତି । ନିଜକୁ ବାମାଚରଣଙ୍କ ସହିତ ସାମିଲ କରିଦେଇ ତାଙ୍କ ଭବିଷ୍ୟତ ଭାଗ୍ୟକୁ ମଧ୍ୟ ବ୍ୟଞ୍ଜିତ କରିଦେଇଛନ୍ତି ।

ଶ୍ରୀରଥଙ୍କ ସାହିତ୍ୟ ସଂପର୍କିତ ମତ ଓ ଅଭିମତ ବିଭିନ୍ନ ରଚନାରେ ଯେପରି ପ୍ରକାଶ ପାଇଛି ତାହା ଏକାନ୍ତ ପ୍ରଣିଧାନ ଯୋଗ୍ୟ । ତାହା ପ୍ରମାଣ କରିଦିଏ ଯେ ସେ କେବଳ ଗାଳ୍ପିକ ବା ଔପନ୍ୟାସିକ ବା ପ୍ରାବନ୍ଧିକ ନୁହଁନ୍ତି; ବାସ୍ତବରେ ସେ ଜଣେ ପରିପୂର୍ଣ୍ଣ ସାହିତ୍ୟକ । ସାହିତ୍ୟକ ହୋଇ ଥିବାରୁହିଁ ସେ ଯେଉଁ ଅଭିମତ ଦେଇଛନ୍ତି ବା ପରଂପରା ଓ ଆଧୁନିକତା, ପୁରୁଣା ସାହିତ୍ୟ ଓ ଆଧୁନିକ ସାହିତ୍ୟ ସଂପର୍କରେ ଯାହା କହିଛନ୍ତି ତାହା ହୋଇ ଯାଇଛି ଏକାନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ ଓ ଓଡ଼ିଆ ସାହିତ୍ୟପାଇଁ ଦିଗ୍‌ବାରେଣି ।

— ୨ —

ଶ୍ରୀ ରଥ ଜଣେ ସୃଜନଶୀଳ ଲେଖକ । ସେ ଏକଧାରରେ ଗାଳ୍ପିକ, ଔପନ୍ୟାସିକ, କବି ଓ ପ୍ରାବନ୍ଧିକ । ସମାଲୋଚନା ସେ ଲେଖନ୍ତି ନାହିଁ । ଅଥଚ ରଚନା ଭିତରେ ତାଙ୍କର ସମାଲୋଚକୀୟ ଦୃଷ୍ଟିକୋଣ ପ୍ରକାଶ ପାଇଥାଏ । ବିଶେଷତଃ ସାହିତ୍ୟ ସଂପର୍କିତ ସମାଲୋଚକୀୟ ରଚନା ତାଙ୍କ ସୃଜନଶୀଳ ସତ୍ତାକୁ ଉଚ୍ଚକିତ କରିଦିଏ । ସାରଳାଙ୍କ ଭୀମ , ଛମାଣ ଆଠଗୁଣ୍ଠ, ପରଜା ଓ ନରକିନ୍ନର—ଏହି ଗ୍ୱରୋଟି ତାଙ୍କର ଭିନ୍ନ ସ୍ୱାଦର ରଚନା—ଯାହା ତାଙ୍କର ସମାଲୋଚକୀୟ ଦୃଷ୍ଟିକୋଣକୁ ସୂଗ୍ୱଇଦିଏ । 'ସାରଳାଙ୍କ ଭୀମ' ପ୍ରସଙ୍ଗ ଆଲୋଚନା କଲାବେଳେ ଶ୍ରୀରଥ ପ୍ରଥମରୁ ଉଲ୍ଲେଖ କରିଛନ୍ତି—'ଗଛତଳୁ ଗୁଡାଏ ଅପହଞ୍ଚ ଶିଖକୁ ନିଘା କରୁଥିଲାବେଳେ ଗୋଟାଏ ବୃଷାଳିଆ ତାଳ ହାତ ପାଆନ୍ତି ମିଳିଗଲେ ତାକୁ କୁଣ୍ଢେଇ, ତା' ଦେହରେ ବୁକୁ ଘଷି, ତା' ଉପରେ କୁଦାମାରି ବସିବାରେ ଯେମିତି ତା' ପ୍ରତି ଗୋଟାଏ ସୋଦର ଭାବ ଆସେ, ଅତି ଆପଣାର, ଅତି ନିଘଂଚ ବୋଧହୁଏ ତା'ର ସେଇ ବଳବନ୍ତ ଚିକ୍‌କଣ ଘେର, ସାରଳା ଦାସଙ୍କ ମହାଭାରତରେ ସେଭଳି ଖୁବ୍

ପାଖେଇ ଆସନ୍ତି ଭୀମସେନ ଠାକୁରେ; ସସ୍ରେ ସିଂହ ପରାକ୍ରମୀ କକ୍ଷା ଜଗଜେଷ୍ଠି ବୃକୋଦର, କୋଇନ୍ତାଙ୍କ ଭୀମ, ସାରଳାଙ୍କ ଭୀମା !! ଅପାର କାଳ ଅନ୍ତେ ଏବେ ମଧ୍ୟ ତାଙ୍କ ଶାଳ ଗଣ୍ଡି ପରି ଘଷା-ମଜା ବାହୁଦଣ୍ଡରୁ ସାରଳା ଦାସଙ୍କ ଦେହର ଉଷୁମ ବାରିହୁଏ । ତାଙ୍କ ଠାଣି, ତାଙ୍କ ବିକ୍ରମ, ତାଙ୍କ ସଙ୍କୋଚପଣିଆ ଭିତରେ ସାରଳା ଦାସଙ୍କ ନିଜରୂପ ଝଲସି ଉଠେ । ତାଙ୍କ ଚନ୍ଦ୍ରଉଦିଆ ପରି କାନ୍ତି ଉପରେ ଦାସେ ଯେମିତି ଅଜାଡ଼ି ଦେଇଛନ୍ତି ସ୍ରଷ୍ଟାର ଅକୃପଣ ଆଦର, ଯତନରେ ସଂଚି ରଖିଥିବା ଅନେକ ଅଶ୍ରୁ ।' ଏହି କେତୋଟି ବାକ୍ୟ ଭିତରେ ଶ୍ରୀ ରଥ ସାରଳାଙ୍କ ଭୀମକୁ ଯେପରି ସୃଜନୀଯ ଶୈଳୀରେ ଉପସ୍ଥାପନ କରିଛନ୍ତି ତାହା ଅନ୍ୟାନ୍ୟ କେତେ କେତେ ପାଣ୍ଡିତ୍ୟପୂର୍ଣ୍ଣ ସମାଲୋଚନାଠାରୁ ହୋଇଯାଇଛି ସଂପୂର୍ଣ୍ଣ ବ୍ୟତିକ୍ରମ । ମୂଳ ସଂସ୍କୃତ ମହାଭାରତକୁ ବ୍ୟାସଦେବ ଯେପରି ଆକାଶମାର୍ଗକୁ ଟେକି ନେଇଥିଲେ ସାରଳାଦାସ ତାହାକୁ ଭୂଇଁ ଉପରକୁ ଓଟାରି ଆଣିଛନ୍ତି ଓ ତାହା ଛୁଇଁ ଯାଇଛି ସାଧାରଣ ଜୀବନର ପ୍ରତିକେନ୍ଦ୍ରକୁ । ତା' ଦେହରେ ସେ ବୁଣି ଦେଇଛନ୍ତି ଅନେକ ନୂଆନୂଆ ଉପାଖ୍ୟାନର ଲଇ ।

ଭୀମଙ୍କ ଚରିତ୍ରକୁ ସାରଳାଦାସ ଯେପରି ଅତି ଆପଣାର କରି ଗଢ଼ି ଦେଇଛନ୍ତି ତାହା ମନେହୁଏ ସତେ ଯେମିତି ସେ ଏଇ ମାଟିର ଗୋଟିଏ ଗାଉଁଲି ଯୁବକ—ଯାହା ଦେହରେ ଅଛି ଅମିତ ବଳ, ଉଦରରେ ଅଛି ଅନନ୍ତ କ୍ଷୁଧା । ଏଇ କ୍ଷୁଧାହିଁ ତାର ବିଳାସ । ତଥାପି ସେ କୁନ୍ତୀଙ୍କର ଏକାନ୍ତ ଅଳିଅଳ । ବଡ଼ଭାଇ ଯୁଧିଷ୍ଠିରଙ୍କର ଅତ୍ୟନ୍ତ ସ୍ନେହର । ବିପଦବେଳେ ସେ ହିଁ ଛିଡ଼ା ହୋଇଯାଏ ପାହାଡ଼ପରି । ତା' କାନ୍ଧରେ ଚାରିଭାଇ, ପିଠିରେ ମାଆକୁ ବୋହି ଦୁର୍ଗମ ବଣକୁ ସେ ପାରି ହୋଇଯାଏ । ତାର ଖାଇବାଟାକୁ ଶ୍ରୀରଥ ତାଙ୍କ ସୃଜନୀଯ ଆଲୋଚନାରେ ପ୍ରମୁଖ କରି ଦେଖାଇ ଦେବା ସଂଗେ ସଂଗେ ସେଥିପ୍ରତି ସାରଳା ଦାସ କିପରି ଅକାତର, ଅକୃପଣ ଆଦର ଢ଼ାଳି ଦେଇଛନ୍ତି ତାହାକୁ ପ୍ରାଣବନ୍ତ ଭାବରେ ସୂଚେଇ ଦେଇଛନ୍ତି ସୀମିତ ପରିସର ମଧ୍ୟରେ । ସେହି କ୍ଷୁଧା ହିଁ ବକାସୁରର ପାରଣାକୁ ଗର୍ଭକୁ କ୍ଷେପଣ କରେ ଓ ବକାସୁରର ମୃତ୍ୟୁ ଘଟାଏ । ବିରାଟର ରୋଷେଇଶାଳାରେ ଷାଠିଏ ପଉଟି ଅନ୍ନକୁ ସେହି ଭୀମାହିଁ ଏକାକୀ ଖାଇଦିଏ ବୋଲି ତାକୁ ବାଘ ମୁହଁକୁ ଠେଲି ଦିଆଯାଏ । ଅଥଚ ବାଘ ମରେ । ବଲ୍ଲଭ ପଣ୍ଡାର ଗୌରବ ବଢ଼େ । ଅଜ୍ଞାତ ବାସ ବେଳେ ସେହି ଭୀମସେନ ଉପରେ ଭରସା ବାନ୍ଧନ୍ତି ଯୁଧିଷ୍ଠିର । ଭୀମ ମାନି ନେଇଛନ୍ତି ଧର୍ମରାଜ ଯୁଧିଷ୍ଠିରଙ୍କୁ, ଯେମିତି ସମୁଦ୍ର ତାର ବେଳାକୁ ମାନିନିଏ ।' (ଉତ୍ତର ଅରଣ୍ୟ)

ଶ୍ରୀରଥ ସାରଳାଙ୍କ ଭୀମକୁ ଅନ୍ତର୍ଦୃଷ୍ଟି ଦେଇ ବିଚାର କରିଛନ୍ତି । ଭୀମଙ୍କର ଯୁଦ୍ଧେଷ୍ଠିଙ୍କୁ ଭୟ କରିବା, ଶ୍ରୀକୃଷ୍ଣଙ୍କୁ ଭକ୍ତି କରିବା ଓ ପାଞ୍ଚାଳୀଙ୍କୁ ଭଲପାଇବାକୁ ବେଶ୍ ସୂକ୍ଷ୍ମ ଭାବରେ

ଉପସ୍ଥାପନ କରିଛନ୍ତି । ଦୁଃଶାସନର ବୁକୁ ଚିରି ରକ୍ତପାନ କଲାବେଳେ ଭୀମ ମହାଭୈରବ, ସେହି ରକ୍ତରେ ବେଣୀ ବନ୍ଧନ କଲାବେଳେ ଯାଜ୍ଞସେନୀ ମହାଭୈରବୀ । ଭୀମ ନିଷ୍କପଟ । ସେ କପଟ କଥା କ'ଣ ଜାଣନ୍ତି ନାହିଁ । ହୁଣ୍ଡାପଣରେ ଧର୍ମକୁ ଛାଡ଼ି ଆଉ ସବୁ କଥାକୁ ହୁଡ଼ିଯାଆନ୍ତି । ତଥାପି ବିପତ୍ତିବେଳେ ସେହିଁ ଆଗକୁ ଥାଆନ୍ତି । ତାଙ୍କ ଭିତରେ ଦୁଇଟି କେନ୍ଦ୍ର । 'ଗୋଟିକରେ ଯୁଧିଷ୍ଠିରଠାକୁରେ, ଆରଯିରେ ପାଞ୍ଚାଳୀ' । ବଡ଼ଭାଇଙ୍କ କଥା ତାଙ୍କର ବେଦର ଗାର ।' ସେଠି ଆଉ କାହାର ସ୍ଥାନ ନାହିଁ । ପାଞ୍ଚାଳୀ ତାଙ୍କର ମାନ, ଚେକ ଓ ପ୍ରେମର ଆସନ । ତାହାହିଁ ତାଙ୍କର ପ୍ରବେଷ । ତାହା ତାଙ୍କୁ ତତାଏ, ଉଚ୍ଛୁଳାଏ । ଯେପରି ଭାବରେ ଶ୍ରୀରଥ ସାରଳା ମହାଭାରତର ଭୀମ ଚରିତ୍ରକୁ ନିରିଖେଇ ଦେଖିଛନ୍ତି ବାସ୍ତବିକ ତାହା ଅନନ୍ୟ । ମାତ୍ର ସାତୋଟି ପୃଷ୍ଠା ଭିତରେ ଭୀମ ଯେପରି ଜୀବନ୍ତ ହୋଇଉଠିଛି । ଶ୍ରୀ ରଥ ନୂଆ କରି ଓଡ଼ିଶୀ ମାଟିରେ ଭୀମକୁ ଚିହ୍ନାଇ ଦେଇଛନ୍ତି । ସତେ ଯେପରି ଲେଖକଙ୍କ ଅନ୍ତରର ସକଳ ସ୍ନେହ ମମତାକୁ ନେଇ ଭୀମସେନ ଠାକୁରେ ଛିଡ଼ା ହୋଇଯାଇଛନ୍ତି ।

ମାଟିର ମହାକବି ସାରଳା ଦାସ ଓଡ଼ିଆ ସାହିତ୍ୟର ପ୍ରଥମ କ୍ରାନ୍ତିକାରୀ ସ୍ରଷ୍ଟା । ଶ୍ରୀରଥ ତାଙ୍କର ଭୀମ ଚରିତ୍ରକୁ ଅନ୍ତରର ଶ୍ରଦ୍ଧା ନିବେଦନ କରି ଏକା ଡିଆଁକେ ଆସି ପହଞ୍ଚିଯାଇଛନ୍ତି ଦ୍ୱିତୀୟ କ୍ରାନ୍ତିକାରୀ ସ୍ରଷ୍ଟା ବ୍ୟାସକବି ଫକୀରମୋହନ ସେନାପତିଙ୍କ 'ଛ'ମାଣ ଆଠଗୁଣ୍ଠ' ଉପନ୍ୟାସ ପାଖରେ । ଲେଖକଙ୍କ ଉକ୍ତିରେ—'ଓସ୍ତାଦ୍ ବୁଢ଼ା ଫକୀରମୋହନ ! କଥାଟା ବଙ୍କେଇ କହିବାକୁ ଯାଇ ତାକୁ ଏମିତି ବାଗରେ ଲଟେଇ କହି ଦେଇଥିବ ଯେ ଆଉ ତା' ଲଖି କିଛି କହିହେବ ନାହିଁ । ଯେମିତି ପଦେ ପଦେ କଥାରେ ଆମକୁ ବେକୁବ୍ ବନେଇବା ଭଳି ଏମିତି ରସୁଆଳ କଥାକାର କୋଟିକେ ଗୋଟିଏ ହେବେ ପରା ।' (ଉତ୍ତର ଅରଣ୍ୟ) ଲେଖକ ପୁଣି କହନ୍ତି—'କଥା ସୁଅ କାଟି ଗ୍ଳଲିଥିବ ଗୋଟେ ଆଡ଼େ ତ ପାଣି ପିଟା ଗ୍ଳଲିଥିବ ଆଉ ଆଡ଼େ । ଯଦି ଏ ବ୍ୟଙ୍ଗ ପ୍ରେମୀ ରସିକ ବୁଢ଼ାଟାର ଅପାଙ୍ଗ କିଏ ବୁଝି ନ ପାରିଛି, ସେ ଆଉ ଏ ପୋଥି ନ ପଢ଼ିବା ଉଚିତ; କିନ୍ତୁ ବୁଢ଼ା ନିଜେ ବୁଝେଇହୋଇ ଯାଆନ୍ତି । ଅଧେରୁ ଅଧିକ ବାଟ ଆସି ତାଙ୍କ ପ୍ରିୟ ପାଠକକୁ ପାଛୋଟି ନେଇ ଯାଆନ୍ତି ମଙ୍ଗରାଜଙ୍କ ଅମାର ଘରର କୋଳପ ପଛଆଡ଼କୁ । ନ ବୁଝିଲା ନବୁଝିଲା ପରି ଲାଗେ, କିନ୍ତୁ ନ ବୁଝି ରାସ୍ତା ନାହିଁ । ଛ'ମାଣ ଆଠଗୁଣ୍ଠରେ ମଙ୍ଗରାଜଙ୍କ ଜାଲିଆତି, ଚଂପାର କୂଟକପଟତା, ସାଆନ୍ତାଣୀଙ୍କ ନିରୀହତା, ସାରିଆ ଓ ଭଗିଆର ସରଳତା ଓ ତଜ୍ଜନିତ ଦୁଃଖ, ଗୋବରା ଜେନାର ଶଠତା ଇତ୍ୟାଦି ନାନା

ପ୍ରସଙ୍ଗକୁ ଶ୍ରୀ ରଥ ଯେପରି ସୂକ୍ଷ୍ମ ଦୃଷ୍ଟିରେ ଅନୁଶୀଳନ କରିଛନ୍ତି ତାହା ଅନ୍ୟାନ୍ୟ ଯାବତୀୟ ଆଲୋଚନାରୁ ନିଆରା ବାରି ହୋଇପଡ଼େ । ଏ ଦିଗରେ ବସନ୍ତକୁମାର ଶତପଥୀଙ୍କର 'ରାମଚନ୍ଦ୍ର ମଙ୍ଗରାଜ', 'ଚଂପା' ଶୀର୍ଷକ ଆଲୋଚନା କେବଳ ଶ୍ରୀରଥଙ୍କ ଆଲୋଚନା ଶୈଳୀର ନିକଟବର୍ତ୍ତୀ । ଶ୍ରୀରଥ ମଙ୍ଗରାଜଙ୍କ ପ୍ରତି ସହାନୁଭୂତି ପ୍ରକାଶ କରି ଫକୀରମୋହନଙ୍କ ବର୍ଣ୍ଣନାର ଅନ୍ତଃରୂପକୁ ଆବିଷ୍କାର କରିଛନ୍ତି ଓ ଫକୀରମୋହନ ରାମଚନ୍ଦ୍ର ମଙ୍ଗରାଜଙ୍କ ସଂପର୍କରେ ଯାହା ଗ୍ରହିଁଛନ୍ତି କହିବାକୁ ତାହାକୁ କହିଛନ୍ତି—'ରାମଚନ୍ଦ୍ରଟା ଦୁଷ୍ଟ ଲୋକ, ଖଳ ଲୋକ, ସେ ଦଣ୍ଡ ନପାଉ ଏ କଥା ମୁଁ କେବେ କହିବି ନାହିଁ । ହେଲେ ଭ୍ରାନ୍ତ ଲୋକଟିଏ ବିଗ୍ରରା ! ସେଇଟା ପୂରାପୂରି ଶଇତାନ ନୁହେଁ । ଟିକିଏ ବିଗ୍ରରି ଦେଖ । ତା' ପୁଅ ତିନିଟା ଯାକ ଅଯୋଗ୍ୟ । ଆଗକୁ ଭରସା ନାହିଁ । ଆଠ କଳସ ମାଡ଼ି ବେଦୀ ଉପରେ ଯାହାକୁ ବିଭା ହୋଇଥିଲା ସେ ଅକାଳରେ ଛାଡ଼ି ଗ୍ରଲିଗଲା । ହେଲା ଏବେ ରାମଚନ୍ଦ୍ର ତାକୁ ପଗ୍ରରି ନାହିଁ, ତା' ସହିତ କେବେହେଲେ ପରାମର୍ଶ କରି ନାହିଁ, ତଥାପି ପତ୍ନୀ ବିୟୋଗରେ ଅସହାୟ ଭାବରେ ଲୁହ ଢ଼ାଳିଲା ବେଳେ ମୁଁ ତାକୁ ଦେଖିଛି, ବୁଝିଛି, ତୁମେ ଦେଖି ମଧ୍ୟ ଦେଖି ନାହଁ । ଲୋକଟା ଭିତରେ ଯେଉଁ ମାୟାଟିକକ ଥିଲା ତାର କ'ଣ କିଛି ମୂଲ୍ୟ ନାହିଁ ? ସେଇଟା ଏକାବେଳକେ ନାଲାଏକ ହୋଇଗଲା ? ତାକୁ ଜେଲ ଦେବ, ତାକୁ ମାଡ଼ମାରି ରକ୍ତବାନ୍ତି କରେଇବ, ତାକୁ ତ ବରଂ ଫାଶି ଚଢ଼େଇ ଦେଇଥିଲେ ଆହୁରି ଭଲହୋଇଥାନ୍ତା ! ହଁ, ସେ ବହୁ ଅନ୍ୟାୟ ଅତ୍ୟାଗ୍ରର କରି ସଂପତ୍ତି ଅର୍ଜିଛି, କିନ୍ତୁ ତାକୁ କ'ଣ ରଇସ୍ ଲାଖି କେବେ ସେ ଭୋଗ କରିପାରିଲା ? ଲୁଚି ଲୁଚି ଅବା ପେଟକୁ ଦି'ଟା ଖାଇଛି, ତା ବି ତମ ଆମ ପରି ନୁହେଁ—ଗ୍ରେର ପରି ଲୁଚି ଲୁଚି । ମୁହଁ ପାଖରେ ଥାଇ ଖାଇ ନ ପାରିବା କ'ଣ ଗୋଟାଏ ଅଭିଶାପ ନୁହେଁ ? ହାଁ ହାଁ ହୋଇ ତା' ଜୀବନ ବିତିଛି । ସୁଖ କ'ଣ ସେ ଜାଣି ନାହିଁ । ଅନ୍ୟାୟ ନଈରେ ଗୋଡ଼ ଦେଉ ଦେଉ ସେ ମଝି ସୁଅରେ ପହଞ୍ଚିଗଲାଣି । ସେଇଠୁ ଏ କୂଳ ଯେତେ ସେ କୂଳ ସେତେ । ତାକୁ ହାବୁକା ମାରି ଆର ପାରିରେ ପହଞ୍ଚାଇବାକୁ ମଧ୍ୟ ଚଂପା, ଗୋବରା ଠିଆ ରହିଛନ୍ତି । ତା' ପ୍ରତି କାହାରି ହେଲେ ଟିକିଏ ସହାନୁଭୂତି ନାହିଁ । ପରିଶେଷରେ ଯେତେବେଳେ ମାଡ଼ଖିଆ ଘୁଷୁରି ମରଣ ଚିତ୍କାର ପରି ସେ 'ଥ-ମା-ଆ-ଗୁଁ ବୋବାଏ, ମୁଁ ଜାଣେ ତା'ର ବେଦନା ।' ଲେଖକ ଯେପରି ମଙ୍ଗରାଜଙ୍କ ଚରିତ୍ରକୁ ଆକଳନ କରିଛନ୍ତି, ତାର ବାହ୍ୟ ଆବରଣ ଭେଦ କରି ତାର ଅନ୍ତଃରୂପକୁ ଦେଖାଇ ଦେଇଛନ୍ତି ତାହା ସତେ କେତେ ଭାବଦ୍ୟୋତକ ?

ସମଗ୍ର ଉପନ୍ୟାସଟିକୁ ମାତ୍ର ଦଶପୃଷ୍ଠା ଭିତରେ ବେଶ୍ ମାର୍ମିକ ଭାବରେ ଆକଳନ କରିଛନ୍ତି ଲେଖକ । ସେ ଦେଖାଇଦେଇଛନ୍ତି ଏଥିରେ ଅଧେ ଅନ୍ୟାୟ, ଅନୀତିରେ କାଛକୁ ଆଉଜିଛନ୍ତି । ଅଧେ ନିରୀହ ଅସହାୟତାରେ ଦୁର୍ବଳ ଧର୍ମର ଆଶ୍ରୟ ନେଇଛନ୍ତି । ଦୁଷ୍ଟ ପ୍ରକୃତିର ସାମୟିକ ଦୁର୍ଜୟତା ଦେଖାଇ ଶେଷକୁ ତାକୁ ନିଃଶେଷ କରାଯାଇଛି । 'ସତ୍ୟ ବା ନ୍ୟାୟର ବଳିଷ୍ଠ ଚିତ୍ର ନାହିଁ ।' ପାଠକ ଓ ଲେଖକ ସହିତ ଉପନ୍ୟାସର ଏକାତ୍ମବୋଧ ଆସେ ନାହିଁ । ଏହି କେତେକ ଦୁର୍ବଳତାକୁ ଶ୍ରୀରଥ ଦେଖାଇ ଦେବା ସଂଗେ ସଂଗେ ଫକୀରମୋହନଙ୍କୁ ସଲାମ ଜଣାଇଛନ୍ତି । ଏପରି ଆଲୋଚନାତ୍ମକ ରଚନା ନିଶ୍ଚୟ ଓଡ଼ିଆ ସାହିତ୍ୟରେ ଦୁର୍ଲଭ ।

ଓଡ଼ିଆ ଉପନ୍ୟାସର ତୃତୀୟ କ୍ରାନ୍ତି 'ପରଜା' ଉପନ୍ୟାସ ଲେଖକଙ୍କ ଦୃଷ୍ଟି ଆକର୍ଷଣ କରିଛି ନିବିଡ଼ ଭାବରେ । ତେଣୁ ପ୍ରଥମରୁ ସେ କହନ୍ତି—'ଖୁବ୍ ତିଖ ଗୋଟାଏ ପାହାଡ଼ ଉପରୁ ପାଞ୍ଚଟା ଢ଼ିମା ପଥର ତଳକୁ ଖସେଇ ଦେଲେ ଜହ୍ନ ପକ୍ଷ ନିଃଶବ୍ଦ ରାତିରେ ଯେମିତି ଲାଗନ୍ତା, ଗଦ୍ୟ ସାହିତ୍ୟର ଏ ବିୟୋଗନ୍ତକ ପୁରାଣଟାକୁ ପଢ଼ିପ୍ରାୟ ସେମିତି ଲାଗିଲା ।' ଉପନ୍ୟାସର ଚରିତ୍ର ଓ କଥାବସ୍ତୁକୁ ଲେଖକ ଚିତ୍ରକାଳ୍ପିକ ବର୍ଣ୍ଣନା ମଧ୍ୟ ଦେଇ ଓ ଆମ ପରିଚିତ ଭାଷା ସାହିତ୍ୟରେ ଏପରି ରୂପ ଦେଇଛନ୍ତି ଯେ ଏହି ଆଲୋଚନାଟି ଖୁବ୍ ଆପଣାର ମନେହୁଏ । ଏହି ଆଲୋଚନା ଗବେଷକୀୟ ଆଲୋଚନା ନୁହେଁ । ଉପନ୍ୟାସଟିକୁ ଭଲ ପାଇବାର ଏକାନ୍ତ ଆବେଗପୂର୍ଣ୍ଣ ଆଲୋଚନା । ଚକା ପଥର ପରି ପାହାଡ଼ ତିଖକୁ ମଝିରେ ମଝିରେ ଅନେଇ ଦୀର୍ଘ ଶ୍ୱାସ ଛାଡୁଥିବା ଶୁକ୍ରୁଜାନି, ଝୋଲା ପାଣିରେ ଝସେଇ ପଡୁଥିବା ଜିଲି, ବିଲି, ମାଣ୍ଡିଆ ଓ ଟିକ୍ରା, ଡୁମା ପାଲଟି ଯାଉଥିବା ପଥର, ମଳିଧୂଳି ନଥିବା ଆଦିବାସୀ ଯୁବତୀଙ୍କ ଯୌବନ, ଧାଙ୍ଗଡ଼ା ଓ ଧାଙ୍ଗଡ଼ୀର ନାଚଗୀତ ଭିତରେ ଜୀବନ ସାଥୀ ଖୋଜି ନେବାର ସ୍ୱାଭାବିକ ଆକାଂକ୍ଷା, ପ୍ରକୃତି ଓ ମଣିଷଙ୍କ ଭିତରେ ଅବିରୋଧ ବନ୍ଧୁତା, ନିର୍ଦୟ ନିୟତିର ପ୍ରଭାବରେ ସରଳ ଆଦିବାସୀର ସ୍ୱପ୍ନ ଓ ଜୀବନର ବିପର୍ଯ୍ୟୟ, ପ୍ରକୃତି ଓ ପରଂପରାର ମିଶ୍ରଣରେ ଆଦିବାସୀର ଜୀବନ ଗଠନ, ପରଜା ସମାଜରେ ପାରିବାରିକ ବ୍ୟବସ୍ଥାରେ ମମତା ଟାଣ ହୋଇଥିଲା ବେଳେ ସହାନୁଭୂତିର କୋହଳତା, ଜଙ୍ଗଲ ଗାରଡ଼ର ମାଲିକପଣିଆ ଓ ରାମ ବିଶୋଇର ଟଙ୍କା ଥଳିର ନିର୍ମମତା ଆଦି ନାନା ପ୍ରସଙ୍ଗକୁ ଲେଖକ ଯେପରି ଅନ୍ତର୍ଦୃଷ୍ଟି ଦେଇ ବିସ୍ତାର କରିଛନ୍ତି ତାହା ବାସ୍ତବିକ ହୃଦ୍ୟ । ଏହି ଆଲୋଚନା 'ଝଙ୍କାର'ରେ ପ୍ରକାଶ ପାଇବା ପୂର୍ବରୁ ଏପରି ଗୋଟିଏ ଭାବୋଦ୍ଦୀପକ ଆଲୋଚନା କେହି ଲେଖି ନଥିଲେ । ପରେ ମଧ୍ୟ ଏପରି ଆଲୋଚନା

ନାହିଁ । ଏ ଉପନ୍ୟାସର ସଂପର୍କରେ ଲେଖକ କହନ୍ତି—'ମହୁଲିଆ ମତାଣିଆ ଉପନ୍ୟାସଟାର ବାତାବରଣ । କାହାଣୀଟା ଆଗ ମନ ରଂଜେଇ ଦିଏ, କିନ୍ତୁ ପରେ ଏମିତି ତତେଇ ଦିଏ, ଆଉଟି ଦିଏ, ମତେଇ ଦିଏ ଯେ ଦଶ ଦିଗ ଅନ୍ଧାର ଦିଶିଯାଏ । କିଏ ମଲା କିଏ ଗଲା ଆଉ ଜଣାପଡ଼େ ନାହିଁ । ଉପନ୍ୟାସ ସରିଗଲେ ଅସହାୟ ପରଜାଗୁଡ଼ିକଙ୍କ ପାଇଁ ଗୋଟାଏ କରୁଣ କୋହ ଆଉ ତାଙ୍କ ରକ୍ତ ଚିପୁଡ଼ି ଖାଉଥିବା ବିଶୋଇଗୁଡ଼ାଙ୍କ ପାଇଁ ଏକ ବିଜାତୀୟ ଘୃଣା ଉପରକୁ ଉଭାରି ରହେ ।'

ଅନ୍ୟ ଏକ ଉପନ୍ୟାସ ଶାନ୍ତନୁ କୁମାର ଆଚାର୍ଯ୍ୟଙ୍କର 'ନର-କିନ୍ନର' ଯାହାକୁ ଓଡ଼ିଆ ଉପନ୍ୟାସର ଇତିହାସରେ ଚତୁର୍ଥ କ୍ରାନ୍ତି କହିଲେ ଭୁଲ ହେବ ନାହିଁ, ତାହାରି ସଂପର୍କରେ ଶ୍ରୀରଥ ଭାବଗର୍ଭକ ଆଲୋଚନାଟିଏ ଲେଖିଛନ୍ତି । ପ୍ରଥମରୁ ସେ କହନ୍ତି—'ଅବଚେତନର ଅନ୍ଧ ରାଜ୍ୟରେ ଗୁଡ଼ାଏ ଦୁଃସ୍ୱପ୍ନ ଦେଖଇଲେ ଯେମିତି କ୍ଳାନ୍ତ ଲାଗେ, ଏ ବହିଟା ପଢ଼ିଲା ପରେ ପ୍ରାୟ ସେମିତି ଲାଗିଲା । ଚରିତ୍ର ଗୁଡ଼ିକ ସବୁ ଖଣ୍ଡିଆ ଦଣ୍ଡିଆ—ଚରଣସିଂହ ଅଙ୍ଗାର ଚିତ୍ର କିମ୍ବା ଶିମୂଳୀ ଗଛର ପଛଆଡୁ ଉଙ୍କିଆସୁଥିବା ଫଟା ସୂର୍ଯ୍ୟଟା ପରି ।' ଉପନ୍ୟାସଟିକୁ ଆଉ ଅଧିକ ନ ପଢ଼ିବାକୁ ଯେତେ କହିଲେହେଁ ଲେଖକ ତାହାକୁ ପଢ଼ିଛନ୍ତି ଓ କ୍ରମେ କ୍ରମେ ଉପନ୍ୟାସଟିର ପ୍ରେମରେ ପଡ଼ିଯାଇଛନ୍ତି । ତାଙ୍କୁ ମନେ ହୋଇଛି—'ସାରା ଉପନ୍ୟାସଟା ଅନ୍ଧାରର ଉପନ୍ୟାସ ।' ତା' ଭିତରେ ଅଛ ନାନା ଜାତିର କ୍ଷୁଧା । ସେଠି ନାରୀଗୁଡ଼ିକ 'ମଣିଷର ତଳୁଆ ମନର ନାରୀ ।' ସେମାନେ ସେଇ 'ପୋକମଣିଷ', 'ଘୁସୁରୀ ମଣିଷ'ର ନାରୀ । ଗୋଟାଏ ଜାରଜ ଯୁବକ ଜର୍ଜ ଏ ଉପନ୍ୟାସର ନାୟକ । ସାଂପ୍ରତିକ ଜାରଜ ସଂସ୍କୃତିରେ ଜର୍ଜର ଅନୁଭୂତି ଦେଇ ଉପନ୍ୟାସର ସମସ୍ତ ଘଟଣା ଓ ଚରିତ୍ର ପ୍ରକାଶିତ । ଗୋଦରୀ ବୁଢ଼ୀ, ନଜିର ମିଆଁ, ବୀର ସାମଲ, ହରିମିସ୍ତ୍ରୀ, ବିରୂପା ଅନ୍ଧୁଣୀ, ଚରଣ ସିଂ, ଜର୍ଜ ଇତ୍ୟାଦି ଅନ୍ଧାର-ରାଜ୍ୟର ଚରିତ୍ର ଓ କେତେ ଜଣ ଆଲୋକ ରାଜ୍ୟର ପୁରୁଷ ଓ ନାରୀଙ୍କୁ ନେଇ ଗଢ଼ି ଉଠିଛି ଏହି ଉପନ୍ୟାସ । ଏହି ଉପନ୍ୟାସର ଗତାନୁଗତିକ ଧାରାରେ ଇଏ ଗୋଟିଏ ବ୍ୟତିକ୍ରମ । ଲେଖକଙ୍କ ଭାଷାରେ—'ଉପନ୍ୟାସଟା ଉଠାଏ ନାହିଁକି ପକାଏ ନାହିଁ । ଗୋଟିଏ ଘଣି ଚକ୍କରରେ ଖାଲି ଘୁରାଏ, କ୍ଳାନ୍ତ କରେ । ସବୁ ଚରିତ୍ର କୋଇଲା ରଡ଼ ପରି ଚେଙ୍କି ଦିଅନ୍ତି; କିନ୍ତୁ କାହାରି ପ୍ରତି ସହାନୁଭୂତି ବା ସମ୍ମାନ ଟିକିଏ ଆସେ ନାହିଁ; ଏପରିକି ବୁଢ଼ା, ବୁଢ଼ୀ, ଜର୍ଜ, ନଜିରମିଆଁ ପାଇଁ ମଧ୍ୟ ନୁହେଁ । ଆଦର୍ଶବାଦ ପାଇଁ ଉପନ୍ୟାସର ଦର୍ଜା ବନ୍ଦ ।' ଏହା ସତ୍ତ୍ୱେ ଲେଖକ କହନ୍ତି—'ନରକିନ୍ନରରେ ନରର ମାତ୍ରା ବଡ଼ କମ୍ । କିନ୍ନର ମାଳ ମାଳ ଅଙ୍ଗାର ଚିତ୍ର ପରି ବହିଟାର ମଲାଟ

ପର୍ଯ୍ୟନ୍ତ ଜରିଯାଇଛି । ସାହସର ସହିତ ତାକୁ ଜାହିର କରିବା ବହୁ ଦିନରୁ ଆବଶ୍ୟକ ଥିଲା ଓଡ଼ିଆ ସାହିତ୍ୟରେ । ସେଇଟା ହେଲା ଆଗ୍ପର୍ଯ୍ୟଙ୍କ ହାତରେ । ବେଶ୍ ବଳୁଆ ଉପନ୍ୟାସଟାଏ ହେଇଛି ନରକିନ୍ନର, ଆଉ ବେଶ୍ ଚମକେଇଲା ପରି ହୋଇଛି ତା'ର ଦୃଷ୍ଟିଭଙ୍ଗୀ ।'

ଚନ୍ଦ୍ରଶେଖର ସାରଳା ମହାଭାରତର ଭୀମ ଚରିତ୍ର ସଂପର୍କରେ ବ୍ୟକ୍ତିକ ଶୈଳୀର ରମ୍ୟ ଆଲୋଚନାଟିଏ ଲେଖି ଏକାଥରେ ପ୍ରାୟ ପାଞ୍ଚଶହ ବର୍ଷ ପରକୁ ଆସି ଫକୀର ମୋହନଙ୍କ ଛ'ମାଣ ଆଠଗୁଣ୍ଠକୁ ଦୃଷ୍ଟିପାତ କରିଛନ୍ତି । ଏହା ପରେ ପରେ ପରଜା ଓ ନରକିନ୍ନର ଆସିଯାଇଛନ୍ତି ତାଙ୍କର ଆଲୋଚନା ପରିସରକୁ । ସାରଳା ଯେଉଁ ଭାଷା ବ୍ୟବହାର କରିଥିଲେ ତାହା ଗ୍ରାମ-ଓଡ଼ିଶାର ଭାଷା, ଫକୀରମୋହନ ମଧ୍ୟ ସେହି ଗ୍ରାମ-ଓଡ଼ିଶାର ଭାଷାକୁ ଆଦର୍ଶ କରି ନେଲେ । ତେବେ ତାଙ୍କ ବର୍ଣ୍ଣନା-ଚାତୁରୀରେ ରସିକତା ଦେଖିବାକୁ ମିଳେ । ଗୋପୀନାଥଙ୍କ ପରଜାରେ ଭାଷା ଓ ଶୈଳୀ ମଧ୍ୟ ଲୋକ-ଧର୍ମୀ । କିନ୍ତୁ ନର-କିନ୍ନରର ଭାଷା ବଡ଼ ଅତଣ୍ଟା । ଏହି ଉପନ୍ୟାସ ତ୍ରୟୀକୁ ଆଲୋଚନା କରି ଲେଖକ ଦର୍ଶାଇ ଦେଇଛନ୍ତି ଓଡ଼ିଆ ଉପନ୍ୟାସର ଗୌରବକୁ । ନିଜେ ମଧ୍ୟ ଉପନ୍ୟାସ ଲେଖିଛନ୍ତି । ଛ'ମାଣ ଆଠଗୁଣ୍ଠର ଧର୍ମଗତ ପ୍ରତାରଣା, ପରଜାର ଧର୍ମୁ ଓ ଧରତନୀ ପ୍ରତି ଶ୍ରଦ୍ଧା ଓ ଶୁଚିପୂତ ବିଶ୍ୱାସ, ନର-କିନ୍ନର ଧର୍ମ ପ୍ରତି ବୀତସ୍ପୃହତାକୁ ସେ ଉପଲବ୍ଧି କରି 'ଯନ୍ତ୍ରାରୂଢ଼'ରେ ଧର୍ମ ପ୍ରତି ଗଭୀର ଅନୁରାଗଟିକୁ ସୂଚାଇ ଦେଇଛନ୍ତି । ଏହା ଠିକ୍ ମହାପାତ୍ର ନୀଳମଣି ସାହୁଙ୍କର ଗଳ୍ପ । ''କପୋତ ପକ୍ଷୀ ଗୁରୁ ମୋର' ପରି ଜଗନ୍ନାଥଙ୍କ ଆଡ଼କୁ ମୁହାଁଇ ଯାଇଛି । 'ମୁଁ କ୍ଷେତ୍ର ଯିବି', 'ଦାରୁଦର୍ଶନ' ଆଦି ରଚନାଗୁଡ଼ିକ ମଧ୍ୟ ସେହି ଦିଗଟିକୁ ସ୍ପଷ୍ଟ କରିଦେଇଛି । ଯେଉଁ ଉଦବାସ୍ତୁ ଚରିତ୍ର ଚଂପାକୁ ଛ'ମାଣ ଆଠଗୁଣ୍ଠରେ ଦେଖାଯାଏ ତାହା କେତେ ବାଗରେ ବୁଲି ବୁଲି ଲେଖକଙ୍କ ହାତରେ ନୂଆ ରୂପ ନେଇଯାଇଛି । ନର-କିନ୍ନରର ଜାରଜ ଦାୟାଦ ଜର୍ଜ 'ଅସୂର୍ଯ୍ୟ ଉପନିବେଶ'ରେ ଜୟନ୍ତ ପରିଡ଼ାରେ ରୂପାନ୍ତରିତ ହୋଇଅଛି । ଜର୍ଜର ନୀରବ ଯନ୍ତ୍ରଣା ଜୟନ୍ତ ପରିଡ଼ା ଭିତରେ ଜଳାଇଦେଇଛି ପ୍ରତିଶୋଧର ଅଗ୍ନି । ଅତଏବ ଚନ୍ଦ୍ରଶେଖର ନିଜେ ଜଣେ ଔପନ୍ୟାସିକ ଓ ଗାଳ୍ପିକ । ସେ ମଧ୍ୟ ପ୍ରାବନ୍ଧିକ । ତେବେ ତାଙ୍କର ପ୍ରବନ୍ଧ ଦାନ୍ତଚିପା ଭାଷାର ପ୍ରବନ୍ଧ ନୁହେଁ; ରସାଳ ହୃଦୟର ଆବେଗଦୀପ୍ତ ଅଭିବ୍ୟକ୍ତି । ତାହା କବିତା ସହିତ ହାତ ଧରି ଗତି କରିଛି । ମୁକ୍ତ ତାର ଗତି । ଅଥଚ ଗତି ପଥରେ ସେ ବାରମ୍ବାର ଏପଟ ସେପଟ ଚାହିଁ ଚାହିଁ ଯାଉଛି । ଲକ୍ଷ୍ୟ କିନ୍ତୁ ହରାଉ ନାହିଁ । ଜୀବନ ଓ ଜଗତ ସଂପର୍କରେ କେତେ କେତେ ଅନୁଭୂତିକୁ ବାଢ଼ି

ଦେଉଛି । ଭାଷା ହୋଇଯାଇଛି ପରିଚିତ ଜଗତର ଭାଷା, ଚିତ୍ରକାଳ୍ପିକ ପ୍ରୟୋଗ ମଧ୍ୟ ଭାବ ଉପଲବ୍ଧିରେ ସାହାଯ୍ୟ କରୁଛି । ନାନ୍ଦନିକ ଭାବ ସୃଷ୍ଟି କରୁଛି । ଦୃଶ୍ୟମାନ ସମାଜ ବ୍ୟବସ୍ଥା ଓ ଜୀବନ-ଚର୍ଯ୍ୟା ମଧ୍ୟରୁ ପ୍ରାବନ୍ଧିକ ମଝିରେ ମଝିରେ ଗତି କରିଯାଇଛନ୍ତି ଉପନିଷଦର ଦର୍ଶନକୁ । ସେଇଠୁ ସେ ସାଉଁଟି ଆଣିଛନ୍ତି କେତେ ଦୃଷ୍ଟାନ୍ତ । ଭାଗବତରୁ ମଧ୍ୟ ଆଣିଛନ୍ତି; ଆଣିଛନ୍ତି ମଧ୍ୟ ମହାଭାରତ ଓ ରାମାୟଣରୁ । ବାହାର ଜଗତରୁ ଉପାଦାନ ଆହରଣ କରିଥିଲେ ହେଁ ଭାରତର ସଂସ୍କୃତି ହୋଇଛି ତାଙ୍କର ମୁଖ୍ୟ ଉପାଦାନ । ତାଙ୍କର ସମାଲୋଚକୀୟ ବ୍ୟକ୍ତିତ୍ୱଟି ବଡ଼ ସମ୍ବେଦନଶୀଳ । ସାହିତ୍ୟର ଅନ୍ଦରମହଲର ରହସ୍ୟକୁ ତେଣୁ ସେ ଆବିଷ୍କାର କରିଛନ୍ତି । ତାହାକୁ କିନ୍ତୁ ସେ ନୈର୍ବ୍ୟକ୍ତିକ ଶୈଳୀରେ ପ୍ରକାଶ ନ କରି ବ୍ୟକ୍ତିକ ଶୈଳୀରେ ପ୍ରକାଶ କରି ସୃଷ୍ଟି କରିଛନ୍ତି ଚମତ୍କାରିତା । ବାସ୍ତବିକ ଶ୍ରୀ ରଥ ଆଧୁନିକ ଓଡ଼ିଆ ସାହିତ୍ୟର ଚଳିତ ପଚାଶ ବର୍ଷ ମଧ୍ୟରେ ଏକ ବିଶିଷ୍ଟ ସାରସ୍ୱତ ପ୍ରତିଭା । ସେ ଫକୀର ମୋହନଙ୍କୁ ସଲାମ ଜଣାଇଛନ୍ତି । ତାଙ୍କର ରମ୍ୟ ରଚନାକୁ ତଥା ତାଙ୍କର ନାନା ସାରସ୍ୱତ କୃତିକୁ ପାଠ କଲାପରେ ସେହି ଲଳିତ ମଧୁର କ୍ରାନ୍ତଦର୍ଶୀ ଶିଳ୍ପୀଙ୍କୁ ବାରମ୍ବାର ସାଲ୍ୟୁଟ କରିବାକୁ ଇଚ୍ଛା ହେଉଛି । ତାଙ୍କ ରମ୍ୟରଚନା ପାଇଁ ଯେ ସେ ସାଲ୍ୟୁଟର ଯୋଗ୍ୟ; ଏକଥା କହିଲେ ଆଦୌ ଅତିରଂଜିତ ହେବ ନାହିଁ ।

ପ୍ରଫେସର, ଓଡ଼ିଆ ବିଭାଗ,
ବିଶ୍ୱଭାରତୀ ଶାନ୍ତିନିକେତନ

****

# ଚନ୍ଦ୍ରଶେଖର ରଥଙ୍କ ଗଳ୍ପରେ ଅଲୌକିକତା
## ['କ୍ରମଶଃ ଗଭୀର ନଈ' ଗଳ୍ପଗ୍ରନ୍ଥ ଆଧାରରେ]

*ଡ. ପ୍ରସନ୍ନ କୁମାର ମହାନ୍ତି*

ଚନ୍ଦ୍ରଶେଖର ରଥ ସମକାଳୀନ ସାହିତ୍ୟର ଅନ୍ୟତମ ଶ୍ରେଷ୍ଠ କଥାକାର ବୋଲି କହିବା ବାହୁଲ୍ୟ ହୋଇପାରେ, ମାତ୍ର ତାଙ୍କ କୃତିର ଯେକୌଣସି ବିଭାବର ଆଲୋଚନା ଏପରି ଏକ ଆଦ୍ୟୋଚ୍ଚାରଣ ବିନା ଆରମ୍ଭ କରିବା ଅସ୍ୱସ୍ତିକର ଓ ଅତୃପ୍ତିପ୍ରଦ । କଥାବସ୍ତୁ, ଘଟଣା ବିନ୍ୟାସ, ଚରିତ୍ରଚିତ୍ରଣ ଏବଂ ଭାଷା-ଶୈଳୀ ତଥା ପରିବେଷଣ ଭଙ୍ଗୀରେ ସେ ଯେଉଁ କଳାତ୍ମକ ତୁଙ୍ଗିମାରେ ବିଚରଣ କରନ୍ତି ତାହା ଯେକୌଣସି ପାଠକୀୟ ଓ ସମାଲୋଚକୀୟ ମାନଦଣ୍ଡରେ ଅନନ୍ୟ । ସେ ମୁଖ୍ୟତଃ ଓଡ଼ିଆ ଭାଷାରେ ଲେଖୁଥିଲେ ସୁଦ୍ଧା ଏ ଆଲୋଚନାର ପ୍ରଥମ ବାକ୍ୟରେ ସଚେତନ ଭାବେ 'ସମକାଳୀନ ଓଡିଆ ସାହିତ୍ୟର, ବୋଲି ଏ ଲେଖକ ଲେଖି ନାହିଁ; କାରଣ ତାଙ୍କର କୃତିତ୍ୱକୁ ଗୋଟାଏ ପ୍ରାଦେଶିକ ଭାଷାର ସୀମିତତାରେ ଏତେ ସଂକୀର୍ଣ୍ଣ କରିଦେଇ ପାରିବାର ଅଧିକାର ତା'ର ଅଛି ବୋଲି ଏ ଲେଖକ ବିଶ୍ୱାସ କରେ ନାହିଁ ।

ଚନ୍ଦ୍ରଶେଖରଙ୍କ ଗଳ୍ପ ସାମ୍ରାଜ୍ୟରେ କଥାବସ୍ତୁର ଏକ ସମ୍ପ୍ରସାରିତ ବିବିଧତା ଲକ୍ଷ୍ୟ କରିହୁଏ । ମାତ୍ର ମୁଖ୍ୟତଃ ମଣିଷ ଭିତରେ ଛପି ରହିଥିବା 'ଦେବତ୍ୱ'ର ସନ୍ଧାନ, ମଣିଷର ଗଭୀର ବେଦନା, ଜୀବନର ନାନା ବୈଚିତ୍ର୍ୟ, ନିୟତିର ଆଶ୍ଚର୍ଯ୍ୟ ବିଧାନ, ମଣିଷର ଅସହାୟତାବୋଧ, ଅହଙ୍କାର ଓ ଆତ୍ମସମର୍ପଣ ପ୍ରଭୃତି ପ୍ରବୃତ୍ତି ତାଙ୍କ କଥାବସ୍ତୁର ପ୍ରାଣକେନ୍ଦ୍ର ଭାବେ ଦୃଷ୍ଟିକୁ ଆସନ୍ତି ।

ଶ୍ରୀ ରଥଙ୍କ ଗଳ୍ପର ଆଉ ଏକ ଲୋଭନୀୟ ବିଭାବ ବେଶ୍ ଗୁରୁତ୍ୱପୂର୍ଣ୍ଣ । ତାହା ହେଉଛି ଅଲୌକିକତା (Otherworldlinesss) । ଅତିପ୍ରାକୃତବାଦ (Supernaturalism) ର ଏକ ଉପାଦାନ ହେଉଛି ଅଲୌକିକତା । କିଛିଟା ସମ୍ପ୍ରସାରିତ ବିଶ୍ୱରରେ ଅଲୌକିକତା ଓ ଅତିପ୍ରାକୃତବାଦ ମଧ୍ୟରେ ଅଭିନ୍ନତା ମଧ୍ୟ ସ୍ୱୀକାର କରାଯାଇପାରେ । ଏକ ଗଳ୍ପ ଆମୂଳାଂତ ଏକ ଅଲୌକିକ ପରିସ୍ଥିତି ପ୍ରସ୍ତାପକ ହୋଇପାରେ, ଅନ୍ୟଥା ଏକ ଅଲୌକିକ ସଂସ୍ଥିତି ତା'ର କେନ୍ଦ୍ରବିନ୍ଦୁ ହୋଇପାରେ, କିମ୍ବା ଗଳ୍ପଟି ଅଲୌକିକତାର କିଛି ଲକ୍ଷଣ ଆଧାରିତ ମଧ୍ୟ ହୋଇପାରେ ।

ଇହଲୋକରେ ଆମର ସାଧାରଣ ଚେତନାରେ ଯାହା ଘଟୁଛି ତାହା ଲୌକିକ; ମାତ୍ର ଯାହା ଇହଲୋକର ଚିରାଚରିତ କଥା ନୁହେଁ, ହୁଏତ ଏହାର ଊର୍ଦ୍ଧ୍ୱ ବା ନିମ୍ନ ଲୋକର ଅସାଧାରଣ ଘଟଣା, ଚରିତ୍ର, ପରିଣାମ, ଇଂଗିତ, କଥନ—ଏ ସମସ୍ତ ହିଁ ଅଲୌକିକ । ଅଲୌକିକତା ଆମେ ପାଉ ଏହିଭଳି ଅବସ୍ଥାରେ— ଧରାଯାଉ ଏକ ଗଳ୍ପରେ ଭୂତ ଆସେ; ଏବଂ ଗଳ୍ପ ସେହି ପରିସ୍ଥିତିକୁ ସାଙ୍ଗରେ ନିଏ । ଭୂତ ଆସେ ସିନା, ମାତ୍ର ମନେହୁଏ ସତେକି ତାହା ସ୍ୱପ୍ନଟାଏ..... ସତେକି ତାହା ଅବଚେତନ ମନର ଏକ ଭାବନା ! ଯେଉଁ ଅଲୌକିକତା, ଅସାଧାରଣତ୍ୱ ବା ଅସାମାନ୍ୟତା ଗଳ୍ପଟିରେ ପ୍ରକଟିତ ହୁଏ, କିଛି ତଥ୍ୟ ବା ତତ୍ତ୍ୱ ଆଧାରରେ ତାକୁ ଆବୃତ କରି ରଖିବାକୁ ଏକ ସଫଳ ପ୍ରୟାସ ମଧ୍ୟ ସେଥିରେ ରହେ ବା ରହିବା ଆବଶ୍ୟକ ।

ଲୌକିକତା ଖୁବ୍ ବଢ଼ିଗଲେ ବା ମହାନ୍ ହୋଇଗଲେ ତାହା ଅଲୌକିକତା ନହୋଇପାରେ । ଲୌକିକତାକୁ ଅତିକ୍ରମ କରିଯିବା ହିଁ ଅଲୌକିକତା । ଅଲୌକିକତା ପ୍ରତିଫଳିତ ଅଧିକାଂଶ ଗଳ୍ପର ସମ୍ପୃକ୍ତ ଚରିତ୍ରମାନେ ବହୁ ଦୃଷ୍ଟିରୁ ଅସାଧାରଣ ଓ ଅନନ୍ୟ । କାରଣ ଅସାଧାରଣ ଓ ଅନନ୍ୟ ପରିବେଶରେ ହିଁ ସେମାନଙ୍କର ସ୍ଥିତି, ପ୍ରବୃତ୍ତି ଓ ଅନୁଭୂତି ପ୍ରତିଷ୍ଠିତ ହୋଇଥାଏ । ଜୀବନଠୁ' ବୃହତ୍ତର (Larger than life) ସେମାନଙ୍କର ଅସ୍ତିତ୍ୱ ।

ସାହିତ୍ୟର ସତ୍ୟ ଯେ ବାସ୍ତବ ଜଗତର ସତ୍ୟଠାରୁ ଭିନ୍ନ ଏହା ସର୍ବଥା ସ୍ୱୀକୃତ । 'ବିଶ୍ୱାସଯୋଗ୍ୟ କଳ୍ପନା' ଲାଗି କଥାକାରକୁ ଅଧିକାର ଦେଲାବେଳେ ଆମେ ଅଲୌକିକତାର ପ୍ରୟୋଗରେ ଗଳ୍ପର ପ୍ରଭାବକୁ ରୋମାଞ୍ଚକର କରିବାଲାଗି ମଧ୍ୟ ତାକୁ ସବୁଜ ସଙ୍କେତ ପ୍ରଦର୍ଶନ କରୁ । ବିଶିଷ୍ଟ ମାର୍କିନ୍ ସମାଲୋଚକ Laurence Perrine ଙ୍କ ମତରେ— "Truth in fiction is not the same as fidelity to fact. Fiction afterall, is the opposite of fact. It is a game of make-believe, though, at its best, a serious game, in which the author conceives characters and situations in his mind and sets them down on paper." ସେ ପୁଣି କହନ୍ତି- " We must not judge a story, then, by whether or not it stays within the limits of the possible. xxx He may be allowed to suspend a law of nature." (Literature : structure, sound and sense).

ଆମେ ଯେଉଁ ଭୌତିକ ଜଗତରେ ବାସକରୁ ସେଠାରେ ସଂଘଟିତ ସମସ୍ତ ଘଟଣା ଏକ ପ୍ରାକୃତିକ ବା ବସ୍ତୁଜାଗତିକ ନିୟମର ଅଧୀନ । ପ୍ରାକୃତିକ ନିୟମସବୁ କୋଟି କୋଟି ବର୍ଷ ଧରି ନିର୍ଦ୍ଧାରିତ ଓ ସୁନିର୍ଦ୍ଦିଷ୍ଟ । ସେଥିରେ ପ୍ରାୟ ବ୍ୟତିକ୍ରମ ଘଟେନା । ଜଡ ଜଗତର ଏହି ଧର୍ମ ଓ ନିୟମାନୁବଦ୍ଧତାର ଅଧିକାଂଶ ସୂତ୍ର ବିଜ୍ଞାନ ମଧ୍ୟ ସପ୍ରମାଣ

ସାବ୍ୟସ୍ତକରି ଦେଖାଇଦେଇଛି । ସୂର୍ଯ୍ୟ ପୂର୍ବଦିଗରେ ଉଦିତ ହେବା, ଗଛରୁ ପତ୍ର କି ଫଳଟିଏ ଛିଡିଲେ ତଳକୁ ଖସିପଡିବା, ପାଣି ଢ଼ାଳିଦେଲେ ନିମ୍ନ ଭାଗକୁ ଗଡିଯିବା, ଜୀବଟିଏ ମରିଗଲେ ସଢ଼ି କ୍ଷୟ ହୋଇଯିବା ଭଳି ଭୌତିକ ନିୟମ ଅଲଂଘନୀୟ । ସଚରାଚର ଦୃଷ୍ଟ ନହେଲେ ହେଁ ଏହାର କୌଣସି ବ୍ୟତିକ୍ରମ ବା ବୈପରୀତ୍ୟ ଘଟିଲେ ମଣିଷ ସ୍ତବ୍ଧ ଓ ସ୍ତମ୍ଭୀଭୂତ ହୋଇଯିବାକୁ ବାଧ୍ୟ ।

କିନ୍ତୁ କଦବା ଅଲୌକିକ ଘଟିନାଟିଏ ଦୈବାତ୍ ଘଟି ମଧ୍ୟ ଯାଏ । ଆମେ ସ୍ତବ୍ଧ ହୋଇଯାଉ । ଆମ ଚେତନା ଓ ଇନ୍ଦ୍ରିୟମାନଙ୍କ ସାମର୍ଥ୍ୟର ସୀମା ତାହା ଅତିକ୍ରମ କରିଯାଏ । ସେ ଘଟଣାକୁ ଛୁଇଁ ଦେବା ପାଇଁ ଆମ ଚେତନାର ହାତପାଏନା । ବୁଦ୍ଧି ଓ ବିଜ୍ଞାନ ତା' ପଛରେ କିଛି ଗ୍ରହଣଯୋଗ୍ୟ ଯୁକ୍ତି, ନିୟମ ବା କାରଣର ସମର୍ଥନ ଯୋଡ଼ି ତାକୁ ସହଜ ଓ ସରଳ ରୀତିରେ ଆମ ସମ୍ମୁଖରେ ଛିଡ଼ାକରାଇ ପାରନ୍ତି ନାହିଁ । ଶେଷତଃ ତାହା ଏକ ସମ୍ମୋହିତାବସ୍ଥା, ଭ୍ରାନ୍ତି ବା ଇନ୍ଦ୍ରିୟାତୀତ ଉପଲବ୍ଧି ବୋଲି ହୁଏତ କୁହାଯାଏ । ଖୁବ୍ ବେଶୀ ହେଲେ ଏକ ଆପାତ-ସତ୍ୟ ଅନୁଭୂତି ଯାହାର ଭୌତିକ ସମ୍ଭାବନା ସଂଦିଗ୍ଧ ବୋଲି କୁହାଯାଇପାରେ ।

ସେ ଯାହାହେଉ, ଆମ୍ଭମାନଙ୍କ ମଧ୍ୟରୁ କେହି କେହି ଜୀବନକାଳ ମଧ୍ୟରେ ବେଳେବେଳେ ଏହିଭଳି କିଛି ନା କିଛି ଅଲୌକିକ, ଇନ୍ଦ୍ରିୟାତୀତ ବା ଅତିଭୌତିକ ଘଟଣା ପ୍ରତ୍ୟକ୍ଷ ହେବାରୁ ଜାତ ରୋମାଞ୍ଚକୁ ସାମ୍ନା କରିବାର ସୁଯୋଗ ବା ଦୁର୍ଯୋଗ ପାଇଥାଉ । ନତୁବା କୌଣସି ବିଶ୍ୱାସଯୋଗ୍ୟ ମଣିଷଠୁ' ତା'ର ନିଜର ଏଭଳି ଅଲୌକିକ ଅନୁଭୂତି କଥା ଶୁଣିବାକୁ ପାଇଥାଉ ଓ ରେମାଞ୍ଚିତ ହୋଇଥାଉ ।

ବାସ୍ତବ ଜୀବନରେ ଅଲୌକିକତା ଯେମିତି ରୋମାଞ୍ଚକର, କାହାଣୀରେ ସଫଳ ଭାବେ ଅଲୌକିକତାର ଅବତାରଣା କରାଯାଇ ପାରିଲେ ତାହା ମଧ୍ୟ ପାଠକକୁ ସେମିତି ରୋମାଞ୍ଚିତ କରିପାରେ । ମାତ୍ର କାହାଣୀ ବା ଗଳ୍ପରେ ଅଲୌକିକତାକୁ ସଫଳ ଓ ପ୍ରଭାବଶାଳୀ ଭାବେ ପ୍ରୟୋଗ କରିବା ଆଦୌ ସହଜସାଧ୍ୟ ନୁହେଁ । ପ୍ରଥମତଃ ଗଳ୍ପ ଏକ କାଳ୍ପନିକ ସାହିତ୍ୟିକ କଳା ଭାବରେ ହିଁ ସ୍ୱୀକୃତ । ତେଣୁ ସେଥିରେ ଅଲୌକିକତା ପରି ଅତି-ପ୍ରାକୃତ ପ୍ରସଙ୍ଗ ଯାଦୃଚ୍ଛିକ ଭାବେ ପ୍ରଯୁକ୍ତ ହେଲେ କିମ୍ବା କଥାକାର ସାମାନ୍ୟ ସାମର୍ଥ୍ୟ ରହିତ ଓ କୌଶଳରିକ୍ତ ହୋଇ ପଡ଼ିଲେ ଗଳ୍ପଟି ଶେଷତଃ ଏକ ନିରୁତା Fantasy ବା ଅବାସ୍ତବ କଳ୍ପନାର ମନୋରଞ୍ଜକ କୌତୁକରେ ରୂପାନ୍ତରିତ ହୋଇଯାଇପାରେ । ତେଣୁ ଗଳ୍ପରେ ଅଲୌକିକତା ଏଭଳି କୌଶଳରେ ପ୍ରଯୁକ୍ତ ହେବା ଉଚିତ୍ ଯଦ୍ଦ୍ୱାରା ତାହା ଅଲୌକିକ ହୋଇ ସୁଦ୍ଧା ଜୀବନର ବାସ୍ତବ ଅନୁଭୂତି ତୁଲ୍ୟ ମନେ ହେବ ଏବଂ ଜୀବନରେ ତା'ର କଦବା ସମ୍ଭବନା ପ୍ରତି ପାଠକର ସ୍ୱାଭାବିକ ପ୍ରତ୍ୟୟ ଜାତ ହେବ । ଓଡ଼ିଆ

ସାହିତ୍ୟରେ ଚନ୍ଦ୍ରଶେଖର ରଥ ଓ ମନୋଜ ଦାସଙ୍କ ଭଳି ଅଲୌକିକତାକୁ ଅନନ୍ୟ ଓ ପ୍ରଭାବଶାଳୀ ଢଙ୍ଗରେ ଅନ୍ୟ କେହି ପ୍ରୟୋଗ କରିପାରିଥିବା ମନେ ହୁଏନା ।

ଏହି ଆଲୋଚନାରେ ଚନ୍ଦ୍ରଶେଖର ରଥଙ୍କର କେବଳ 'କ୍ରମଶଃ ଗଭୀର ନଈ' ଗଳ୍ପ ସଙ୍କଳନରେ ଗ୍ରଥିତ ଗଳ୍ପଗୁଡ଼ିକ ମଧ୍ୟରୁ ଅଲୌକିକତାର ଅବତାରଣା ଥିବା ମୁଖ୍ୟତଃ ଦୁଇଟି ଗଳ୍ପ ଉପରେ ସଂକ୍ଷିପ୍ତ ଦୃଷ୍ଟିପାତ କରାଯାଉଛି ।

'କ୍ରମଶଃ ଗଭୀର ନଈ'ର ସମୁଦାୟ ଏକୋଇଶିଟି ଗଳ୍ପ ମଧ୍ୟରୁ ଦୁଇଟି ଗଳ୍ପରେ ଅଲୌକିତାର ପ୍ରୟୋଗ ଲକ୍ଷ୍ୟ କରିହୁଏ । ସେଥିରୁ ଗୋଟିଏ ହେଉଛି "ସତ ନା ମିଛ ? ମିଛ, ନା'ନା ସତ" । ସଂକ୍ଷିପ୍ତତମ ରୂପରେ କାହାଣୀଟି ଏଇଭଳି : ରାତି ଅଧରେ ଘୋର ଜଙ୍ଗଲ ଭିତରେ ହଠାତ୍ ଗାଡ଼ିଟେ ଖରାପ ହୋଇଯାଏ । ଗାଡ଼ିରେ ଥା'ନ୍ତି ମାଆ, ପୁଅ, ବୋହୂ ଓ ଡ୍ରାଇଭର । ବିବ୍ରତ ଓ ଭୟାର୍ତ୍ତ ସେଇ ମୁହୂର୍ତ୍ତରେ ଅନ୍ଧାର ଭିତରୁ ଆବିର୍ଭୂତ ହୁଅନ୍ତି ଦୁଇଜଣ ବ୍ୟକ୍ତି । ଜଣେ ମୁସଲମାନ ବୁଢ଼ା ଓ ତା'ର ଯୁବକ ପୁଅ । ପୁଅ ଗାଡ଼ି ସଜାଡ଼ି ବସେ ଓ ବାପ ଏମାନଙ୍କୁ ନିକଟସ୍ଥ ନିଜ ଘରକୁ ଡାକିନିଏ । ସେଠି ବୁଢ଼ାର ସ୍ତ୍ରୀ, ଦୁଇ ବୋହୂ ଓ ଝିଅ ଖୁଆଇ ପିଆଇ ଏମାନଙ୍କର ବହୁତ ଚର୍ଚ୍ଚା କରନ୍ତି । ତା'ପରେ ଗାଡ଼ି ସଜଡ଼ା ହୁଏ ଓ ମୁସଲମାନ ବୁଢ଼ାଠୁ' ବିଦାୟ ନେଇ ଏମାନେ ଘରକୁ ଫେରିଯାଆନ୍ତି । କିନ୍ତୁ ପରେ ଜଣାପଡେ ଯେ ଜଙ୍ଗଲର ସେଇ ସ୍ଥାନରେ କୌଣସି ଗାଁ ଗଣ୍ଡା ନାହିଁ । କୌଣସି ବ୍ୟକ୍ତି ଏତେ ପରିବାର ଧରି ସେଠାରେ ଘର କରି ରହିବାର କୌଣସି ପ୍ରଶ୍ନ ଉଠେନା । —ଏମିତି କହିଦେଲେ ଗପଟି ସିନା ଏତିକି, ମାତ୍ର ପ୍ଲଟ୍‌ର ଏମିତି ସଂକ୍ଷିପ୍ତତମ ରୂପ ଭିତରେ କ'ଣ ଗପଟି ପ୍ରକୃତରେ ରହିଥାଏ ? ଗଳ୍ପର କାହାଣୀ ଘଟଣା, ଚରିତ୍ର ଓ ଭାଷା-ଭଙ୍ଗୀ ଅବଶ୍ୟ ଗୁରୁତ୍ୱ ଧାରଣ କରନ୍ତି ।

ପ୍ରଥମ ପୁରୁଷରେ ଯାହାଙ୍କ ବୟାନରେ ଗଳ୍ପଟି ଉପସ୍ଥାପିତ ହୋଇଛି ସେ ହେଉଛନ୍ତି ଜଣେ ସ୍ତ୍ରୀଲୋକ; ଯିଏ ନିଜ ପୁଅ, ବୋହୂ ଓ ଡ୍ରାଇଭର ସହ ଗାଡ଼ିରେ ବସି ଯାଉଥିଲେ । ତାଙ୍କର ଏକମାତ୍ର ଝିଅ ତିନିବର୍ଷ ବୟସରେ ମରିଯାଇଥିଲା ଓ ଝିଅଟିଏ ଲାଗି ତାଙ୍କ ଭିତରେ ଚିରକାଳ ରହିଯାଇଥିଲା ଏକ ଶୂନ୍ୟସ୍ଥାନ । ଜଙ୍ଗଲରେ ମୁସଲମାନ ବୁଢ଼ାଘରେ କିଛିକ୍ଷଣ ଅତିଥି ହୋଇଥିଲା ବେଳେ ତା'ର ୧୨/୧୩ ବର୍ଷ ସୁନ୍ଦରୀ ଝିଅକୁ ଦେଖି ଭଦ୍ର ମହିଳା ବେଶ୍ ଭଲପାଇ ବସିଥିଲେ ଓ ମନେ ମନେ ଭାବିଥିଲେ ଏ ତାଙ୍କର ଝିଅ ହୋଇନଥାନ୍ତା ! ଝିଅର ରୂପ ଓ ଆଚରଣ କେମିତି ତାଙ୍କୁ ମୁଗ୍ଧ ଓ ଆକୃଷ୍ଟ କରିଛି ଦେଖନ୍ତୁ— " ମୋର ଭାରି ମନହେଲା ସେ ଝିଅଟିକୁ କୋଳକୁ ଟାଣିନବା ପାଇଁ । ମୁଁ ତା' ଅଣ୍ଟାରେ ହାତ ବେଢ଼ାଇ ଟିକିଏ ଚ୍ୟପିଦେଲି । ସେ ମୋ' ଆଡ଼କୁ ଘୁଞ୍ଚି ଆସିଲା । ତା' ଦେହରୁ କେମିତି ଗୋଟାଏ ସଜଫୁଟା ଫୁଲର ବାସ୍ନା ବାହାରୁଥାଏ । ମୁଁ ତାକୁ ଚ୍ୟହିଁଲେ

ତା' ମୁହଁରେ ହସ ଉକୁଟି ଉଠୁଥାଏ । ମୁଁ ତାକୁ ଖକୁରୀ କୋଳିଟିଏ ଖୁଆଇ ଦେବାକୁ ଗ୍ରହିଁଲି । ସେ ତା'ର ଚମ୍ପାଫୁଲ ପରି ହାତ ଟେକି ବାରଣ କଲା । ମୁଁ ତା' ପାପୁଲିକୁ ଧରି ଚୁମାଟିଏ ଦେଲି । ଅଳତା ପତ୍ରପରି ନାଲି ସେ ପାପୁଲି, ଲହୁଣି ପରି କଅଁଳ । ଦିଲ୍ଲୀ ଦୁର୍ଗ ଭିତରେ ରାଜରାଜେଶ୍ୱରୀ ହେଲା- ଭଳି ଏ ଝିଅ ।''

ଘରକୁ ଫେରିବା ପରେ ତହିଁ ପରଦିନ ମଧ୍ୟ ତାଙ୍କ ମନ ଓ ଚେତନାକୁ 'ନୁରୁ' ନାମକ ସେଇ ଝିଅଟିର ଅସ୍ତିତ୍ୱ ଆଚ୍ଛନ୍ନ କରି ରଖିଛି । ତା' ରୂପ ଆଗରେ ନିଜ ବୋହୂର ରୂପ ଓ ଅନ୍ୟସମସ୍ତ ରୂପବତୀଙ୍କ ରୂପ ଊଣା ମନେ ହୋଇଛି । ଗଳ୍ପର ପରିଣତିରେ ଯେଉଁ ଗାଠନିକ କୌଶଳ ପ୍ରଯୁକ୍ତ ହୋଇଛି ତାହା ପ୍ରଣିଧାନଯୋଗ୍ୟ । ଅତ୍ୟନ୍ତ ସମର୍ଥ ସୃଜନଶୀଳତା ଦ୍ୱାରା ହିଁ ଏହା କେବଳ ସମ୍ଭବ । ଏଭଳି ଏକ ଅଲୌକିକ ଅନୁଭୂତିର ସତ୍ୟତାକୁ ବିଶ୍ୱାସ କରିବା କିମ୍ବା ଏହାର ମିଥ୍ୟାତ୍ୱ ସାବ୍ୟସ୍ତ କରି ପ୍ରତ୍ୟାଖ୍ୟାନ କରିବା କଥା ଶେଷରେ ପାଠକ ଉପରେ ପଡ଼ିଛି । କିନ୍ତୁ ଘଟଣାକୁ କୋଡ଼ିଏ ବର୍ଷ ତଳର ବୋଲି କୁହାଯାଇଛି ଏବଂ ଏହା ଦ୍ୱାରା ଏହାର ଦୁଇ ମୁହଁ ଖୋଲାଯିବା ସମ୍ଭାବନା ମଧ୍ୟରୁ ଗୋଟିକର ମୁହଁ ପ୍ରାୟ ବନ୍ଦ କରି ଦିଆଯାଇଛି । ଅତିଥିପରାୟଣ ମୁସଲମାନ ଲୋକଟିର ଘରଦ୍ୱାର ଜଙ୍ଗଲରେ କେବେ ଠାବ କରିବାର ସମ୍ଭାବନାଟିଏ ରହିଲେ ଗଳ୍ପର ଅଲୌକିକ ଉପାଦାନଟି ମଧ୍ୟ ଅପସୃତ ହୋଇଯିବାର ଆଶଙ୍କା ରହିଥାନ୍ତା ।

କେବଳ ଗଳ୍ପଟିର ନାମକରଣ ହୁଏତ ଆଉ ଟିକେ ପରିମିତ ଓ ପରିଚ୍ଛନ୍ନ ହୋଇ ପାରିଥାନ୍ତା ।

ଅଲୌକିକତା ଆଧାରିତ ସଂକଳନର ଅନ୍ୟ ଗଳ୍ପଟି ହେଉଛି ''ଆଉ କାହାକୁ କହିବେ ନାହିଁ'' । ଗଳ୍ପ-ନାୟକ ଜଣେ ଅଧ୍ୟାପକ । ବଦଳି ହୋଇ ଗୋଟେ ପାହାଡ଼ ଜଙ୍ଗଲ ଘେରା ଗଡ଼ଜାତି ସହରରେ ଆସି ପହଞ୍ଚିଛି ସେ ଓ ସାମୟିକ ଭାବେ ସେଠା ରାଜବାଟିରେ ଅଇଥାନ ହୋଇଛି । ଅତୀତରେ ତା'ର ଛାତ୍ର ଥିବା ସେଠାକାର ତରୁଣ ଓ ଭଡ଼ାଲୁ ଅତିରିକ୍ତ ତହିସିଲଦାର ଆସି ଯୁଟିଛି ଓ କିଛିକାଳ ଗପସପ କରି ଫେରିଯାଇଛି । ରାତିରେ ରାଜବାଟିର ଜଗୁଆଳି ଗୋପାଳ ଦ୍ୱାରା ସ୍ୱାଦ୍ୟ ଦିବ୍ୟ ଭୋଜନରେ ଆପ୍ୟାୟିତ ହୋଇ ଶୋଇଗଲା ପରେ ବହୁକାଳ ପୂର୍ବେ ରାଜଦମ୍ପତିଙ୍କ ବ୍ୟବହୃତ ଅତରର ମହକ ଏବଂ ସେଇ ଅନ୍ଧାରରେ ଶଯ୍ୟାରେ ଦେହକୁ ଲାଗି ଏକ ରମଣୀର ଉପସ୍ଥିତି ବାରି ନାୟକର ନିଦ ଭାଙ୍ଗିଯାଇଛି । ଶେଷରେ ସକାଳକୁ ଦେଖିଲାବେଳକୁ ପୂର୍ବ ରାତିର ଗୋପାଳ ନାମକ ଚରିତ୍ର ପ୍ରକୃତରେ କାହିଁ କେତେ ବର୍ଷ ତଳର ଦିବଂଗତ ଜଗୁଆଳି ବୋଲି ଜାଣିବାକୁ ପାଇଛି ଗଳ୍ପ-ନାୟକ ।

ପ୍ଲଟ୍ ଦୃଷ୍ଟିରୁ ପୂର୍ବୋକ୍ତ ଗଳ୍ପ ଭଳି 'ଆଉ କାହାକୁ କହିବେ ନାହିଁ' ମଧ୍ୟ ପାଠକକୁ ସ୍ତବ୍ଧ କରିଦେବାକୁ ବେଶ୍ ସମର୍ଥ । ବରଂ ଅଲୌକିକତାର ତୁଳନାତ୍ମକ ପରିମିତତା ସତ୍ତ୍ୱେ ଏହାର ପରିବେଷଣରେ ରହିଛି ଅଧିକ ତୀବ୍ର ଓ ଶାଣିତ ଭଙ୍ଗୀ । ଭାଷା, କଥନ ଶୈଳୀ ଓ ବ୍ୟଂଜନାରେ ରହିଛି ଅଧିକ କଳାତ୍ମକ ଔଜ୍ଜ୍ୱଲ୍ୟ ।

ଗଳ୍ପ ନାୟକ ବା ପ୍ରୋଟାଗନିଷ୍ଟ୍ ଯେଉଁ ଅଲୌକିକ ଅନୁଭୂତି ଅର୍ଜନ କରିଛି, ତାହାକୁ ପ୍ରଚୁର ଭାବେ ବାସ୍ତବ ଓ ସତ୍ୟାଶ୍ରୟୀ ବୋଲି ପ୍ରତିଷ୍ଠିତ କରିବା ଲାଗି ନାୟକର ଘୋର ନିର୍ଭୟ-ଭାବକୁ ପ୍ରଥମରୁ ଉପସ୍ଥାପିତ କରି ଦିଆଯାଇଛି । ପ୍ରୋଟାଗନିଷ୍ଟ୍ ତା'ର ପ୍ରାକ୍ତନ ଛାତ୍ର ଭୟାଳୁ ଅତିରିକ୍ତ ତହସିଲ୍ଦାର୍ ଅମିୟ ଚାଟାର୍ଜୀକୁ କହେ : "ମୁଁ ବୁଝିଲି, ଭୂତ ପ୍ରେତ କଥା କହୁଛ ତ ? ଚାହିଁଲେ ଦେଖିଥାନ୍ତି, ନଚାହିଁଲେ ନାହିଁ । ସେଗୁଡ଼ା ସବୁ ଦୁର୍ବଳ ମନର କିମିଆଁ ।" ଅମିୟ ଭୟାର୍ତ୍ତ ସାବ୍ୟସ୍ତ ହେବା ଓ ପ୍ରୋଟାଗନିଷ୍ଟ୍ ପ୍ରବଳ ସାହସୀ ପ୍ରମାଣିତ ହେବା ଏଠାରେ ଗୋଟାଏ ମୁଦ୍ରାର ଦୁଇଟି ପାର୍ଶ୍ୱ ଭଳି ପରସ୍ପର ଘନିଷ୍ଠ ଭାବେ ସମ୍ବନ୍ଧିତ ଏବଂ ଏହା ପରେ ଅମିୟର ଘୋର ସଂତ୍ରସ୍ତ ହୋଇପଡ଼ିବାର ପାଳି । "ଅମିୟର କଲିଜା ପଞ୍ଜରାରେ ବାଡ଼େଇ ହେଉଥିବା ମୁଁ ଶୁଣିପାରୁଥିଲି । ଅମିୟ ମୋ ଆଡ଼କୁ ଟିକେ ଚାହିଁ ଘୁଞ୍ଚି ଆସିଲା । ତାକୁ ଛପ୍‌କିନା ଧରିଦେଇଥିଲେ ସେ ମୂର୍ଚ୍ଛା ହୋଇଯାଇଥାନ୍ତା ।"

ରାଜବାଟିର ଜଗୁଆଳି ଗୋପାଳ ସହ ବେଶ୍ ସନ୍ତୁଷ୍ଟ ଓ ନିଶ୍ଚିନ୍ତ ମୁହୂର୍ତ୍ତମାନ ବିତାଇଛି ଗଳ୍ପ-ନାୟକ । ଅତି ସୁସ୍ୱାଦୁ ପରଠା ଓ ମାଂସ ତରକାରି କିଣିଆଣି ସେ ତାକୁ ଖୁଆଇଛି । କିନ୍ତୁ ରାତିରେ ରାଜବାଟିରେ ଘଟିଯାଇଛି ନାନା ଅଲୌକିକ ଘଟଣା । ଅଥଚ ସକାଳକୁ ଯେଉଁ ପରିସ୍ଥିତିରେ ଗୋପାଳ ନାମକ ରାଜବାଟି ଜଗୁଆଳି ସୁଦୂର ଅତୀତର ଏକ ନିଶ୍ଚିହ୍ନ ଚରିତ୍ର ବୋଲି ଜଣାପଡିଛି, ସେଥିରେ ନାୟକର ଦୁଃସାହସୀ ମେରୁଦଣ୍ଡ ସୁଦ୍ଧା ଠକ୍ ଠକ୍ ହୋଇ କଂପିଛି ଓ ଦେହରୁ ନିଆଁହୁଳା ଖସିପଡ଼ିଛି ।

ଚନ୍ଦ୍ରଶେଖରଙ୍କ ଭାଷାବିନ୍ୟାସ ଓ ଅଭିବ୍ୟଞ୍ଜନାର ଅନନ୍ୟତା ଆସ୍ୱାଦନ ଲାଗି ଗଳ୍ପଟିରୁ ଅଳ୍ପ ଦୃଷ୍ଟାନ୍ତ ଆସନ୍ତୁ ନେବା । "ଖାଇସାରି ମୁଁ ବୋଧେ ସେଇ ଭଙ୍ଗୀରେ ଉଠିଲି । ଧୋତି ସାମାନ୍ୟ ଟେକି ହୋଇ ଯାଇଥିଲା । ପାହୁଣ୍ଡ ଟିକିଏ ପ୍ରୟୋଜନରୁ ଲମ୍ବ ପଡୁଥିଲା । ସେତିକିବେଳେ ପରିଚାରିକାମାନେ ସେବାରେ ଖଟିଥିଲେ ମୁଁ ଆପତ୍ତି କରିନଥାନ୍ତି । ମୁଁ ଯାଇ ସିଂହାସନରେ ବସିବା ଠାଣିରେ ବସିଗଲି । ଗୋଟାଏ ଗୋଡ଼ ଭାଙ୍ଗି ଖଟ ଉପରେ ରଖିଥାଏ । ବାମ ହାତରେ ଭରାଦେଇ ଆଉଜି ବସିଥାଏ । ଡାହାଣ ହାତ ନିଶ ଉପରେ ସାଉଁଳି ଆଣିଥିଲେ ଭୂମିକା ସମ୍ପୂର୍ଣ୍ଣ ହୋଇଯାଇଥାନ୍ତା ।"

''ଅଗଷ୍ଟ ମାସରେ ଅଶିଣ ଅଶିଣ ଲାଗୁଥିଲା । ମନେ ହେଉଥିଲା, ଛାତକୁ ଗଲେ ଜହ୍ନ ଦେହରେ ଘଷି ହୋଇଯିବ । ପବନ ବାସୁଥିବ ଅଜ୍ଞାତ ଅରଣ୍ୟ ପରି ।''

ଗଳ୍ପଟିର ସଫଳତା ସପକ୍ଷରେ ଗଳ୍ପଟିକୁ ପ୍ରତ୍ୟକ୍ଷ ଭାବେ ପଢ଼ିବାକୁ ପରାମର୍ଶ ଦେବାଠୁ' ବଳି ଆଉ କିଛି ବକ୍ତବ୍ୟ ମୋର ନାହିଁ ।

ଗ୍ରନ୍ଥର ଶୀର୍ଷକ ଗଳ୍ପ 'କ୍ରମଶଃ ଗଭୀର ନଈ' କେବଳ ଆକାରରେ ବଡ଼ ନୁହେଁ, ଉପନ୍ୟାସର ପ୍ରଶସ୍ତ କ୍ୟାନ୍‌ଭାସ୍‌ଟିଏ ହିଁ ତା' ଭିତରୁ ଦିଶିଯାଏ, ଯଦିଓ ଚରିତ୍ରମାନଙ୍କର ଖୁବ୍ କୋଳାହଳ ସେଥିରେ ନାହିଁ । ସରଳ ରେଖାଟିଏ ଆଙ୍କି ହେବାକୁ ଆରମ୍ଭ କରି ସେଥିରେ ଯେଉଁ କାରୁଣ୍ୟ ଓ ଜଟିଳତା ଅନୁପ୍ରବେଶ କରିଛି ତାହା କାହାଣୀଟିକୁ କରିଛି ସଂଘାତମୟ ଓ ସ୍ମରଣୀୟ । ପତ୍ନୀ ସୁରଞ୍ଜନାଙ୍କ ବିୟୋଗ ପରେ ଦେବୀପ୍ରସାଦ ଅନେକ ସମୟରେ ତାଙ୍କ ଉପସ୍ଥିତି ଆଖପାଖରେ ଅନୁଭବ କରିଛନ୍ତି । କେବେ ତାଙ୍କର ହସ ଶୁଭିଯାଇଛି ତ' କେବେ ତାଙ୍କର ସଂଳାପ; ଅଥବା କେବେ ଅତି ପାଖରେ ତାଙ୍କର ନିଃଶ୍ୱାସ । ମାତ୍ର ଏସବୁକୁ ଅଲୌକିକତାର ଶ୍ରେଣୀଭୁକ୍ତ କରାଯିବା ଅପେକ୍ଷା ଏକ ମନସ୍ତାତ୍ତ୍ୱିକ ଶୃଙ୍ଖଳ୍ୟ ଓ ଅବଚେତନର ଏକ ଅସ୍ଥିରତା ଭାବେ ଆଖ୍ୟାୟିତ କରାଯିବା ଅଧିକ ଶ୍ଳାଘ୍ୟ ବୋଲି ଏହି ଆଲୋଚକ ମନେ କରେ ଏବଂ ତାହା ହିଁ ଗଳ୍ପର ପରିବେଶକୁ କରିଛି ଆବେଗଗର୍ଭିତ ଓ ପ୍ରଭାବଶାଳୀ । ଅନ୍ୟାନ୍ୟ ଗଳ୍ପ ପରି ଏଥିରେ ମଧ୍ୟ ଶ୍ରୀ ରଥଙ୍କ ପ୍ରତ୍ୟେକ ଉଚ୍ଚାରଣରେ ଗୁଂଫିତ ହୋଇ ରହିଛି ପ୍ରାଣ ଓ କାରୁଣ୍ୟ, ସଂବେଗ ଓ ସଂବେଦନା । ଦୃଷ୍ଟାଂତଟିଏ ନିଆଯାଉ— ''ହାତରେ ମାଟି ଲାଗିଗଲା । ସେ ଚ୍ୱହିଁଲେ ହାତଟା ପୋଛିଦେବା ପାଇଁ । କାଠ(ବେଂଚ୍ୱର) ଦାଢ଼ରେ ନଦିଶିଲା ପରି ଭିତରପଟକୁ ପୋଛି ଦେବେ ? ନା ତଳେ ପୋଛିଦେବେ ? ସେ ସ୍ଥିର କରି ନପାରି ହାତରୁ ସ୍ୟାହି ପୋଛିବା ଅଭ୍ୟାସରେ ମୁଣ୍ଡପଛକୁ ହାତ ଟେକି ନେଉଥିଲେ । କିଂତୁ ହସ ମାଡ଼ିଲା । ଠିକ୍ ସେତିକିବେଳେ ଚ୍ୱପା ହସଟିଏ ସେଇପାଖରୁ କୋଉଠୁ ଶୁଭିଲା । ତାଂକ ନିଶ୍ୱାସ ଅଟକି ଗଲା । ଦେହ କାଠେଇଗଲା ମୁହୂର୍ତ୍ତକ ପାଇଁ । ପରମୁହୂର୍ତ୍ତରେ ସେମିତି ସେ କାଦୁଆଟିପ ଟେକି ଗୋଟିଏ ଜୋତା ପିନ୍ଧି ଠିଆ ହୋଇ ପଡ଼ିଲେ ।''

ଏହି ସଂକ୍ଷିପ୍ତ ଆକଳନରେ ବିଗ୍ରହର ଅଧିକ ବିସ୍ତୃତି ଲାଗି ସୁଯୋଗ ସୀମିତ । ତେଣୁ ଅଗତ୍ୟା ସେ ସବୁରୁ ନିବୃତ୍ତ ରହୁଛି । ଶେଷତଃ ଏତିକି କହିବାକୁ ଚ୍ୱହିଁବି ଯେ ଗଳ୍ପକଳାର ସମସ୍ତ ଗୁରୁତ୍ୱପୂର୍ଣ୍ଣ ବିଭାବ ଓ ଉପାଦାନର ବିଗ୍ରହରେ ଚନ୍ଦ୍ରଶେଖର ରଥ ଚଳନ୍ତି ଗଳ୍ପ ସାହିତ୍ୟ କ୍ଷେତ୍ରରେ ଏକ ବିଶେଷ ଓ ସ୍ୱତନ୍ତ୍ର ଆସନର ଦାବୀ ରଖନ୍ତି ଓ ମନେହୁଏ, ଆସନଟି ପାଇଛନ୍ତି ମଧ୍ୟ । ଭଲ ଗଳ୍ପରେ ଏକ ଆକସ୍ମିକ ଆରମ୍ଭ, ଉତ୍କଣ୍ଠାପୂର୍ଣ୍ଣ ମଧ୍ୟଭାଗ ଓ ସୂଚନାତ୍ମକ ଉପସଂହାର ଥାଏ । ଚନ୍ଦ୍ରଶେଖରଙ୍କ କ୍ୱଚିତ୍ ଗଳ୍ପ ଏହାର

ବ୍ୟତିକ୍ରମ ବୋଲି ମନେହୁଏ । କଥା ବସ୍ତୁରେ ନୂତନତା ସାଙ୍ଗକୁ ଘଟନାପ୍ରବାହର ଉତ୍କଣ୍ଠିତ ଗାମ୍ଭୀର୍ଯ୍ୟ, ଚରିତ୍ର ଚିତ୍ରଣର ଅସାଧାରଣ ନିପୁଣତା, ପରିଣତିର ସ୍ତବ୍ଧକର ଅକଳ୍ପନୀୟତା ଏବଂ ସର୍ବୋପରି ଅତ୍ୟନ୍ତ ଉତ୍ତୀର୍ଣ୍ଣ ଭାଷା-ଶୈଳୀ, ସଂଳାପ, ବ୍ୟଞ୍ଜନା ତଥା ସାମଗ୍ରିକ ପରିବେଷଣର ପ୍ରାଣବଂତ ଉଜ୍ଜ୍ୱଳତା ତାଙ୍କ ଗଳ୍ପଗୁଡ଼ିକୁ ଅନନ୍ୟ ଉତ୍କର୍ଷରେ ମଂଡିତ କରିଛି ।

ପ୍ରାୟ ହଜାରେ ବର୍ଷର ବୟସ୍କ-ଓଡ଼ିଆ—ଭାଷାକୁ ଯଦି ଆମେ ଏହାର ଶବ୍ଦ ସମ୍ଭାର, ଭାବ ପ୍ରକାଶ କ୍ଷମତା ତଥା ବ୍ୟାକରଣ ଶୁଦ୍ଧତା ପ୍ରଭୃତି ଦିଗରୁ ବିଚାରକରି ପୃଥିବୀର ଅନ୍ୟତମ ଶ୍ରେଷ୍ଠ ଭାଷାର ମାନ୍ୟତା ଦେଇପାରିବା, ତାହେଲେ ବିଦେଶୀ ଭାଷାମାନଙ୍କରେ ଓଡ଼ିଆ ସାହିତ୍ୟର ପ୍ରଚୁର ଅନୁବାଦ ଓ ପ୍ରସାର ବିନା ସୁଦ୍ଧା ଚନ୍ଦ୍ରଶେଖର ରଥଙ୍କୁ ଆମେ ଆନ୍ତର୍ଜାତିକ ସ୍ତରର ଜଣେ ଶ୍ରେଷ୍ଠ କଥାଶିଳ୍ପୀର ମର୍ଯ୍ୟାଦା ମଧ୍ୟ ସହଜରେ ପ୍ରଦାନ କରିବା ବସ୍ତୁତଃ ଓଡ଼ିଆ ଭାଷାରେ ମଣିଷର ନାନା ସୂକ୍ଷ୍ମ ତଥା ସ୍ଥୂଳ ଅନୁଭୂତି ଓ ଭାବନାକୁ ଗଭୀରତର ତଥା ପ୍ରାଣବନ୍ତ ଭାବେ ଅଭିବ୍ୟକ୍ତ କରିବାର ସମ୍ଭାବନା ଅସାଧାରଣ ଉତ୍କର୍ଷରେ ଦୀପ୍ତିମାନ୍ ହୋଇ ଚିରାଚରିତ ବାଙ୍ମୟଜଗତକୁ କିଭଳି ମହାର୍ଘ ଅନନ୍ୟତାରେ ଅଭିଷିକ୍ତ କରିପାରେ ତାହା ଚନ୍ଦ୍ରଶେଖର ରଥଙ୍କ ଗଳ୍ପ ପଢ଼ିଲେ ଅନାୟାସରେ ସ୍ପଷ୍ଟ ହୁଏ ଓ ଏହି ଐଶ୍ୱର୍ଯ୍ୟକୁ ନେଇ ଗର୍ବ ଅନୁଭବ କରିବାର ଦ୍ୱନ୍ଦ୍ୱହୀନ କାରଣମାନ ଆମକୁ ସହଜରେ ମିଳିଯାଏ ।

*ଓଡ଼ିଆ ବିଭାଗ,*
*ରେଭେନ୍‌ସା ଜୁନିୟର କଲେଜ, କଟକ-୩*

***

# ପୃଥକପ୍ରତ୍ୟୟର ପରିଧି : ଏ ଯେଉଁ ପୃଥିବୀ

*ଅଧ୍ୟାପକ ନାରାୟଣ ପଣ୍ଡା*

ଆଧୁନିକ ଓଡ଼ିଆ ପ୍ରବନ୍ଧ ସାହିତ୍ୟକୁ ଯେଉଁ କେତେଜଣ ପ୍ରାବନ୍ଧିକ ଲେଖନୀ ଚାଳନାକରି ସୁ-ସମୃଦ୍ଧ କରିଛନ୍ତି ସେମାନଙ୍କ ମଧ୍ୟରେ ସାରସ୍ୱତ ସାର୍ଥକ ପ୍ରାବନ୍ଧିକ ଚନ୍ଦ୍ରଶେଖର ରଥ ଅନନ୍ୟ ପ୍ରତିଭା । ମାର୍ଜିତ ଗଦ୍ୟ ଶୈଳୀ ଓ ନିପୁଣ କଥକତା ପ୍ରାବନ୍ଧିକଙ୍କ ପ୍ରବନ୍ଧଗୁଡ଼ିକର ବୈଶିଷ୍ଟ୍ୟ । ପ୍ରବନ୍ଧଗୁଡ଼ିକର ଶୈଳୀ ସ୍ୱତନ୍ତ୍ର ଓ ଅନନ୍ୟ । ସ୍ୱଚ୍ଛତା ଓ ନୂତନତା ହିଁ ତାଙ୍କ ପ୍ରବନ୍ଧରଚନାର ଅନ୍ୟ ଏକ ବିଶେଷତ୍ୱ । ପ୍ରବନ୍ଧଗୁଡ଼ିକରେ ସରଳ, ପ୍ରାଞ୍ଜଳ ଅଥଚ ଗମ୍ଭୀର ଭାଷା ସଂଯୋଜନା ହୋଇଥିବାରୁ ପ୍ରତ୍ୟେକ ରଚନା ସୁଖପାଠ୍ୟ ଓ ପ୍ରାଣସ୍ପର୍ଶୀ ।

'ଦୃଷ୍ଟି ଓ ଦର୍ଶନ (୧୯୭୧) ' ଏ ଯେଉଁ ପୃଥିବୀ (୧୯୭୫) 'ମୁଁ ସତ୍ୟଧର୍ମା କହୁଛି' (୧୯୭୭) 'ମଧୁ ସନ୍ଧାନ' (୧୯୭୮) 'ଉତ୍ତର ଅରଣ୍ୟ' (୧୯୮୦) 'ଅଶ୍ରୁତସ୍ୱର' (୧୯୮୧) 'କ୍ରୀତଦାସର ସ୍ୱପ୍ନ' (୧୯୮୧) 'ରଥ ସପ୍ତକ' (୧୯୯୨) ପ୍ରଭୃତି ପ୍ରବନ୍ଧ ସଂକଳନ ଗୁଡ଼ିକ ପ୍ରାବନ୍ଧିକଙ୍କ ପ୍ରଜ୍ଞାଦୀପ୍ତ ପ୍ରତିଭା ଓ ପ୍ରତିଭାଦୀପ୍ତ ପ୍ରଜ୍ଞାର ଉର୍ଜସ୍ୱଳ ଦୃଷ୍ଟାନ୍ତ ।

ଓଡ଼ିଆ ପ୍ରବନ୍ଧ ସାହିତ୍ୟକୁ ' ଏ ଯେଉଁ ପୃଥିବୀ (୧୯୭୫) ଅନ୍ୟତମ ଅନୁପମ ଅଭିନବ ଅର୍ଘ୍ୟ । କୋଡ଼ିଏଟି ପ୍ରବନ୍ଧକୁ ପାଥେୟକରି ' ଏ ଯେଉଁ ପୃଥିବୀ' ପ୍ରବନ୍ଧ ସଂକଳଟି ଋଦ୍ଧିମନ୍ତ । ତାଙ୍କ ସାହିତ୍ୟର ମୂଲ୍ୟାଙ୍କନ କାଳରେ ଏ ଯେଉଁ ପୃଥିବୀରେ ରଚନା ସମ୍ପର୍କରେ ସେ ପ୍ରକାଶ କରିଛନ୍ତି... ସେଭଳି ସତ୍ୟଦ୍ରଷ୍ଟା ନହେଲେ ସବୁ ବିଷୟରେ ରଚନା ଲେଖିବା ସମ୍ଭବ ନୁହେଁ; କବିତା ଲେଖିବା ମଧ୍ୟ ସମ୍ଭବ ନୁହେଁ । କାରଣ ସେ ଏକ ଯୋଗାଯୋଗ ବ୍ୟାପାର । କେତେବେଳେ କେମିତି ଗୋଟାଏ ଆଶ୍ଚର୍ଯ୍ୟ ମୁହୂର୍ତ୍ତରେ ସୃଜନ କେନ୍ଦ୍ରଟି ଚମକିତ ହୁଏ । ସାଧାରଣ ବସ୍ତୁଟିଏ ଅସାଧାରଣ ବିଭୂତି ପ୍ରକଟକରେ ଦେଖୁ ଦେଖୁ ସେ ସମଗ୍ର ଚେତନାକୁ ଆଚ୍ଛନ୍ନ କରେ, ବିବଶ କରେ ଏବଂ ଏଭଳି ଅବିଷ୍ଟ ଅବସ୍ଥାରେ ହିଁ ରଚନାଟିଏ ଲେଖାଯାଏ, ଗଳ୍ପଟିଏ ଲେଖାଯାଏ କିମ୍ବା କବିତାଟିଏ ମଧ୍ୟ ଲେଖାଯାଏ । ସବୁବେଳେ ତ ମନରେ ଫୁଲ ଫୁଟେ ନାହିଁ । ଫୁଟିଲେ ମଧ୍ୟ ସବୁ ଫୁଲରେ କସି ଧରେ ନାହିଁ । ସବୁ କସିଗୁଡ଼ିକ ବି ପାଚି ପାରନ୍ତି ନାହିଁ । କିମ୍ବା ସବୁଫଳ ବୀଜବନ୍ତ ହୁଅନ୍ତି ନାହିଁ । ଏଣୁ ବିଷୟ ନିର୍ବାଚନ କରିବା ସେଭଳି କୌଣସି ସାର୍ବଭୌମ ସ୍ୱାଧୀନ

ଅଧିକାର ନାହିଁ । ଅନ୍ୟପକ୍ଷ ରାଜିନଥିଲେ ଗୋଟାଏ ଘର୍ମାକ୍ତ ଧର୍ଷଣରେ ଆନନ୍ଦ-ଜନିତ ସୃଷ୍ଟି କିମ୍ବା ସୃଷ୍ଟି ଜନିତ ଆନନ୍ଦ କାହିଁ ? ଏ ମୌଳିକ ବିଗ୍ରହଟି ସବୁପ୍ରକାର ସୃଜନଧର୍ମୀ ସାହିତ୍ୟ ପାଇଁ ସମାନ ଭାବରେ ପ୍ରଯୋଜ୍ୟ ।

ନିଜ ଭିତରେ ଗୋଲାପଟିଏ ଫୁଟାଇ ଯାଉ ଯାଉ ଯଦି କୌଣସି ଶିଶିରାକ୍ତ ଶ୍ରୀମନ୍ତ ଗୋଲାପଟିଏ ସ୍ୱାଗତ ଜଣାଇଲା ତେବେ ସେଇ ଆଚମ୍ବିତ ଯୋଗାଯୋଗଟି ହୋଇଯାଏ । ତେଣିକି ଭଅଁର ଆସେ; ସୂର୍ଯ୍ୟ ଆସେ । ଆକାଶ ସାରା ଗୋଲାପ ଫୁଟିଯାଏ । ସାହିତ୍ୟରେ ଜନ୍ମନିଏ ଗୋଟିଏ ଅଦ୍ଭୁତ ଗୋଲାପ । ନହେଲେ ଉଭୟର ଅଜ୍ଞାତରେ ଉଭୟେ ଝରିଯାନ୍ତି, ତା'ର ହିସାବ କେହି ରଖେ ନାହିଁ । ଏ ଯୋଗାଯୋଗ ପାଇଁ ବାଛ-ବିଗ୍ରହ ନଥାଏ । ଗେଣ୍ଡା ଉପରେ ଟେନିସନ୍ କବିତା ଲେଖନ୍ତି । 'ଶୂନ୍ୟ' ଉପରେ ଆମେ ରଚନା ଲେଖୁ । ପ୍ରଜାପତି ଘଟସୂତ୍ର କଥା । ଘଟକୁ ଘଟ ସହିତ ସଂଯୁକ୍ତ କରୁଥିବା ଏ ସୂତ୍ରଟି ସବୁବେଳେ ଏକ ରହସ୍ୟ । ୧ ।

ପ୍ରାବନ୍ଧିକ ଦର୍ଶନ ଚିନ୍ତନ, ମନନ ଭିତରେ ସୃଜନ ପ୍ରକ୍ରିୟା କଥା ' ଏ ଯେଉଁ ପୃଥିବୀ' ପ୍ରବନ୍ଧ ସଂକଳନର ମୁଖବନ୍ଧରେ ପ୍ରକାଶ କରିଛନ୍ତି । ଅନନ୍ୟ ଅନୁଭବ ଓ ଚିନ୍ମୟ ଚିନ୍ତନ ପ୍ରବନ୍ଧ ପ୍ରସ୍ତକର ମୁଖବନ୍ଧ ଟିକୁ ରସୋତ୍ତୀର୍ଣ୍ଣ କରିଚି । କୌଣସି ଗୃହ ପ୍ରବେଶ ପୂର୍ବରୁ ଡ୍ରଇଁରୁମ୍ ଅବଲୋକନ କରି ଅତିଥି ଗୃହ ସଂପର୍କରେ ଅବଗତ ହେଲାପରି, ସୁଧି ପାଠକ, 'ଏ ଯେଉଁ ପୃଥିବୀ' ପ୍ରବନ୍ଧ ପଠନ ପୂର୍ବରୁ 'ମୁଖବନ୍ଧ' ପଠନପରେ ସେ ନିଶ୍ଚିତ ଭାବରେ ପ୍ରବନ୍ଧ ଗୁଡ଼ିକ ସଂପର୍କରେ ଅବଗତ ହେବ ଏଥିରେ ତିଳେ ହେଲେ ସନ୍ଦେହର ଅବକାଶ ନାହିଁ ।

ଶୈଳୀ ଲେଖକର ନିଜସ୍ୱ । ପ୍ରତ୍ୟେକ ସ୍ରଷ୍ଟାର ଶୈଳୀ ସ୍ୱତନ୍ତ୍ର । ସ୍ରଷ୍ଟାର ଶୈଳୀ ପାଠକକୁ ଆକୃଷ୍ଟକରେ । ଶୈଳୀ ହିଁ ସ୍ରଷ୍ଟିକୁ ମହତ କରେ । ରଚନା ଶୈଳୀ ପ୍ରାବନ୍ଧିକଙ୍କର ବ୍ୟକ୍ତିତ୍ୱ । ପ୍ରାବନ୍ଧିକ ଚନ୍ଦ୍ରଶେଖର ରଥ ଜଣେ ଅନନ୍ୟ ଚିନ୍ତାନାୟକ, ବିଚକ୍ଷଣ ଅଜସ୍ରସ୍ରାବୀ ସ୍ରଷ୍ଟା । ଗଳ୍ପରଚନାରେ ସେ ଯେପରି ସିଦ୍ଧହସ୍ତ, ପ୍ରବନ୍ଧ ରଚନାରେ ସେପରି ଧୂରୀଣ । ତାଙ୍କ ପ୍ରବନ୍ଧର ସଂଜ୍ଞା ସ୍ୱତନ୍ତ୍ର । ସେ ତାଙ୍କର ପ୍ରବନ୍ଧଗୁଡ଼ିକୁ 'ରଚନା' କହିଛନ୍ତି । ତାଙ୍କ ମତରେ ରଚନା କରିବା ହେଉଛି କବିଧର୍ମ । ସେଥିରେ ସେ ଅବାଧ ସୃଷ୍ଟି କରିବାକୁ ଗ୍ରହେଁ । ସାଧାରଣ ଭାବରେ ପ୍ରବନ୍ଧ କହିଲେ ବୁଝାଏ ' ଜ୍ଞାନଗର୍ଭ' ରଚନା । ସେ ସ୍ୱପ୍ରବନ୍ଧ ସଂପର୍କରେ ଅଭିମତ ପ୍ରକାଶ ପୂର୍ବକ କହନ୍ତି; ମନ ରଞ୍ଜେଇବା ଏହାରଉଦ୍ଦେଶ୍ୟ ନୁହେଁ । ଆଉ ମଧ୍ୟ ଉଦ୍ଦେଶ୍ୟ ନୁହେଁ ଭାରି ଗମ୍ଭୀର ମୁଦ୍ରାରେ ନାକ ଆଖି ଚିପି କେବଳ ପ୍ରଣବ ମାଧ୍ୟମରେ ନିଛକ ଜ୍ଞାନ ପିଆଇବା । ରସେଲ ଭଳି ବହୁ ଜ୍ଞାନୀ ଲୋକଙ୍କୁ ଆଖି ମିଟିକା ମାରି ବଡ଼ ବଡ଼ କଥା କହିବାର ଯେ ଶୁଣିଛି ତାର ବଳେ ବିଶ୍ୱାସ ଜମିଯିବ ଯେ ଜ୍ଞାନ

ପାଇଁ ଏତେ ଗମ୍ଭୀର ମୁଦ୍ରାର ପ୍ରୟୋଜନ ନାହିଁ । ଅତଏବ ନିଷ୍ଠାର ସହିତ ଜୀବନର ବିଭିନ୍ନ ବିଭାବକୁ ମିଶେଇ ଅନୁଭବ କଲାବେଳେ ଯଦି କେତେବେଳେ କିଛି ଦିଶିଗଲା ତାକୁ ନେଇ ନିଜ ଭଙ୍ଗୀରେ ଖଣ୍ଡିଏ ରଚନା ଗ୍ରାହକ ପାଠକ ପାଖରେ ପହଁଞ୍ଚାଇ ଦେଲେ କ୍ଷତି କଣ ।''

ପ୍ରତ୍ୟେକ ସ୍ରଷ୍ଟାର ସୃଷ୍ଟିକ୍ଷେତ୍ର ଭିନ୍ନ ଭିନ୍ନ । କେଉଁ ମୁହୂର୍ତ୍ତରେ କେଉଁ ଦୃଶ୍ୟ ସ୍ରଷ୍ଟାକୁ ଆକୃଷ୍ଟକରେ କିଏ କହିବ ? ଯାହା ଜଣକ ଆଖିକୁ ସୁନ୍ଦର ତାହା ଅନ୍ୟ ଆଖିକୁ ମୋହିତ କରିବ ସେପରି କିଛି ମାନେନାହିଁ । ସୁନ୍ଦରର ସଂଜ୍ଞା ସମସ୍ତଙ୍କ ପାଖରେ ସଂପୂର୍ଣ୍ଣ ଭିନ୍ନ । 'ଏଯେଉଁ ପୃଥିବୀ' ପ୍ରବନ୍ଧ ସଂକଳନର ମୁଖବନ୍ଧ-ରଚନା ସଂପର୍କରେ ପ୍ରକାଶ କରିଛନ୍ତି :'' ସାଧାରଣ ନିୟମରେ ଅସାଧାରଣ ବ୍ୟତିକ୍ରମ ମଧ୍ୟ ଦେଖାଦିଏ । ବ୍ୟକ୍ତି ବିଶେଷଙ୍କର ରୁଚି କିମ୍ବା ବସ୍ତୁ ବିଶେଷଙ୍କର ଆବେଦନ ଭିତରେ ଅନେକ ତାରତମ୍ୟ ଥାଏ । ଏଣୁ ଯାହା ସ୍ଥପତିକୁ ମୁଗ୍ଧକରେ ତାହା ଚିତ୍ରଶିଳ୍ପୀକୁ ଆକୃଷ୍ଟ କରେନାହିଁ । ଯାହା କବିକୁ ପ୍ରଗ୍ରେଦିତ କରେ ତାହା କଣ୍ଠଶିଳ୍ପୀକୁ ପ୍ରଭାବିତ କରେନାହିଁ । ପୁଣି ଜଣେ କବିକୁ ଯାହା ଅଭିଭୂତ କରେ ତାହା ଅନ୍ୟଜଣକୁ ଆଦୌ ସ୍ପର୍ଶ କରିନପାରେ । ସେଇ କବିଙ୍କୁ ଯାହା ଆଜି ଏଇଠି ଆଲୋଡ଼ିତ କରୁଛି ତାହା ହୁଏତ ଆଉ କେବେ ବା ଆଉ କେଉଁଠି ମୂଳରୁ ଛୁଇଁନପାରେ । ଏ ସମସ୍ତେ କିନ୍ତୁ ସ୍ରଷ୍ଟା । ସେଇ ବିଗ୍ରରରେ ଅନ୍ତତଃ, ଅସଂଖ୍ୟ ଅସ୍ରଷ୍ଟାମାନଙ୍କଠାରୁ ଭିନ୍ନ, ଆଉ ଗୋଟିଏ ରାଜ୍ୟର ପ୍ରାଣୀ । ତେବେ ଏପ୍ରକାର ତାରତମ୍ୟର କାରଣ ହେଲା ସେମାନଙ୍କର କ୍ଷେତ୍ର ସ୍ୱାତନ୍ତ୍ର୍ୟ । ଭିନ୍ନ ଭିନ୍ନ କ୍ଷେତ୍ରରେ ସେମାନେ ବିଚରଣ କରୁଥାନ୍ତି । ଏଣୁ ପରସ୍ପର ଭିତରେ ବୁଝାମଣାର ଅଭାବ ନ ଥିଲେ ମଧ୍ୟ ରୁଚି, ପ୍ରକାଶଭଙ୍ଗୀ ଏବଂ ମାଧ୍ୟମର ଐକ୍ୟ ସମ୍ଭବ ନୁହେଁ । ପ୍ରତ୍ୟେକଙ୍କର ବ୍ୟକ୍ତିତ୍ୱ ମାନନୀୟ ଏବଂ ସ୍ୱତନ୍ତ୍ର'' ।୩ ।

ଜୀବନ ଓ ଜଗତ ପ୍ରତି ଥିବା ବ୍ୟକ୍ତିଗତ ଅନୁଭୂତିକୁ ପ୍ରାବନ୍ଧିକ ସରସ ସୁନ୍ଦର ଭାବରେ ପ୍ରବନ୍ଧରେ ଉପସ୍ଥାପନା କରିଛନ୍ତି । ଶବ୍ଦକୁ ପୁଂଜି କରି କିପରି କବିତା ଓ ରଚନା ସୃଷ୍ଟିହୁଏ ତାହାର ଏକ ମନୋଜ୍ଞ ଚିତ୍ର ପ୍ରାବନ୍ଧିକ 'ଏ ଯେଉଁ ପୃଥିବୀ' ପ୍ରବନ୍ଧ ସଂକଳନର 'ମୁଖବନ୍ଧ ରଚନା ସଂପର୍କରେ' ପ୍ରକାଶ କରିଛନ୍ତି; ''ଏଣୁ କବି ହୁଏତ ଭାବ ରାଜ୍ୟରେ ଆବେଗ ସଂବେଗକୁ ନେଇ ସୃଷ୍ଟି କରନ୍ତି । ତାଙ୍କ ଭାଷା କବିତା । ଅନ୍ୟପକ୍ଷେ ରଚନାର ରଚୟିତା ଚିନ୍ତା ଏବଂ ଚେତନାର ବିଳାସ କରେ । ତାର ଭାଷାଗଦ୍ୟ 'ଯା'ର ଅର୍ଥ ନୁହେଁ ଯେ କବିତାରେ ଚିନ୍ତା ନାହିଁ; କିମ୍ବା ରଚନାରେ ଆବେଗ ନାହିଁ । କେବଳ ଭାଗ ମାପରେ ଊଣା ଅଧିକ ହେବାର ପରିଲକ୍ଷିତ ହୁଏ । ଭାଷା ମଧ୍ୟ ସେପରି କୌଣସି

ପଥର କାନ୍ଥ ଭିତରେ ଅବରୁଦ୍ଧ ନୁହେଁ । କବିତା ଯେମିତି ଗଦ୍ୟାରୁଢ଼ ହେବାର ଦେଖାଯାଏ, ଗଦ୍ୟମଧ୍ୟ ସେଇଭଳି କବିତାକ୍ରାନ୍ତ ହେବାର ଦେଖାଯାଏ । ମଝିରେ ପାଣିଗାରଟିକୁ କେବଳ ଡେଇଁଯିବା କଥା । ଗୋଟାଏ ଦିଗରେ ହୁଏତ ମନ୍ତ୍ରପୂତ ବିଶୁଦ୍ଧ କବିତା, ତରଳ, ମୃଦୁଳ ଏବଂ ସୂକ୍ଷ୍ମ ଏବଂ ଅନ୍ୟଦିଗରେ ଗ୍ରିକୋଣିଆ ନିବିଡ଼ଗଦ୍ୟ । ଏ ଦୁଇଟି ଦୂରତମ ବିନ୍ଦୁ ମଧ୍ୟରେ ଅନେକ ପ୍ରଶସ୍ତ ସାଧାରଣ ଭୂମି । ସେଇଠି ରଚନା ଲେଖାହୁଏ । ଆଉ ଧାରେ ଘୁଞ୍ଚିଗଲେ ଯାହା ତରଳି ଯାଇ କବିତା ହୋଇ ଯାଆନ୍ତା ତାହାହିଁ ରଚନା'' । ୪ ।

ଏ ଯେଉଁ ପୃଥିବୀ ପ୍ରବନ୍ଧ ସଂକଳନରେ ସ୍ଥାନିତ 'ଏ ଯେଉଁ ପୃଥିବୀ ପ୍ରଥମ ପ୍ରବନ୍ଧ । ପ୍ରାବନ୍ଧିକ ମୌଳିକ ପ୍ରବନ୍ଧ ରଚନାରେ ବେଶ୍ ସିଦ୍ଧହସ୍ତ । ଏ ଯେଉଁ ପୃଥିବୀ ପ୍ରବନ୍ଧରେ ପ୍ରାବନ୍ଧିକ ପୃଥିବୀର ମାନଚିତ୍ର ଅଙ୍କନ କରିଛନ୍ତି । ଲଳିତ ମଧୁର ଭାଷା ପ୍ରବନ୍ଧଟିକୁ ସରସ ସୁନ୍ଦର କରିଛି । ଉପଯୁକ୍ତ ଶବ୍ଦ ବସାଣ ଓ କାବ୍ୟିକ ବାକ୍ୟ ପ୍ରୟୋଗ ପ୍ରବନ୍ଧକୁ ସୁଖପାଠ୍ୟ କରିଛି । ପ୍ରାବନ୍ଧିକ ଚନ୍ଦ୍ରଶେଖର ରଥ ଏ ଯେଉଁ ପୃଥିବୀ ପ୍ରବନ୍ଧରେ ପୃଥିବୀର ରୂପ ଚିତ୍ରଣ କରିବାକୁଯାଇ ପ୍ରକାଶ କରିଛନ୍ତି : ପଟାନ୍ତର ନାହିଁ ଏ ପୃଥିବୀର ଯେତେବେଳେ ଘନନୀଳବର୍ଣ୍ଣ ଆକାଶଗର୍ଭରେ ଧୂମାୟମାନ ବିସ୍ତୃତ ଦିଗଚକ୍ରର ସମଗ୍ର ଆୟତନରେ ଭରିଯାଏ ନିସ୍ପନ୍ଦ ସାଗରର ପ୍ରଗାଢ଼ ନୀଳିମା ଏବଂ ହରିତାୟମାନ ଭୂଖଣ୍ଡର ଘନ ସବୁଜ ବର୍ଣ୍ଣ । ପ୍ରତି ମୁହୂର୍ତ୍ତରେ ବିସ୍ତୃତ ହୋଇଯାଏ ଆକାଶର ଗର୍ଭ । ପୃଷ୍ଠଭୂମି କ୍ରମଶଃ ହୋଇଯାଏ ଦୂରତାହୀନ ଅପରିମେୟ କୃଷ୍ଣତା । ପୃଥିବୀ ଦିଶେ ବର୍ତ୍ତୁଳ ନୀଳବର୍ଣ୍ଣ । ମହାଦେଶ ଗୁଡ଼ିକ ସ୍ୱର୍ଣ୍ଣାଭ ଅଳଙ୍କାର । ମେରୁମଣ୍ଡିତା, ମେଘବଳୟିତା ପୃଥିବୀ ସୂର୍ଯ୍ୟର ଆଶ୍ଳେଷରେ ଦୀପ୍ତିମତୀ ହୋଇଉଠେ । ମହାକାଶର କୃଷ୍ଣ ଅପରିମେୟତା ଭିତରେ ଜ୍ୟୋତିଷ୍କରାଜି ନିସ୍ପନ୍ଦ ଭାସ୍ୱର ଦେଖାଯାନ୍ତି । ପୃଥିବୀ ଆହୁରି ବର୍ତ୍ତୁଳ, ଆହୁରି ଦୂରନ୍ତ, ଆହୁରି ସୁନ୍ଦର ଦିଶେ । ଚନ୍ଦ୍ର ଦିଶେ କ୍ରମଶଃ ଧୂସର ଏବଂ ପ୍ରସାରିତ । ତା'ର ନିରବଚ୍ଛିନ୍ନ ମରୁଭୂମିରେ ଗର୍ତଲାଞ୍ଛିତ ବିଷମ ପର୍ବତ ଉପତ୍ୟକାର ଶ୍ମଶାନ କ୍ରମଶଃ ନିକଟତର ହୋଇଯାଏ । ସେଇଠି ଆଲୋକ ଏବଂ ଅନ୍ଧାର ବିଶୁଦ୍ଧ ଏବଂ ସ୍ୱତନ୍ତ୍ର ପ୍ରତିବେଶୀ । ତାଙ୍କର ମିଳନ ନାହିଁ । ଜଳବାୟୁ ହୀନ ସେ ମୃତଧୂଳିର ରାଜ୍ୟରୁ ରଜତବର୍ଣ୍ଣା ପୃଥିବୀ ଦିଶେ ଅପୂର୍ବ ସୁନ୍ଦର । ମହାକାଶର କୃଷ୍ଣଗର୍ଭରେ ଅତି ଭୟଙ୍କର ନୀରବତା । ସୂର୍ଯ୍ୟ ଏକ ନିର୍ମମ ଉତ୍ତପ୍ତ ଉତ୍ପୀଡ଼କ । ତାରା ନକ୍ଷତ୍ର ଜ୍ୱଳନ୍ତ ସ୍ଫୁଲିଙ୍ଗ । ସମଗ୍ର ବିଶ୍ୱ ତୁଷାର ଶୀତଳ ଉଦାସୀନ ପ୍ରାନ୍ତର । ଏ ସମସ୍ତେ ଜୀବନ ଓ ଜୀବନ ଧର୍ମର ପରିପନ୍ଥୀ । ଏଇ ପୃଥିବୀ କେବଳ ମମତା ସ୍ନିଗ୍ଧା । ତା'ର ପବନ ଗନ୍ଧବହ । ତା'ର ଜଳଧାର ଜୀବନରସରେ ଭରପୂର । ତାର ମୃତ୍ତିକା ରେଣୁ ରେଣୁରେ ପ୍ରାଣବନ୍ତ । ଏଠି ଉଦ୍ଭିଦ ଅକୃପଣ ଫଳଦାନ କରେ । ଅକଳନୀୟ ପୁଷ୍ପ

ସମ୍ଭାରରେ ଏ ପୃଥିବୀ ବର୍ଣ୍ଣୋଜ୍ଜ୍ୱଳ ହୋଇ ରହିଥାଏ । ଏ ଇଟା ଚୂନର ପ୍ରକୋଷ୍ଠ ଗୁଡ଼ିକ ମଣିଷର ଉଷ୍ମତାରେ ସଂଜୀବିତ । ଏଠି ମଣିଷ କଥା କହେ; ପ୍ରେମ କରେ । ଏଠି ଚନ୍ଦନ ଗନ୍ଧ ଦାନକରେ । ଏପୃଥିବୀ ଅନନ୍ୟା । ଯାର ପଟାନ୍ତର ନାହିଁ । ୫ ।

ପ୍ରବନ୍ଧ ରଚନାରେ ଏପରି ଶବ୍ଦ ଚୟନ ଅନ୍ୟତ୍ର ବିରଳ । ଅଦ୍ୱିତୀୟ ପ୍ରାବନ୍ଧିକ ଭାବରେ ପ୍ରାବନ୍ଧିକଙ୍କୁ ପ୍ରବନ୍ଧଗୁଡ଼ିକ ଚିହ୍ନାଇ ଦିଏ । ସେ ତାଙ୍କ ପ୍ରବନ୍ଧରେ ମିଥ୍‌ର ସଫଳ ପ୍ରୟୋଗ କରିଛନ୍ତି । ସେ ପୁରାଣ, ଲୋକକଥା, କିମ୍ବଦନ୍ତୀ, ପ୍ରଭୃତିକୁ ମିଥ୍ ଆକାରେ ତାଙ୍କ ପ୍ରବନ୍ଧରେ ଉପସ୍ଥାପନ କରିଛନ୍ତି ।

ନିର୍ଦ୍ଦିଷ୍ଟ ସାମାଜିକ ଚିନ୍ତାଧାରାକୁ ଓ ମଣିଷର ଆଚରଣକୁ ପ୍ରତିପାଦିତ କଲାବେଳେ ମିଥ୍‌ର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ଏ ସଂପର୍କରେ William Righter ଙ୍କ ମନ୍ତବ୍ୟ ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ । ସେ ପ୍ରକାଶ କରିଛନ୍ତି; "All societies rest on myths. To justify a particular society one needs to identify its basic myths and reflect upon their impact on the current myths and current generation." (Myth & literature 1975 Page - 9) ଉଚ୍ଚକୋଟୀର ଲେଖକ ମିଥର ବିଷୟ ବସ୍ତୁ ଓ ପ୍ରକରଣକୁ ଅବଲମ୍ବନ କରି ନିଜସ୍ୱ ବକ୍ତବ୍ୟକୁ ବଳିଷ୍ଠ ଭାବରେ ପ୍ରକାଶ କରିଥାନ୍ତି । ଚନ୍ଦ୍ରଶେଖର ରଥଙ୍କ ମଥୁରାନଗରୀ ଏକ ସଫଳ ମିଥ୍‌ଧର୍ମୀ ପ୍ରବନ୍ଧ । ନିଜର ଜନ୍ମ ଭୂମି ପରିତ୍ୟାଗକରି କୋଳାହଳ ପୂର୍ଣ୍ଣ ରାଜଧାନୀରେ ଅବସ୍ଥାନ କରିବାପାଇଁ ମଣିଷ ଅବିରତ ସଂଗ୍ରାମ କରୁଛି । ସେ ସଂଗ୍ରାମର ଶେଷ ନାହିଁ । ଗାଁଛାଡ଼ି ସହର ଅଭିମୁଖେ ଯାତ୍ରା କରିବାକୁ ମଣିଷ ଯେଉଁ ଆନନ୍ଦ ପାଉଛି ତାହାର ଏକ ସୁନ୍ଦର ଚିତ୍ର ପ୍ରାବନ୍ଧିକ 'ମଥୁରାନଗରୀ' ପ୍ରବନ୍ଧରେ ପ୍ରକାଶ କରିଛନ୍ତି । ଯଥାର୍ଥରେ ପ୍ରାବନ୍ଧିକ ପ୍ରକାଶ କରିଛନ୍ତି; ମିଶର ସାମ୍ରାଜ୍ୟ ଭାଙ୍ଗିପଡ଼େ କୁଡ଼କୁଡ଼ ବାଲିର ପାହାଡ଼ ପରି । ସମଗ୍ର ଅତୀତ ହୋଇଯାଏ ଗୋଟାଏ ପ୍ରକାଣ୍ଡ ଡାଇନୋସରର କଙ୍କାଳ (ମଥୁରାନଗରୀ)

ସବୁ ମଣିଷ ପଲ୍ଲୀରେ ଜନ୍ମ ହୁଏ - ମାତ୍ର ସହରୀ ସଭ୍ୟତା ତାକୁ ଏତେ ଗ୍ରାସ କରେ ଯେ ସେ ତା'ର ଅତୀତକୁ ଭୁଲି କୋଳାହଳ ପୂର୍ଣ୍ଣ ରାଜଧାନୀକୁ ହିଁ ଆପଣାର କରିନିଏ । 'ଗୋପ ହେଉଛି ଅତୀତର ଶୀର୍ଷବିନ୍ଦୁ ଓ ମଥୁରା ହେଉଛି ଅପରିମେୟ ଭବିଷ୍ୟତର ପ୍ରଥମ ମୁହୂର୍ତ୍ତ ।' କାଳର ପ୍ରବାହ କିପରି ମଣିଷକୁ ତାର ବ୍ୟକ୍ତିତ୍ୱର ବିକାଶ ପାଇଁ ପଲ୍ଲୀରୁ ସହରାଭିମୁଖୀ କରେ 'ମଥୁରା ନଗରୀ' ପ୍ରବନ୍ଧ ହେଉଛି ତା'ର ଚୂଡ଼ାନ୍ତ ନିଦର୍ଶନ । 'ମଥୁରା ନଗରୀ' ପ୍ରବନ୍ଧଟିକୁ ପ୍ରାବନ୍ଧିକ ଯେପରି ଭାବରେ ଉପସ୍ଥାପନ କରିଛନ୍ତି ତାହା ବେଶ ହୃଦୟସ୍ପର୍ଶୀ ।

'ଏ ଯେଉଁ ପୃଥିବୀ' ପ୍ରବନ୍ଧ ସଂକଳନରେ ସ୍ଥାନିତ 'ଶୁଣନ୍ତୁ' ଏକ ଚମତ୍କାର ପ୍ରବନ୍ଧ । ସାଧାରଣ କଥାକୁ ଅସାଧାରଣ ଭାବରେ ପରିବେଷଣ କରିବା ପ୍ରାବନ୍ଧିକଙ୍କ ପ୍ରବନ୍ଧ ଗୁଡ଼ିକର ବୈଶିଷ୍ଟ୍ୟ । ଶୁଣିବାଟା ବାଧ୍ୟତାମୂଳକ । ଇଚ୍ଛା ବିରୁଦ୍ଧରେ ମଣିଷର କର୍ଣ୍ଣ ଗହ୍ୱରକୁ ଅନେକ ଶବ୍ଦ ସମୁଦ୍ର ପ୍ରବେଶ କରେ । ଭିତରର କୋଳାହଳ ଭିତରେ ଆବଦ୍ଧ ହୋଇଥିବାବେଳେ ବାହାରର ବିଭିନ୍ନ ପ୍ରକାର ଶବ୍ଦ ତା'ର କର୍ଣ୍ଣଗହ୍ୱରରେ ପ୍ରବେଶ କରେ । ଅନିଚ୍ଛା ସତ୍ତ୍ୱେ ଅନେକ ଡାକବାଜି ଯନ୍ତ୍ରର ଶବ୍ଦ ମଣିଷକୁ ଅତିଷ୍ଠକରେ । ପ୍ରାବନ୍ଧିକ ଚନ୍ଦ୍ରଶେଖର ରଥ 'ଶୁଣନ୍ତୁ' ପ୍ରବନ୍ଧରେ ପ୍ରକାଶ କରିଛନ୍ତି :

"ସପକ୍ଷ ବିପକ୍ଷରେ ଅନେକ ଯୁକ୍ତି ଆଣିବାଢ଼େ । ଏଇଟା ଆଉ ଗୋଟିଏ ଗହୀର ସ୍ୱର । କୋଳାହଳରେ ମଧ୍ୟ ଏ ଥାଏ । ଜୀବନର ସାଧାରଣ ବେପାର, ବଣିଜ ବେଳେ ମଧ୍ୟ ସେ ଶୁଭୁଥାଏ । ତାକୁ ଶୁଣିବା ଲୋକ ବେଶ୍ .. ପୋଖତ ବୁଝାମଣାର ମଣିଷ । ସବୁ କଥାରେ ଖୁବ୍ ତରକା । ଆଗପଛ, ଛକାପଞ୍ଝା, ମାରଣ ତାରଣ, ଲାଭକ୍ଷତି ତଉଲିବା ମଣିଷ ସେମାନେ । ଯୁକ୍ତି ପ୍ରଧାନ ମଣିଷର ମନ-ମଞ୍ଚରେ ସବୁବେଳେ ଅଦାଲତ ବସିଥାଏ । ଏ ପକ୍ଷ ସେ ପକ୍ଷର ଅନର୍ଗଳ ଯୁକ୍ତି ଓ ପାଟିତୁଣ୍ଡ ଚ୍ଛଲିଥାଏ । ଉପରେ ସେମାନେ ଖୁବ୍ ନୀରବ ଦେଖାଯାନ୍ତି, କିନ୍ତୁ ଅନେକ କ୍ଳାନ୍ତ ଦେଖାଯାଆନ୍ତି । ତାଙ୍କ କାନ ମୁଣ୍ଡାରେ ଶିରଟାଣି ରହିଥାଏ । ସଂସାର କୋଳାହଳର ତୁଙ୍ଗା ପଛରୁ ଚିତ୍କାର କରୁଥିବା, ଅଳ୍ପକେ ହସି ଅଳ୍ପକେ କାନ୍ଦି ପକାଉଥିବା ସାଧାରଣ ଲୋକ ଗୁଡ଼ିକଙ୍କଠାରୁ ସେମାନେ ଭିନ୍ନ । ତାଙ୍କ ଅଦାଲତରେ ବେଳେ ବେଳେ ଖାଲି ଚଉକି ଉପରେ ପାକଲାମୁଣ୍ଡିଆ ଗୋଟାଏ ବିଗ୍ୱରପତି ବସିଥାଏ । ସେ କହେ କମ୍; କିନ୍ତୁ କହେ ନିଷ୍ପତ୍ତି ନେଲାଭଳି । ସେଇଟାହିଁ ବିବେକ । ତା' ପାଖରେ ପାଖରେ ମନୁ ଭର୍ତ୍ତୃହରିଠାରୁ ପିଙ୍ଗଳକୋଡ୍ ପର୍ଯ୍ୟନ୍ତ ପୋଥିଥାକ ଥାକ ଖୁଆ ହୋଇଥାଏ । ସେହି ଖୋପଭିତରୁ ସମୟ ସମୟରେ ସେ ସ୍ୱର ତୋଳେ । ତା' ପାଖରେ ତୁଙ୍ଗା ନାହିଁ - ତଥାପି ସେ ଶୁଭେ । ତାକୁ ମାନି ଚଳିଲା ଲୋକଗୁଡ଼ିକ ନୀତିବାନ୍, ବାରପ୍ରକାର କଟକଣା ଭିତରେ ଗତି କରୁଥିବା କୃଚ୍ଛ୍ର ସାଧକ" । ୬ ।

ସରଳ, ଗମ୍ଭୀର ଶବ୍ଦ ପ୍ରୟୋଗ ଭିତରେ ଦର୍ଶନକୁ ଚନ୍ଦ୍ରଶେଖର ପ୍ରବନ୍ଧରେ ପ୍ରକାଶ କରିଛନ୍ତି । ଆଧ୍ୟାତ୍ମିକ ଚେତନା ପ୍ରବନ୍ଧରଚନାର ଅନ୍ୟତମ ଉତ୍ସ । ପ୍ରାବନ୍ଧିକଙ୍କ ତୀର୍ଯ୍ୟକ ଦୃଷ୍ଟି ଯେଉଁଠି ପଡ଼ିଛି ସେଠି ପ୍ରବନ୍ଧର ପ୍ରତ୍ୟୟ ସୃଷ୍ଟି ହୋଇଛି । ଉନ୍ନତ ଚିନ୍ତା ତୀକ୍ଷ୍ଣ ବିଗ୍ୱର ଧାରା, ଦାର୍ଶନିକ ବିଶ୍ଳେଷଣ ପ୍ରବନ୍ଧ ଗୁଡ଼ିକୁ ବଳିଷ୍ଠ କରିଛି । ବେଳେ ବେଳେ ପ୍ରବନ୍ଧଗୁଡ଼ିକରେ ଅନେକ ବିଶେଷଣ ଶବ୍ଦର ପ୍ରୟୋଗ ଯୋଗୁଁ ପାଠକ ପଠନକ୍ରିୟାରୁ ବୀତସ୍ପୃହ ହୁଏ । ଶବ୍ଦର ସମାବେଶ ଭିତରେ ପାଠକ ହୁଏ ବନ୍ଦୀ । ଆସାଧାରଣ ଶବ୍ଦ

ବିମ୍ବ ଓ ବିସ୍ମୟ ବିଦ୍‌ବତ୍ତା ପ୍ରାବନ୍ଧିକଙ୍କ ଅଧ୍ୟୟନ, ବହୁପାଠିତାର ବଳିଷ୍ଠ ନିଦର୍ଶନ । 'ଶୁଣନ୍ତୁ' ପ୍ରବନ୍ଧଟିକୁ ପ୍ରାବନ୍ଧିକ ଯେପରି ଭାବରେ ବିଶ୍ଳେଷଣ କରିଛନ୍ତି ତାହା ବେଶ୍ ମାର୍ମିକ । ପ୍ରାବନ୍ଧିକ 'ଶୁଣନ୍ତୁ' ପ୍ରବନ୍ଧର ଉପସଂହାରରେ ପ୍ରକାଶ କରିଛନ୍ତି :- 'ଘନ ଶୀତଳ ଅନ୍ଧକାର ଭିତରେ ସମଗ୍ର ଗତି ସ୍ତମ୍ଭିତ, ଶବ୍ଦ କୋଳାହଳ ସଂପୂର୍ଣ୍ଣ ସମାହିତ, ବିଲୁପ୍ତ । ସେଠି ଶ୍ରୋତାନାହିଁ କି ବକ୍ତା ନାହିଁ - ଗୋଟିଏ ମାତ୍ର ଅଖଣ୍ଡୈକ ସତ୍ତା - ପରିପୂର୍ଣ୍ଣ, ଅନାଦ୍ୟନ୍ତ, ଅପ୍ରେମୟ, ଅବିକ୍ରୟ । ତାର ଅଜ୍ଞାତା କେନ୍ଦ୍ରରେ କେବେ କେମିତି ଗୋଟାଏ ନୀରବ କମ୍ପନ ହୁଏ; ବୋଧହୁଏ ଆଦିକାମନାର କମ୍ପନ ! ସେଇଟା ଶେଷରେ ସହସ୍ର ତରଙ୍ଗରେ ଅସଂଖ୍ୟ ବେଳାଭୂମିରେ ଫେନାୟିତ ହୁଏ, ଲୀଳାୟିତ ହୁଏ, ଶବ୍ଦାୟିତ ହୁଏ । ଏଣୁ କେବେ କେମିତି ଯଦି ପାରୁଛନ୍ତି ଏ ବିବିଧ କୋଳାହଳର ଅନନ୍ତ ପଶ୍ଚାତ୍‌ରେ ଥରେ ସେ କମ୍ପନକୁ ମଧ୍ୟ ଶୁଣନ୍ତୁ । ୭ ।

ଏ ସଂକଳନରେ ସ୍ଥାନିତ ' ସଞ୍ଚୟର ପ୍ରତିପକ୍ଷ' ଏକ ବିଶେଷ ପ୍ରବନ୍ଧ । ପ୍ରାବନ୍ଧିକ ସଞ୍ଚୟ ସଂପର୍କରେ ଅନେକ ତତ୍ତ୍ୱ ଓ ତଥ୍ୟ ଅବତାରଣା କରିଛନ୍ତି । କେଉଁମାନେ କିପରି ଅବସ୍ଥାରେ କାହିଁକି ସଞ୍ଚୟ କରନ୍ତି ? ସଞ୍ଚୟ କରିବାର ମୂଳକଥାଟିକୁ ପ୍ରାବନ୍ଧିକ ଚତୁରତାର ସହ ପ୍ରବନ୍ଧରେ ପ୍ରକାଶ କରିଛନ୍ତି । ଦୈନନ୍ଦିନ ଜୀବନ ସଂଗ୍ରାମରେ ମଣିଷ ଭବିଷ୍ୟତର ଭୁତଭୟରେ ଅସ୍ଥିର ହୋଇ ସଞ୍ଚୟ କରେ । ବର୍ତ୍ତମାନକୁ ଉପେକ୍ଷାକରି ଅନାଗତ ଭବିଷ୍ୟତକୁ ଗଣ୍ଠିଧନ କରି ବସେ । କଳ୍ପନାର କଳ୍ପଲୋକରେ ବିଚରଣ କରି ସ୍ୱପ୍ନରେ ଆକାଶକୁ ଶିଡ଼ି ବାନ୍ଧିବାକୁ ଚେଷ୍ଟାକରେ । ଲେଖକ ସଞ୍ଚୟକାରୀମାନଙ୍କୁ ଦୁଇଟି ଭାଗରେ ବିଭକ୍ତ କରିଛନ୍ତି । ଅନେକ ମଣିଷଙ୍କର ସଞ୍ଚୟ କରିବା ଏକ ନିଶା, ଅର୍ଥ ତାଙ୍କ ପାଖକୁ ବିଭିନ୍ନ ଦିଗରୁ ନଦୀର ବଢ଼ିପାଣି ପରି ଆସେ ସେମାନେ ବିଳାସ ବ୍ୟସନରେ ଚଳି, ଅମାପ ଅର୍ଥରାଶିକୁ ସଞ୍ଚୟ କରନ୍ତି । ସଞ୍ଚୟ ତାଙ୍କୁ ସାହସ ଦିଏ ଧନୀର ଅହଙ୍କାର ଦିଏ । ଅପର ସଞ୍ଚୟକାରୀ ଗୋଷ୍ଠି ପେଟ ପାଟି ମାରି ମହୁମାଛି ପରି ସଞ୍ଚୟ କରିବାରେ ପାରଙ୍ଗମ । ଯେନ ତେନ ପ୍ରକାରେ ତେଲଲୁଣର ସଂସାର ଚଳେଇ ଜମାଖାତାରେ ଅର୍ଥ ରଖିଲେ ଗଲା । ଦିନଟିଏ ଗଲେ ଯୁଗଟିଏ ଯାଏ । ସୁଖ ଦୁଃଖ ସବୁ ତା ନିକଟରେ ସମାନ । ପ୍ରାବନ୍ଧିକ ନିଜ ଭାଷାରେ ସଞ୍ଚୟର ପ୍ରତିପକ୍ଷ ପ୍ରବନ୍ଧରେ ପ୍ରକାଶ କରିଛନ୍ତି : " ମୂଲ୍ୟବୋଧ ବଦଳିଗଲେ ତେଣିକି ଖାଦ୍ୟପ୍ରାଣ ଅପେକ୍ଷା ସ୍ୱପ୍ନହିଁ ଅଧିକ ପୁଷ୍ଟିକାରକ ବୋଲି ମନେହୁଏ । ପରିପୁଷ୍ଟ ବେଙ୍କ୍ ଖାତାଟି ବୁଢ଼ୀ ଅସୁରୁଣୀ ପାଚିଲା ବଳାପରି ସମଗ୍ର ଜୀବନର ସାରତତ୍ତ୍ୱ ରୂପେ ପ୍ରତିପାଳିତ ହୁଏ । ଜୀବନରେ ଏଣେ ଶୁଖି ଶୁଖି କେବଳ ଆଖିବାଟେ ଗୋଟିଏ 'ସଂଖ୍ୟା'ରୁ ରସ ଶୋଷି ବଂଚିବା ଅଭ୍ୟାସରେ ପଡ଼ିଯାଏ । ସଂଖ୍ୟାଟି ଯେତେ ବେଶି

ବଢ଼େ ସେଇ ଅନୁପାତରେ ବ୍ୟକ୍ତିଟି ହୋଇଯାଏ ଶୀର୍ଣ୍ଣ । ତା ଆଖି ସେତିକି ଗହିରିଆ । ସେ ସେଇ ଅନୁପାତରେ କେବଳ ଗୋଟିଏ ଭାରବାହୀ । ସେ ଚିରାପିନ୍ଧେ, ବାଇଗଣ ପୋଡ଼ା ସାଙ୍ଗରେ ଭାତଖାଏ । ତିନି ଦିନରେ ଦାଢ଼ି କାଟେ । ଦିଶେ ନିଶା ଖୋର ପରି; କିନ୍ତୁ ସରକାରୀ ନଳପାଣି ଛଡ଼ା ଆଉ କିଛି ତୁଣ୍ଡରେ ଦିଏ ନାହିଁ । ଗୋଟିଏ ରହସ୍ୟାବୃତ ହସରେ ସେ ଯେପରି କହୁଥାଏ 'ଗ୍ୱରିକାତ ଛାଡ଼ି ଗିଳୁଥାଅ ବେ !' ହେଃ ସତାବନ ହଜାର ତିନିଶ ଅଣଷଠି କ'ଣ ଏଇଠି ପଡ଼ିଚି ?'' ସେ ସେଇ ଶାଳଗ୍ରାମ ଶିଳାଟିକୁ ଆଉଁସି ତା' ଉପରେ ଚନ୍ଦନ ବୋଲି ଥୋଇଦିଏ । ୮ ।

ଯେଉଁ ଭବିଷ୍ୟତର ଉଦ୍ଦେଶ୍ୟକୁ ଦୃଷ୍ଟିରେ ରଖି ମଣିଷ ଅର୍ଥ ସଞ୍ଚୟ କରେ ଇପ୍ସିତ ଉଦ୍ଦେଶ୍ୟରେ ସଞ୍ଚିତ ଅର୍ଥ ଲାଗେନାହିଁ । ଅର୍ଥ କେବଳ ସଞ୍ଚୟ ହେବାଟା ସାର ହୁଏ । ସେ ସୁନ୍ଦର କଥନଭଙ୍ଗୀରେ ପ୍ରବନ୍ଧରେ ପ୍ରକାଶ କରିଛନ୍ତି; ''ପ୍ରଥମରୁ ଯେଉଁ ସ୍ୱପ୍ନର ମାଧ୍ୟମ ରୂପେ ଅର୍ଥ ସଞ୍ଚୟ କରାଯାଏ, ଆସ୍ତେ ସେ ସ୍ୱପ୍ନଟି ଲିଭିଯାଏ । ତାଙ୍କ ଚେତନାରେ କେବଳ ଦୁଇଟି ସତ୍ୟକୁ ନେଇଚିନ୍ତା ମୁଁ ଏବଂ ଏହି ଲୁହା ବାକ୍ସ - ମୋର ଆତ୍ମପୁରୁଷ ଏଇଠି ମୋ ଭିତରେ କି ସେ ଭିତରେ ମୁଁ କହିପାରିବି ନାହିଁ । ସେ ବିଷୟ ଚିନ୍ତା କରିବାକୁ ମୋର ତରକାହିଁ ? ବରଂ ହିସାବ ଖାତା ଆଉଥରେ ଗଡ଼େଇ ନେଲେ ଜମା ସଂଖ୍ୟାଟି ଆହୁରି ଠୋସ ଜଣାପଡ଼ିବ'' । ସେମାନେ ଆବିଷ୍ଟ ରହି ଶେଷରେ କେବଳ ଅନୁଭବ କରନ୍ତି ଯେ ଟଙ୍କା କୌଣସି କାଳେ ଖର୍ଚ୍ଚ କରାଯାଏ ନାହିଁ - ତାହା ସ୍ଥାନରୁ ସ୍ଥାନାନ୍ତରକୁ ଯାଇ ଗଚ୍ଛିତ ହେଉଥାଏ କେବଳ - ଜୀବନରେ ମଧୁଚକ୍ର ଗଢ଼ାଯାଏ କେବଳ । ଖାଇବା ମନା । ନିଜକୁ ଶୁଖେଇବା, କ୍ଳାନ୍ତ କରିବା ସମଗ୍ର କାମନାକୁ ପୁଞ୍ଜୀଭୂତ କରି କେବଳ ଅର୍ଥ ସଞ୍ଚୟରେ ସମାହିତ କରିବା ସେମାନଙ୍କର ଏକମାତ୍ର ତପସ୍ୟା । ସେମାନେ ପରିଶେଷରେ ତାହାରି ଉପରେ ମରନ୍ତି ଏବଂ ଯକ୍ଷ ହୋଇ ସେ ଟଙ୍କା ମାଠିଆରେ ପଶିଯାନ୍ତି । ୯ ।

'ଛପେଇ ଆତଙ୍କ ଚନ୍ଦ୍ରଶେଖରଙ୍କ ଅଭିନବ ଅନୁଭବର ଏକ ରସାତ୍ମକ ମୌଳିକ ପ୍ରବନ୍ଧ । ପୁସ୍ତକ ମୁଦ୍ରଣ ସମୟରେ ଲେଖକ ସମାଜ ଯେଉଁ ପ୍ରକାର ମାନସିକ ତାଡ଼ନାର ଶୀକାର ହେଉଛନ୍ତି ତାହାର ଏକ ବାସ୍ତବ ଚିତ୍ର ସେ ଏହି ପ୍ରବନ୍ଧରେ ଅଙ୍କନ କରିଛନ୍ତି । ବିଶେଷକରି ଓଡ଼ିଶାର ଲେଖକ ମଣ୍ଡଳୀ 'କଂସେଇଖାନା' 'ଛପାଖାନା'ର ନାଁ ଶୁଣିଲେ କିପରି ଭୟଭିତ ହୁଅନ୍ତି ତାହାର ଏକ ନିଖୁଣ ଚିତ୍ର ଏଥିରେ ଅଭିବ୍ୟକ୍ତ । ଜୀବନ-ଯନ୍ତ୍ରଣା ଭିତରେ ଘାତ ପ୍ରତିଘାତ ମଧ୍ୟରେ ଅଭାବ ଅନାଟନ ସ୍ୱପରେ ଲେଖକ କିପରି ସମସ୍ତ ପ୍ରକାର ଅସୁବିଧାକୁ ଅତିକ୍ରମ କରି ଅକ୍ଷର ଅରଣ୍ୟ ମଧ୍ୟରେ ଶବ୍ଦ ଅନ୍ୱେଷଣ

କରେ ତାହାର ଏକ ସରସ ସୁନ୍ଦର ଚିତ୍ର 'ଛପେଇ ଆତଙ୍କ ପ୍ରବନ୍ଧ । ସେ ତାଙ୍କ ନିଜ ଶୈଳୀରେ ପ୍ରକାଶ କରିଛନ୍ତି : "ଘରର ଦୁଃଖ ସୁଖ, ପିଲାପିଲିଙ୍କ କଥା, ଚାକିରୀ କଥା, ଦରମା କିମ୍ବା ଭଡ଼ା କଥା ଉଠାଇଲେ ସବୁ କିନ୍ତୁ ଭଣ୍ଡୁର ହୋଇଯିବ । ସେଗୁଡ଼ିକ ତାର କଞ୍ଚା ଘା । ସେଥିରେ ପବନ ବାଜିଲେ ତାକୁ କାଟେ ଏବଂ ସେପରି ଯନ୍ତ୍ରଣାରେ ସେ ପ୍ରାୟ ନୀରବ ରହିଯାଏ । ଅବଶ୍ୟ ବାଘ ଯେମିତି ତା ନିଜ ଘା'ଟାକୁ ଚାଟି ବଢ଼େଇଦିଏ, ଲେଖକ ମଧ୍ୟ ନିଜଭିତରେ ବସି ଏ ଘା ଗୁଡ଼ିକୁ ଖଣ୍ଡିଆ କରେ । ସେଥିରୁ ଝର ଫିଟିଲେ ତାହାରି ଭିତରେ କଲମ ବୁଡ଼େଇ ନାନା କଥା ଲେଖେ । ଏଣୁ ସେ ବିଷୟ ପଚାରି ଦେଲେ ସେ ଅସ୍ୱାଭାବିକ ଗମ୍ଭୀର ଏବଂ ନୀରବ ହୋଇଯିବ ଏବଂ ଯେଉଁ ନିର୍ଦ୍ୱନ୍ଦ୍ୱ ଅନୁମାନ କରିବାକୁ ଆପଣଙ୍କୁ ପରାମର୍ଶ ଦିଆଯାଇଛି ତା'ର କୌଣସି ପ୍ରମାଣ ଆପଣ ଆଉ ତା'ଠାରୁ ସଂଗ୍ରହ କରିପାରିବେ ନାହିଁ । ୧୦ ।

ପ୍ରାବନ୍ଧିକଙ୍କ ଦୃଷ୍ଟି ସୁଦୂର ପ୍ରସାରୀ । ଦୁବରୁ ଦ୍ରୁମ । କୀଟରୁ ଓଟ । ହୀମରୁ ହିମାଳୟ, ତିଳରୁ ତାଳ, ସମସ୍ତଙ୍କ ଉପରେ ମୌଳିକ ପ୍ରବନ୍ଧଟିଏ ରଚନା କରିବାରେ ପ୍ରାବନ୍ଧିକ ଚନ୍ଦ୍ରଶେଖର ବେଶ ଧୂରୀଣ ଓ ପାରଙ୍ଗମ । ସୁଦୂର ପ୍ରସାରୀ ମୌଳିକ ଦୃଷ୍ଟିଭଙ୍ଗୀ ପ୍ରବନ୍ଧ ଗୁଡ଼ିକର ଅନ୍ୟତମ ବିଶେଷତ୍ୱ । ପୁସ୍ତକ ଗୁଡ଼ିକର ମୁଦ୍ରଣ ଜନିତ ତ୍ରୁଟିଗୁଡ଼ିକୁ ଅନୁଧ୍ୟାନ କରି ପ୍ରାବନ୍ଧିକ 'ଛପେଇ ଆତଙ୍କ' ପ୍ରବନ୍ଧରେ ପରିତାପର ପ୍ରକାଶ କରିଛନ୍ତି; ଯା ସହିତ ଯୁକ୍ତ ହୋଇଯାଏ 'କାଳି ଅସହଯୋଗ' ନାମକ ଗୃହବିବାଦ । ଅକ୍ଷରଗୁଡ଼ିକ ଦାବି ଚାଲିଥାନ୍ତି 'କିନ୍ତୁ କାଳିର କୃପଣତା ହେତୁ ପୃଷ୍ଠାର ଫାଳେ ମଣ୍ଡିବୁଣି ହୋଇଯାଏ; ବାକି ଫାଳକ ପଡ଼ିଆ, -ଖାଲି ପୋଡୁଅ ଖୋଜପରି ପଡ଼ିଥାଏ ନିରଙ୍ଗ ଅକ୍ଷର ଚିହ୍ନ । କେତେକ କାଳି ସମର୍ଥକ କହନ୍ତି, ତାହାଛପା ଭୂମିର ଦୋଷ । ସେଇଟା ଅଯଥା ଢ଼ାଲୁ ହୋଇଯାଏ -ଆଉ କିଏ କହନ୍ତି କାଳି-ବୋଳା ବେଲେଣାର ଦୋଷ । କିନ୍ତୁ ମରୁଡ଼ି ସମୟର ଧାନକ୍ଷେତପରି ଏ ଛପେଇ ଦେଖିଲେ ଲେଖକର ଭିତରେ ବୈଶାଖୀ ଝାଞ୍ଜି ବୋହି ସବୁରସ ଶୁଖାଇ ଦିଏ । ତା' ଭିତରେ ସେ ବର୍ଷ ମରୁଡ଼ି ପାଇଁ କିଛି ଫସଲ ଉଠିପାରେ ନାହିଁ । ୧୧ ।

'ଏ ଯେଉଁ ପୃଥିବୀ ପ୍ରବନ୍ଧ ସଂକଳନରେ ସ୍ଥାନିତ ' ବିଦ୍ୟା ଓ ବିଦ୍ୟାର୍ଥୀ' ଏକ ଉଚ୍ଚକୋଟିର ଶିକ୍ଷଣୀୟ ପ୍ରବନ୍ଧ । ଏଥିରେ ବିଦ୍ୟାର୍ଥୀର ଗୁଣ ଓ କାର୍ଯ୍ୟାବଳୀ ସଂପର୍କରେ ସେ ଆଲୋକପାତ କରିଛନ୍ତି । ବିଦ୍ୟା ବିଦ୍ୟାର୍ଥୀର ଭୂଷଣ । ଅନନ୍ତ ଅନ୍ୱେଷଣ ନିରନ୍ତର ଅଧ୍ୟୟନ ବିଦ୍ୟାର୍ଥୀର ଲକ୍ଷ୍ୟ ହେବା ବାଞ୍ଛନୀୟ । ସାଂପ୍ରତିକ ପରିସ୍ଥିତିରେ ବିଦ୍ୟାରେ ବିଦ୍ୟାର୍ଥୀ ସତତ ଅନୁଶୀଳନ କରୁନାହିଁ । ପିତା ମାତାଙ୍କ ଚାପରେ ନିଜର ଇଚ୍ଛାବିରୁଦ୍ଧରେ ବିଦ୍ୟାନିକେତନକୁ ଗମନ କରୁଛି । ଆନ୍ତରିକତା-ନିଷ୍ଠା-ବିହୀନ ବିଦ୍ୟା କିଛି ସମୟ ପାଇଁ

(ପରୀକ୍ଷା ନିମନ୍ତେ) ବିଦ୍ୟାର୍ଥୀର ମସ୍ତିଷ୍କରେ ବସାବାନ୍ଧେ ଇପ୍‌ସିତଲକ୍ଷ୍ୟ ହାସଲ ପରେ ତାହା ଅକସ୍ମାତ୍ ଉଭାନ ହୋଇଯାଏ । ବିଦ୍ୟାସହିତ ବିଦ୍ୟାର୍ଥୀର ଆଉ ସଂପର୍କ ରହେ ନାହିଁ । ଗଚ୍ଛିତ ପୁସ୍ତକ ଗୁଡ଼ିକ ଠୁଙ୍ଗାଦରରେ ବିକ୍ରୀ ହୋଇଯାଏ । ମୋଟା କାଗଜର ପ୍ରମାଣ ପତ୍ର ଖଣ୍ଡକ ପ୍ରମାଣ କରେଇ ଦିଏ ଶିକ୍ଷାଗତ ଯୋଗ୍ୟତା । ପାଞ୍ଚ ଲୋକରେ ମଣିଷ ଗଣାହୁଏ । ଉଚ୍ଚ ଶିକ୍ଷିତର ମୋହର ବାଜେ । ବାସ୍ ସେତିକି, ଶିକ୍ଷାର ଶିଡ଼ି ଚଢ଼ିବାର ଆଉ ଅବକାଶ ନଥାଏ । ପୋଥିରେ ଡୋରୀ ବନ୍ଧାହୁଏ । ସଂସାରର ଶଗଡ଼ ଗୁଳାରେ ଗ୍ଭଲିବାକୁ ହୁଏ । ପଛକୁ ଫେରି ଚାହିଁବାର ବେଳନଥାଏ । ଆଖି ଡିଏଁ ଆଗକୁ ଆଗକୁ ଆଲୋକକୁ ଅନ୍ଧାର ମଣି, ଦଉଡ଼ିକୁ ସାପମଣି । ଏ ଆମ ତଥାକଥିତ ବିଦ୍ୟଧରମାନଙ୍କର କଥା । ଅଳ୍ପକେ ସନ୍ତୁଷ୍ଟ ଚିତ୍ତ ବିଦ୍ୟାର ଗ୍ରାହକ ହେଇପାରେ କିନ୍ତୁ ବିଦ୍ୟାଧର ହୋଇପାରେ ନାହିଁ, ବିଦ୍ୟାରସ ଆସ୍ୱାଦନରୁ ବଞ୍ଚିତ ହୁଏ ।

ବିଦ୍ୟାର୍ଥୀମାନଙ୍କ ସଂପର୍କରେ ମତ ପ୍ରଦାନ କରିବାକୁ ଯାଇ ପୁଣି କହୁଥାନ୍ତି "ଗୋଟାଏ ପ୍ରକାର ସର୍ବହରା ନୈରାଶ୍ୟ ସହିତ ଅଦୂରଦର୍ଶୀ ତାରୁଣ୍ୟ ଓ ଉଚ୍ଛୃଙ୍ଖଳତା ମିଶିଯିବାରୁ ଶିଷ୍ଟାଗ୍ଭର ବା ସଦାଗ୍ଭର ତାଙ୍କ ପାଇଁ ଅବାନ୍ତର"। ୧୨ । ବିଦ୍ୟାଳୟପରି ପବିତ୍ର ଅନୁଷ୍ଠାନ ଗୁଡ଼ିକୁ ଉଚ୍ଛୃଙ୍ଖଳ ଛାତ୍ରମାନଙ୍କ ପ୍ରବେଶ ଫଳରେ ଗୁରୁପ୍ରୀତି ନଷ୍ଟ ହୁଏ, ଶିକ୍ଷା କ୍ଷେତ୍ରରେ ବାଧା ସୃଷ୍ଟିହୁଏ । ଗୁରୁଶିଷ୍ୟ ମଧ୍ୟରେ ଥିବା ପବିତ୍ର ସଂପର୍କ ନଷ୍ଟ ହୁଏ । ବିଦ୍ୟାଦାତା, ବିଦ୍ୟାର୍ଥୀର ଆଚରଣରେ କ୍ଷୁବ୍ଧ ହେଲେ ଅଧ୍ୟାପନା କ୍ଷେତ୍ରରେ ଅନ୍ତରାୟ ସୃଷ୍ଟିହୁଏ । ଯାହାଫଳରେ ଶିକ୍ଷାଳୟ ଶିକ୍ଷାଠାରୁ ଦୂରେଇ ଯାଇ ଆଖଡ଼ାଳୟରେ ପରିଣତ ହୁଏ; ଶିକ୍ଷକ ଶିକ୍ଷାୟତନ ଠାରୁ ଦୂରେଇ ଯାଏ । ଯଥାର୍ଥରେ ପ୍ରାବନ୍ଧିକ ପ୍ରକାଶ କରିଛନ୍ତି; 'ଏମାନେ କାହିଁକି ଆସନ୍ତି ଶିକ୍ଷାୟତନକୁ ? ଯଜ୍ଞ ଭୂମିରେ ବାନର ମାନଙ୍କର ଅବାଧ ପ୍ରବେଶ କ'ଣ ଅଧିକାର ସମର୍ଥିତ ? ସେମାନେ ଅନ୍ୟକ୍ଷେତ୍ରରେ ତାଙ୍କର ପାରଦର୍ଶିତା ଦେଖାଇବାର ଯଥେଷ୍ଟ ସମ୍ଭାବନା ରହିଛି । କାହିଁକି ଏମାନେ ଆସୁଛନ୍ତି ଅନିଚ୍ଛାସତ୍ତ୍ୱେ; ଅନଧିକାର ସତ୍ତ୍ୱେ; କୌଣସି ନିର୍ଦ୍ଦିଷ୍ଟ ଲୋଭନୀୟ ପରିଣାମ ନଥିବା ସତ୍ତ୍ୱେ ? ଏମାନଙ୍କୁ ଅନ୍ୟପନ୍ଥା କାହିଁକି ଏ ସମାଜ ଦେଖାଇ ଦେଉନାହିଁ । ଏମାନେ ଏଠିକି ଆସି ତ ବିଦ୍ୟାର୍ଥିର କଠୋର ବ୍ରତ ପାଳନ କରିପାରିବେ ନାହିଁ । ପ୍ରାଜ୍ଞପୂଜା, ଶୁଚି, ବ୍ରହ୍ମଚର୍ଯ୍ୟ ଅହିଂସାଦି ଶରୀର ତପସ୍ୟାତ ଏହାଙ୍କର ନାହିଁ । ୧୩ ।

'କପି' 'ଶୁଭ୍ରଶରତ୍', ' ଦିଅଦେଖା', 'ମୃତ୍ୟୁ ଏକ ବିଳାସ' 'ବ୍ୟବଧାନ' 'କାନ୍ଦୁରା' 'ଖୋଜିବା ନପାଇବା' ଅନନ୍ୟ : 'କଥା ସରିଯାଏ' 'ସାହାରା' 'ସେପାରୀ' ପ୍ରଭୃତି ପ୍ରବନ୍ଧଗୁଡ଼ିକ ବୌଦ୍ଧିକ ଓ ମାର୍ମିକ । ଜୀବନର ସୂକ୍ଷ୍ମାତିସୂକ୍ଷ୍ମ ଅନୁଶୀଳନ ପ୍ରବନ୍ଧଗୁଡ଼ିକର ମହନୀୟ ବିଶେଷତ୍ୱ ।

ଆଲୋଚନାର ଉପ ସଂହାରରେ ଏତିକି କହିଲେ ଯଥେଷ୍ଟ ହେବ ଯେ ପ୍ରାବନ୍ଧିକ ଚନ୍ଦ୍ରଶେଖର ରଥଙ୍କ ଜିଜ୍ଞାସା-ପ୍ରବଣତା, ବିଷୟ ବିଶ୍ଳେଷଣ ପଟୁତା, ଅନନ୍ୟ ଅନୁସନ୍ଧିତ୍ସା, ଭାବୁକତାର ପ୍ରଖରତା, ସାରସ୍ୱତ ସୌନ୍ଦର୍ଯ୍ୟ ସନ୍ଧାନରେ ମନନର ନିରବଚ୍ଛିନ୍ନତା, ବର୍ଣ୍ଣିତ ବିଷୟମାନଙ୍କର ସାମାଜିକ ପୃଷ୍ଠପଟ ଓ ପରିପାର୍ଶ୍ୱର ରୂପାୟନରେ କମ୍ର-କଳା-ବିଳାସ-କୁଶଳତା ଏବଂ ରସାତ୍ମକତାର ପ୍ରକଟନ ପ୍ରୟାସରେ ନିରତିଶୟ ବିସ୍ମରଣୀଳତା ପ୍ରତ୍ୟେକ ରସଜ୍ଞ ପାଠକକୁ ମୁଗ୍ଧ କରିବ ଏଥିରେ ଦ୍ୱିମତ ନାହିଁ ।

ଓଡ଼ିଆ ଅଧ୍ୟାପକ
ରାଧାନାଥରଥ ବିଜ୍ଞାନ ମହାବିଦ୍ୟାଳୟ
ଖୁଣ୍ଟୁଣି, ଆଠଗଡ଼, କଟକ
ପିନ୍ : ୭୫୪୦୨୯

**ସହାୟକ ଗ୍ରନ୍ଥ : ସଙ୍କେତସୂଚୀ**

୧. ଚନ୍ଦ୍ରଶେଖର ରଥ : ଏ ଯେଉଁ ପୃଥିବୀ; ମୁଖବନ୍ଧ ରଚନା ସଂପର୍କରେ ପୃଷ୍ଠା : କ ପ୍ରଥମ ସଂସ୍କରଣ : ୧୯୭୫, ପ୍ରକାଶିତ ଗ୍ରନ୍ଥମନ୍ଦିର : ବିନୋଦ ବିହାରୀ କଟକ - ୨
୨. ଚନ୍ଦ୍ରଶେଖର ରଥ : ମନ ଅରଣ୍ୟ : ମୋ ତରଫରୁ : ପୃଷ୍ଠା ୯ : ପ୍ରଥମ ସଂସ୍କରଣ ୧୯୭୧ : ପ୍ରକାଶକ : ବିକାଶ ପ୍ରତିଷ୍ଠାନ : ଜୟପୁର : ଓଡ଼ିଶା
୩. ଚନ୍ଦ୍ରଶେଖର ରଥ ଏ ଯେଉଁ ପୃଥିବୀ ମୁଖବନ୍ଧ : ରଚନା ସଂପର୍କରେ ପୃଷ୍ଠା : ଖ ପ୍ରଥମ ସଂସ୍କରଣ : ୧୯୭୫ ପ୍ରକାଶକ : ଗ୍ରନ୍ଥମନ୍ଦିର : ବିନୋଦ ବିହାରୀ : କଟକ - ୨
୪. ତତ୍ରୈବ : ପୃଷ୍ଠା : ଖ
୫. ତତ୍ରୈବ : ପୃଷ୍ଠା : ୪
୬. ତତ୍ରୈବ : ଶୁଣନ୍ତୁ : ପୃଷ୍ଠା : ୯
୭. ତତ୍ରୈବ : ପୃଷ୍ଠା : ୨୯
୮. ତତ୍ରୈବ : ପୃଷ୍ଠା : ୪୨
୯. ତତ୍ରୈବ : ପୃଷ୍ଠା : ୪୩
୧୦ ତତ୍ରୈବ : ପୃଷ୍ଠା : ୪୪
୧୧. ତତ୍ରୈବ : ପୃଷ୍ଠା : ୪୮
୧୨. ତତ୍ରୈବ : ପୃଷ୍ଠା : ୫୩
୧୩. ତତ୍ରୈବ : ପୃଷ୍ଠା : ୫୩

***

# 'ଚନ୍ଦ୍ରଶେଖର କଥାସରିତ୍'ର ଗଳ୍ପମାନସ

**ଡକ୍ଟର ସୁରେଶଚନ୍ଦ୍ର ଦାଶ**

ଉତ୍ତର ସତୁରି ଦଶକରେ ଓଡ଼ିଆ କଥା ସାହିତ୍ୟ କ୍ଷେତ୍ରରେ ଶ୍ରୀଯୁକ୍ତ ଚନ୍ଦ୍ରଶେଖର ରଥ ଏକ ନୂତନ ସ୍ୱାକ୍ଷର । ଜଣେ ସମୟ ସଚେତନ ଶିଳ୍ପୀଭାବରେ ଜାତୀୟ ଜୀବନର ଦୁଃସ୍ଥିତି, ସ୍ୱାଧୀନତା ପରବର୍ତ୍ତୀ ସମାଜର ବିପର୍ଯ୍ୟୟ, ସ୍ୱାର୍ଥ ଓ ଅର୍ଥକୈନ୍ଦ୍ରିକ ଜୀବନର ନୀତିହୀନତା, ମଣିଷର ସ୍ଥିତି ଜନିତ ବ୍ୟାକୁଳତା ତଥା ପାରମ୍ପରିକ ଭାରତୀୟ ଜୀବନାଦର୍ଶନର କ୍ରମ ଅବକ୍ଷୟକୁ ଅତି ନିଷ୍ଠାପର ଭାବରେ ସେ ନିରୀକ୍ଷଣ କରିଛନ୍ତି । ଗଳ୍ପକାର ରୂପେ ଶ୍ରୀଯୁକ୍ତ ରଥ ବହୁବିଳମ୍ବରେ ଆସିଥିଲେ ମଧ୍ୟ ଅନୁଭୂତିର ଗଭୀରତା, ରୁଚିର ଶାଳୀନତା,ଭାବ ପ୍ରକାଶର ଶିକ୍ଷଣତା, ଶୈଳୀର ଚମତ୍କାରିତା ଯୋଗୁଁ ସେ ଅଜସ୍ର ପାଠକର ଶ୍ରଦ୍ଧା ଓ ସମ୍ମାନର ଅଧିକାରୀ  ହୋଇ ପାରିଛନ୍ତି । କମ୍ ବ୍ୟବଧାନ ମଧ୍ୟରେ ଦୁଇଶହରୁ ଊର୍ଦ୍ଧ୍ୱ ସାର୍ଥକ କ୍ଷୁଦ୍ରଗଳ୍ପ ରଚନା କରି ସେ ଓଡ଼ିଆ ସାରସ୍ୱତ ଭଣ୍ଡାରକୁ ସମୃଦ୍ଧ କରିବାରେ ସକ୍ଷମ ହୋଇପାରିଛନ୍ତି । ଫଳ ସ୍ୱରୂପ 'ସମ୍ରାଟ ଓ ଅନ୍ୟମାନେ' ଗଳ୍ପ ସଂକଳନ ପାଇଁ ସମ୍ମାନ ଜନକ ସାରଳା ପୁରସ୍କାର ଓ 'ସବୁଠାରୁ ଦୀର୍ଘ ରାତି' ଗଳ୍ପ ସଂକଳନ ପାଇଁ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ କରିଛନ୍ତି ।

ମଣିଷ ଜୀବନର ପ୍ରତିଟି ପୃଷ୍ଠାରେ ଲେଖି ହୋଇଯାଉଥିବା ମଣିଷର ମନର ଭାଷାକୁ ନେଇ ଶ୍ରୀଯୁକ୍ତ ରଥ ଲେଖନୀ ଚଳାଇ ଥିବାରୁ ତାଙ୍କର କ୍ଷୁଦ୍ର ଗଳ୍ପ ସମଧିକ ପରିମାଣରେ ଜୀବନଧର୍ମୀ । ଭାରତୀୟ ସାମାଜିକ, ସାଂସ୍କୃତିକ ତଥା ରାଜନୈତିକ ପୃଷ୍ଠଭୂମି ଉପରେ ତାଙ୍କର ସୃଷ୍ଟି ବିଦ୍ୟମାନ । ବାସ୍ତବରେ ତାଙ୍କର କ୍ଷୁଦ୍ରଗଳ୍ପ ସାମ୍ପ୍ରତିକ ମଣିଷର ଏକ ଦର୍ପଣ । ଯୁଗ ଯୁଗଧରି ଦୋହଲି ଯାଉଥିବା ସନାତନୀ ମୂଲ୍ୟବୋଧକୁ ପୁନଃ ପ୍ରତିଷ୍ଠା କରିବାପାଇଁ ସେ ତାଙ୍କ ଗଳ୍ପରେ ଶୁଣାଇଛନ୍ତି ଅମୃତର ବାଣୀ, କାହାଣୀ, ଚରିତ୍ର ଚିତ୍ରଣ, ନାଟକୀୟ ଉପସ୍ଥାପନା, ଦ୍ୱନ୍ଦ୍ୱ, ସଂଘାତ, ଘଟଣା ପ୍ରବାହ, ମନସ୍ତତ୍ତ୍ୱର  ବିଶ୍ଳେଷଣ, ବ୍ୟଞ୍ଜନା, ନାମକରଣ, ସାଂକେତିକତା, ପ୍ରତୀକଧର୍ମୀତା, ସ୍ୱତଃସ୍ଫୂର୍ତ୍ତତା ଓ ଆବେଗମୟତାର ଏକ ମିଶ୍ରିତ ଶିଳ୍ପକର୍ମ ରୂପେ ଦେଖିବାକୁ ମିଳେ ତାଙ୍କର କ୍ଷୁଦ୍ରଶିଳ୍ପ । ବିଶେଷକରି ତାଙ୍କ କ୍ଷୁଦ୍ରଗଳ୍ପମାନଙ୍କରେ ଭାରତୀୟ ଦର୍ଶନ ସହିତ ପାଶ୍ଚାତ୍ୟ ଦାର୍ଶନିକ ସାର୍ତ୍ରେ, କାମ୍ୟୁ, କାଫ୍‌କା ପ୍ରଭୃତିଙ୍କ ଦୃଷ୍ଟିକୋଣର ସମନ୍ୱୟ ଘଟିଛି । ବେଳେ ବେଳେ ତାଙ୍କ ଗଳ୍ପମାନ କେଉଁ ଅନ୍ଧାରୀ ମୂଲକରୁ ସତ୍ୟ, ନ୍ୟାୟ ଓ ମୁକ୍ତିର ମାର୍ଗ ପ୍ରଦର୍ଶନ କରାଇଛି । ବିଶେଷତଃ ତାଙ୍କ ଗଳ୍ପରେ ରହିଛି ମଣିଷ ପ୍ରତି ଓ ସମାଜ ପ୍ରତି ଯଥେଷ୍ଟ ଦରଦ ।

'ଚନ୍ଦ୍ରଶେଖର କଥା ସରିତ (ପ୍ରଥମ ଖଣ୍ଡ) ଏପ୍ରିଲ ୨୦୦୦ ମସିହାରେ ଗ୍ରନ୍ଥମନ୍ଦିର ତରଫରୁ ପ୍ରକାଶ ପାଇଛି । ଏଥିରେ ଗାଳ୍ପିକ ଚଉରାଳିଶଟି କ୍ଷୁଦ୍ରଗଳ୍ପ 'ବାଘସବାର' ଏତେ ପାଖରେ ସମୁଦ୍ର, 'ବିକ୍ରୀ ପାଇଁ ଫୁଲମାଳ', ସହ ଯାତ୍ରିକ ପ୍ରଭୃତି ଗଳ୍ପ ସଂକଳନ ମାନଙ୍କରେ ସ୍ଥାନିତ ହୋଇସାରିଛି । ଏଥିରୁ ମନେହୁଏ ଗାଳ୍ପିକ ତାଙ୍କ ସୃଷ୍ଟିକୁ ବିଭିନ୍ନ ଖଣ୍ଡରେ ଗ୍ରନ୍ଥାବଳୀ ରୂପେ ପ୍ରକାଶ କରିବାପାଇଁ ଚେଷ୍ଟିତ ।

ଶ୍ରୀଯୁକ୍ତ ଚନ୍ଦ୍ରଶେଖର ରଥଙ୍କ କଥାସରିତ୍‌ର ସମସ୍ତ ଗଳ୍ପର ଭାବଧର୍ମ ସମପର୍ଯ୍ୟାୟର ନୁହେଁ । କିନ୍ତୁ ସମସ୍ତ ଗଳ୍ପରେ ଗାଳ୍ପିକ ଜୀବନକୁ ଓ ମଣିଷକୁ ଭଲ ପାଇଛନ୍ତି । ମଣିଷ ଜୀବନର ସଫଳତା - ବିଫଳତାକୁ ନେଇ ତାଙ୍କର ସୃଷ୍ଟିକର୍ମ ଗତିଶୀଳ । ତାଙ୍କର କେତେକ ଗଳ୍ପ ମାନବିକ ମୂଲ୍ୟବୋଧର ଅବକ୍ଷୟ ଚିତ୍ର ଦେଲାବେଳେ ଆଉ କେତେକରେ ଆଧ୍ୟାତ୍ମିକ କ୍ରମୋତ୍ତରଣର ପ୍ରୟାସ ରହିଛି । ତାଙ୍କର 'ବାଘସବାର' ଗଳ୍ପରେ ଗଳ୍ପନାୟକ ଶ୍ୟାମଚରଣ ଓରଫ ଶ୍ୟାମ୍ ସିଂ ଡକାୟତ ସର୍ଦ୍ଦାର । ଡକାୟତି ବୃତ୍ତି ଠିକ୍ ବାଘକୁ ସବାର କରିବାଭଳି କଷ୍ଟସାଧ୍ୟ । ସେହି ପଥରୁ ନିଷ୍କୃତି ପାଇବା ମଧ୍ୟ ତତୋଽଧିକ କଷ୍ଟକର ହୋଇପଡ଼େ । ଏ ସମ୍ପର୍କରେ ଗାଳ୍ପିକ କହନ୍ତି, ''ଏଇଟା ଘୋଡ଼ା ନୁହେଁ, ବାଘ - ରକ୍ତମୁଖା ମହାବଳ । ତା ପିଠିରେ ବସି ତାକୁ ଚଳେଇବା ଯେତିକି କଷ୍ଟ ତା ପିଠିରୁ ଓହ୍ଲେଇବା ସେତିକି କଷ୍ଟ । ଓହ୍ଲେଇଲେ ସେ ଗାଉଁକିନା ମାଡ଼ିବସିବ । ବାଘର ଶୋଷ ମେଣ୍ଟେ ନାହିଁ । ପ୍ରତିଦିନ ସୂର୍ଯ୍ୟ ବୁଡ଼ିଗଲା ବେଳେ ତା ତଣ୍ଟି ଶୁଖି ଶୁଖି ଆସେ । ସେ ରଡ଼ିଛାଡ଼େ । ଆଖି ତରାଟି ଅନାଏ । ବିଜୁଳି ପରି ପଞ୍ଝା ଭିତରୁ ନଖ ବାହାର କରି ଲୁଚେଇ ନିଏ - ବାଘକୁ ଚଢ଼ିଲି ଯଦି ବାଘକୁ ପୋଷିବାକୁ ହେବ ।''ସେହିପରି 'ସମ୍ପଦ' ଗଳ୍ପରେ ମଣିଷ ଯେତିକି ପରିମାଣରର ଉଚ୍ଚଶିକ୍ଷିତ ହେଉଛି, ସେତିକି ପରିମାଣରେ ବ୍ୟକ୍ତିକେନ୍ଦ୍ରିକ ହୋଇପଡୁଛି । ସ୍ନେହ ମମତାର ବନ୍ଧନ ଠାରୁ ସେ କ୍ରମଶଃ ଦୂରେଇ ଯାଉଛି । ଆଜିର ମଣିଷ ବଞ୍ଚୁଛି ସ୍ମୃତିରେ, ଚିଠିରେ । 'ପାହାଡ଼' ଗଳ୍ପରେ ଲଇଖନିଆର ଛନ୍ଦକପଟହୀନ ସରଳ ସଙ୍କୋଚ ପ୍ରକୃତିକୁ ବର୍ଣ୍ଣନା କରାଯାଇଛି ।

ଶ୍ରୀଯୁକ୍ତ ରଥଙ୍କ ଗଳ୍ପର ଭାବବସ୍ତୁ ବିଭିନ୍ନ ପର୍ଯ୍ୟାୟରେ ହେଲେ ସୁଦ୍ଧା ସମସ୍ତ ଗଳ୍ପ ମଧ୍ୟରେ ଏକ ନିର୍ଦ୍ଦିଷ୍ଟ ମୂଲ୍ୟବୋଧର ପ୍ରଶ୍ନର କରାଯାଇଛି । ତାଙ୍କ ଗଳ୍ପମାନଙ୍କର ଅନ୍ତସ୍ୱର ମୁଖ୍ୟତଃ ସର୍ବଜନଶୀଳ ଉତ୍ତରତାର ପରିଚୟ ବହନ କରିଥାଏ । ତାଙ୍କ ଗଳ୍ପର ସାଧାରଣ ଲୋକ ଭାବେ 'ହିସାବ ନିକାଶ' ଗଳ୍ପର ସପନି ଚରିତ୍ର, 'ପାତକ' ଗଳ୍ପର ରୋହିଣୀ ବନଫୁଲ ଚରିତ୍ରଠାରୁ ଆରମ୍ଭ କରି 'ବାନପ୍ରସ୍ଥ' ଗଳ୍ପର କୃଷ୍ଣବାହିନୀପତି, 'ଘାଟ ମହାସୁଲ' ଗଳ୍ପର ସୁଦର୍ଶନ ମହାପାତ୍ର ଓ ଶ୍ରୀନିବାସ ବ୍ରହ୍ମା ଚରିତ୍ର, 'ମୁଁ ସିନା ଚିର ଅପରାଧୀର ଅପନ୍ନା ଶାସ୍ତ୍ରୀ ଚରିତ୍ର ମାଧ୍ୟମରେ ମଣିଷ ଜାତି ପ୍ରତି ରହିଥିବା ଅହେତୁକ

ମମତାକୁ ସେ ଚିତ୍ରଣ କରିଅଛନ୍ତି । ତାଙ୍କ ଗଳ୍ପସାହିତ୍ୟର ଅନ୍ତସ୍ୱର ମୁଖ୍ୟତଃ ସାମ୍ପ୍ରତିକ ସମାଜର ସ୍ଥିତାବସ୍ଥାକୁ ପରିବର୍ତ୍ତନ କରିବା ସଂଗେ ସଂଗେ ମଣିଷର ଚରିତ୍ରରେ ପରିବର୍ତ୍ତନ । ସେଥିପାଇଁ ଆଜିର ମଣିଷ ଓ ସମାଜ ପ୍ରତି ତାଙ୍କ ଲେଖନୀ ମୁନରୁ ଝରିଆସିଛି କଠୋର ବ୍ୟଙ୍ଗ । ତଥାପି ସେ ପାଠକମାନଙ୍କୁ ନିରାଶାର ବାର୍ତ୍ତା ଦେଇ ନାହାନ୍ତି । ବରଂ ସୁସ୍ଥ ସମାଜ ଗଠନ ପାଇଁ ବେଶ୍ ପ୍ରେରଣା ଯୋଗାଇଅଛନ୍ତି ।

'ହିସାବ ନିକାଶ' ଗଳ୍ପରେ ରାଜନୈତିକ ନେତାମାନଙ୍କର ଭାଣ୍ଡାମିକୁ ଗାଳ୍ପିକ ଅତ୍ୟନ୍ତ ସହୃଦୟତାର ସହିତ ବର୍ଣ୍ଣନା କରିଅଛନ୍ତି । ପାତ୍ରପୁର ଗାଁକୁ କେବେହେଲେ କୌଣସି ମନ୍ତ୍ରୀ କିମ୍ବା ହାକିମ ଆସିନଥିଲେ । ପ୍ରଥମ କରି ମନ୍ତ୍ରୀ ଆସିଛନ୍ତି କାଦୁଅ ଭିତରେ ପଶି । ସାଙ୍ଗରେ ଆସିଛନ୍ତି ପଦସ୍ଥ ଅଫିସର, ଫଟୋଗ୍ରାଫର ଓ ସାମ୍ବାଦିକ । ଗାଁରେ ପହଞ୍ଚି ଗୋଟିଏ ଅସନା ପିଲାଟିକୁ କୋଳେଇ ନେଲେ । ତା'ର ନାଁ ବୁଝିଲେ ଯେ ସପନି । ମନ୍ତ୍ରୀ ଇଚ୍ଛା ପ୍ରକାଶ କଲେ ତା ଘରକୁ ଯିବାପାଇଁ । ତା ଘରକୁ ଯାଇ ଦେଖିଲେ ତା ସାନ ଭାଇ ରୋଗରେ ପଡ଼ିଛି । ମନ୍ତ୍ରୀ ତା ଚିକିତ୍ସା ପାଇଁ କୌଣସି ବ୍ୟବସ୍ଥା ନକରି ପୁଷ୍ଟିକର ଖାଦ୍ୟ ବାବଦରେ ଭାଷଣ ଦେଲେ । ଯିବା ସମୟରେ ଆଦେଶ ଦେଲେ ଏ ପିଲାପାଇଁ ଦଶ ପନ୍ଦର ଲିଟର ଖାଣ୍ଟି ଘିଅ ପଠାଇ ଦେବା ପାଇଁ । ନାଥୁ କଣ୍ଟ୍ରାକ୍ଟର ଠାରୁ ଘିଅ ଦୁଇଟିଣ ଆଣି ଅଫିସର ମାନେ ନିଜ ଭିତରେ ବାଣ୍ଟିନେଲେ । ଶେଷରେ କିଛି ଘିଅ ଗ୍ରାମ ସେବକ ହାତରେ ପଠାଇଲା ବେଳକୁ ପିଲାଟି ମରିଯାଇଛି । ସେତକ ଘିଅ ଗ୍ରାମ ସେବକ ମାରିନେଲେ । ଏଥିରେ ଗାଳ୍ପିକ ଆଜିର ଦେଶ ସେବକ ଚରିତ୍ର କିପରି କଳଙ୍କିତ ତାହାକୁ ବେଶ୍ ପ୍ରାଞ୍ଜଳ ଭାବରେ ବର୍ଣ୍ଣନା କରିଅଛନ୍ତି ।

ମନସ୍ତାତ୍ତ୍ୱିକ ବିଶ୍ଳେଷଣ ଆଜିର ଗଳ୍ପରେ ଏକ ପ୍ରଧାନ ଅଙ୍ଗରୂପେ ବିବେଚିତ ହୁଏ । ବ୍ୟକ୍ତିର ଅଭୀପ୍‌ସା, ଆକାଂକ୍ଷା, କ୍ରୋଧ, ବିଫଳତା, ସ୍ମୃତି, ରୋମାଞ୍ଚକର ଅନୁଭୂତି ଓ ଅନ୍ତର୍ଦୃଷ୍ଟିକୁ ବୈଜ୍ଞାନିକ ପଦ୍ଧତିରେ ବିଶ୍ଳେଷଣକରି ଗାଳ୍ପିକମାନେ ତାଙ୍କ ସୃଷ୍ଟିକୁ ଜୀବନ ସହିତ ନିକଟତମ କରାଇ ପାରିଛନ୍ତି । ଶ୍ରୀଯୁକ୍ତ ରଥଙ୍କ ଅଧିକାଂଶଗଳ୍ପ ଏହି ମନୋ-ସମୀକ୍ଷା ଉପରେ ପର୍ଯ୍ୟବସିତ । 'ପୁତ୍ରଲାଭ' ଗଳ୍ପରେ ପୀତାମ୍ବର ଦାସର ମନସ୍ତତ୍ତ୍ୱକୁ ବିଶ୍ଳେଷଣ କରାଯାଇଛି । ତାଙ୍କ ଘରେ ଦୀନୁ ଗ୍ଧକର ରୂପେ ଯୋଗ ଦେଇଛି । ପ୍ରଥମେ ତାଙ୍କ ସ୍ତ୍ରୀ ଦୀନୁକୁ ଭଲ ଦୃଷ୍ଟିରେ ଦେଖୁନାହାନ୍ତି । ଭଲକରି ଗଣ୍ଡେ ଖାଇବାକୁ ନଦେଇ ଅତ୍ୟଧିକ କାମର ବରାଦ କରନ୍ତି ସେ । ଏ କାର୍ଯ୍ୟ ପୀତାମ୍ବର ବାବୁଙ୍କୁ ଭଲ ଲାଗେ ନାହିଁ । ଧୀରେ ଧୀରେ ତାଙ୍କ ସ୍ତ୍ରୀଙ୍କର ସ୍ନେହ ଦୀନୁ ପ୍ରତି ବଢ଼ିଛି । ତାଙ୍କର କୌଣସି ପିଲା ନଥିବାରୁ, ଦୀନୁ ପ୍ରତି ତାଙ୍କର ଅପତ୍ୟ ସ୍ନେହ ବଢ଼ିଛି । ତାକୁ ଭଲ ଖାଇବାକୁ ଓ ଭଲ ପିନ୍ଧିବାକୁ ମିଳିଚି । ଫଳରେ ଅଳ୍ପ ଦିନରେ ସେ ବଳିଷ୍ଠ ବପୁ ଧାରଣ କରିଛି । ତାର

ବଳିଲା ବଳିଲା ମାଂସପେଶୀ ଦେଖି ପୀତାମ୍ବର ବାବୁଙ୍କ ଅବଚେତନରେ ପ୍ରତିକ୍ରିୟା ଜାଗ୍ରତ ହୋଇଛି । ଦିନେ  ଅଫିସରୁ ଫେରି ସେ ଦେଖନ୍ତି ଯେ ତାଙ୍କ ସ୍ତ୍ରୀ ଶୋଇଛନ୍ତି ଓ ଦୀନୁ ତାଙ୍କ ଗୋଡ଼ ମୋଡ଼ି ଦେଉଛି । ଏଥିରେ ତାଙ୍କ ମନୋରାଜ୍ୟରେ ପ୍ରତିକ୍ରିୟା ସୃଷ୍ଟି ହୋଇଛି ଓ ସ୍ତ୍ରୀଙ୍କୁ ସନ୍ଦେହ କରି ପାଟି ଗୋଳ କରି ପଦାକୁ ପଳାଇଛନ୍ତି । ବିଳମ୍ବିତ ରାତ୍ରୀରେ ଫେରି ଦୀନୁକୁ ପିଟି ପିଟି ଘରୁ ବାହାର କରିଦେଇଛନ୍ତି । ଏଥିରେ ଗାଳ୍ପିକ ଗୋଟିଏ ପଟରେ ସନ୍ତାନହୀନା ସ୍ତ୍ରୀଙ୍କ ମନରେ ଅପତ୍ୟ ସ୍ନେହ ଦେଖାଇବା ବେଳେ ଅପର ଦିଗରେ ପୀତାମ୍ବର ବାବୁଙ୍କ ମନରେ ଚାରିତ୍ରିକ ସନ୍ଦେହର ଭାବନାକୁ ଦେଖାଇ ଅଛନ୍ତି ।

'ଯଦି ସେ ଈଶ୍ୱର ନୁହେଁ' ଗଳ୍ପରେ ଗଳ୍ପନାୟକ ମାନଧାତା ମହାପାତ୍ରଙ୍କ ମନସ୍ତତ୍ତ୍ୱକୁ ବିଶ୍ଳେଷଣ କରାଯାଇଛି । ମାନଧାତାଙ୍କ ନାତି ପପୁ ପ୍ରଥମ କରି ଘରକୁ ଆସି ତାଙ୍କୁ ମାନା ଓ ତାଙ୍କ ସ୍ତ୍ରୀଙ୍କୁ ଡଲି ରୂପେ ସମ୍ବୋଧନ କରିଛି । ଏଥିରେ ଗାଳ୍ପିକ ଗଳ୍ପ ନାୟକର ମନସ୍ତତ୍ତ୍ୱକୁ ଏହିରୂପେ ବ୍ୟକ୍ତ କରିଅଛନ୍ତି, ''ମହୁ ଫେଣା ପରି ସେ ଦିନ ମେଘ ଓହଳି ରହିଥାଏ । ଥୋପି ପଡୁଥାଏ ଭଣ୍ଡାର କୋଣ । ସେ ମେଘ ବର୍ଷିଦେଲେ, ମାଟି ତାଡ଼ି ନେବ, ଖଣ୍ଡପ୍ରଳୟ କରିଦେବ ବୋଲି ସମସ୍ତେ ଅନୁଭବ କରୁଥାନ୍ତି । ଚାହିଁ ରହିଥାଆନ୍ତି ଆଷାଢ଼ର ସେ ଅପୂର୍ବ ଆଡ଼ମ୍ବରକୁ । କିନ୍ତୁ ମେଘ ବର୍ଷି ନଥାଏ । ସମସ୍ତେ ଅପେକ୍ଷା କରିରହିଥାନ୍ତି— ପଶୁ, ପକ୍ଷୀ, ତରୁ, ତୃଣ ଏବଂ ମଣିଷମାନେ । ସେହିପରି 'ଘାଟ ମହାସୁଲରେ' ଶ୍ରୀନିବାସ ବ୍ରହ୍ମା ବାଉଳି ହୋଇ ଯୌବନରେ କରିଥିବା ଅପକର୍ମକୁ ସର୍ବସମ୍ମୁଖରେ କହିଚାଲିଛନ୍ତି । ସୁଦର୍ଶନ ମହାପାତ୍ରଙ୍କୁ ଡକାଇ, ତାଙ୍କ ସ୍ତ୍ରୀଙ୍କୁ ମନ୍ଦିର ଯିବା ରାସ୍ତାରେ ସେ କିପରି ଧର୍ଷଣ କରିଥିଲେ, ତାହାକୁ ବ୍ୟକ୍ତ କରିଛନ୍ତି । ସୁଦର୍ଶନ ମଧ୍ୟ ପୂର୍ବ ଶତ୍ରୁତାର ପ୍ରତିଶୋଧ ନେବାପାଇଁ ଶ୍ରୀନିବାସର ବଡ଼ପୁଅ ନରେନ୍ଦ୍ରକୁ ଚୈତନ୍ୟ ମିଶ୍ରଙ୍କ ପୂଜାରେ ବଳିଦେବା ପ୍ରସଙ୍ଗ ବୟାନ କରିଛନ୍ତି । ଏଭଳି ବାର୍ତ୍ତାଳାପ ମଧ୍ୟରେ ଗାଳ୍ପିକ ଉଭୟଙ୍କ ମନସ୍ତତ୍ତ୍ୱକୁ ବ୍ୟକ୍ତକରି, ପୂର୍ବକର୍ମର ରହସ୍ୟକୁ ଉନ୍ମୋଚନ  କରିଅଛନ୍ତି ।

'ପାତକ' ଗଳ୍ପରେ ରୋହିଣୀ ବନଫୁଲର ମନସ୍ତତ୍ତ୍ୱକୁ ଗାଳ୍ପିକ ବେଶ୍ ମାର୍ମିକ ଭାବରେ ବ୍ୟକ୍ତ କରିଅଛନ୍ତି । ରୋହିଣୀ ପରିବାର ମଧ୍ୟରେ ଅସାମଞ୍ଜସ୍ୟ ରହିବାରୁ, ତାକୁ ତାର ପିତା ଘରୁ ତଡ଼ିଦେଇଛନ୍ତି । ତାର ମା'କୁ ଅସତୀ ଆଖ୍ୟା ଦିଆଯାଇ ମାରିଦିଆଯାଇଛି । ଏ ପରିସ୍ଥିତିରେ ତାର ସାଙ୍ଗ ସୁଶୀଳ ତାକୁ ଆଶ୍ରୟ ଦିଏ । ଓକିଲଙ୍କ ସହିତ ସୁଶୀଳ କଥାବାର୍ତ୍ତା କରିଛି ଯେ ଗିନିପିଗ୍ ନିୟମାନୁସାରେ ଜେନେଟିକ୍ସକୁ ପ୍ରମାଣ କରି ସେ ତାକୁ ଓ ତାର ମାକୁ ନିଷ୍ପାପ ରୂପେ ପ୍ରମାଣ କରିବେ । କିନ୍ତୁ ରୋହିଣୀ ଏକଥା ଶୁଣି ବିରୋଧ କରିଛି । ସେ ତାର ବାପା ଓ ଗୋସାଇଁ ମାକୁ କୋର୍ଟ କଚେରୀରେ ଦ୍ୱାରସ୍ଥ କରାଇ ବେଇଜ୍ଜତ୍ କରିବାକୁ ଚାହିଁନାହିଁ । ତେଣୁ ସେ ସମସ୍ତ ପାତକ ମଥାପାତି ସହିନେବାକୁ ପ୍ରସ୍ତୁତ ।

ଶ୍ରୀଯୁକ୍ତ ଚନ୍ଦ୍ରଶେଖର ରଥଙ୍କ ଗଳ୍ପ-ସାହିତ୍ୟରେ ସ୍ଥିତିବାଦୀ ଚିନ୍ତାଧାରା-ଏକ ବଳିଷ୍ଠ ବିଭାଗ ରୂପେ ପ୍ରତିଭାତ ହୁଏ । ଯୁଦ୍ଧପରବର୍ତ୍ତୀ ସମୟର ଏକ ନୈରାଶ୍ୟ ବିଜଡ଼ିତ ଆଶଙ୍କା ଗ୍ରସ୍ତ ଉଦ୍‌ବାସ୍ତୁ ପୃଥିବୀରେ ଗାଳ୍ପିକ ଦଣ୍ଡାୟମାନ । ସୂକ୍ଷ୍ମ ମନସ୍ତତ୍ତ୍ୱର ପର୍ଯ୍ୟାଲୋଚନା କରି ସେ ସ୍ଥିତିବାଦୀ ଚେତନାଟିକୁ ଗଭୀରତାର ସହିତ ଗଳ୍ପ-ସାହିତ୍ୟରେ ମାପିଛନ୍ତି । ବ୍ୟକ୍ତିଚେତନାରେ ମଣିଷ ମୁକ୍ତି ନପାଇଲେ ଅନେକାଂଶରେ ପ୍ରତିକ୍ରିୟାଶୀଳ ହୋଇପଡ଼େ । ପାରିବାରିକ ସମ୍ପର୍କ ତିକ୍ତ ହୋଇପଡ଼େ । 'ବାନପ୍ରସ୍ଥ' ଗଳ୍ପରେ ଗାଳ୍ପିକ ଏ ଚିନ୍ତାଧାରାର ବର୍ଣ୍ଣନା କରିଅଛନ୍ତି । ବେକାରୀ ଜୀବନ ବିତାଉଥିବା ରାଜୀବ, ନିଜର ସ୍ଥିତି ପାଇଁ ନିଜର ପିତାଙ୍କୁ ବିରୋଧ କରିଛି । ଯାହା ତାଙ୍କୁ ଦିଆଯାଏ, ତାକୁ ସେ ଭାବେ ଯେ ତାଙ୍କ ପ୍ରତି ଦୟାଭାବ ପୋଷଣ କରାଯାଉଛି । ଯେଉଁ ପିତା ନିଜର ଜୀବନକୁ ଅବହେଳିତ କରି ପୁଅ, ବୋହୂ, ନାତି, ନାତୁଣୀମାନଙ୍କ ପାଇଁ ସମସ୍ତ ଦ୍ରବ୍ୟ ଆବଶ୍ୟକ ଅନୁସାରେ ଖଟିଛନ୍ତି, ସେଠାରେ ପୁତ୍ରମାନଙ୍କ ବ୍ୟବହାର ଏହିପରି ହୋଇଥାଏ । " ସେ କାନ୍ଥରୁ ବନ୍ଧୁକ ଉଠାଇ ଆଣିଥିଲା । ବାପକୁ ଯୋଉଠି ପାଇବ ସେଇଠି ଲାଗି ଦେବ ବୋଲି "ଶଳା ବୁଢ଼ାକୁ ଏଇନା ଖତମ କରିବି" ।

ବିଚ୍ଛିନ୍ନତା ପୀଡ଼ିତ ମଣିଷ ଜୀବନରେ ସଂଗତିର ଅଭାବ ଘଟିଛି । ଫଳରେ ସେ ନିଜକୁ ଅତୀତ ଠାରୁ ଓ ପରମ୍ପରା ଠାରୁ ବିଚ୍ଛିନ୍ନ ବୋଲି ଭାବୁଛି । ଏ ପର୍ଯ୍ୟାୟରେ ଗାଳ୍ପିକଙ୍କର 'ଚିହ୍ନଟ' ଗଳ୍ପଟି ଅନ୍ୟତମ । ଟାଉନହଲର ସମ୍ବର୍ଦ୍ଧନା ସଭାରେ ସମ୍ବର୍ଦ୍ଧିତ ବ୍ୟକ୍ତିଙ୍କର ପ୍ରବଳ ଝଡ଼ ହେତୁ ଗଛ ଚାପାରେ ମୃତ୍ରୁ ଘଟିଛି । ସଭାରେ ଉପସ୍ଥିତ ବ୍ୟକ୍ତିମାନଙ୍କ ମଧ୍ୟରୁ କେହି ହେଲେ ଜଣେ ତାଙ୍କୁ ଉଦ୍ଧାର କଲେ ନାହିଁ । ଶେଷରେ ତାଙ୍କ ସ୍ତ୍ରୀ ଆସିଛନ୍ତି, କାନ୍ଦି କାନ୍ଦି ତାଙ୍କର ଚେତା ବୁଡ଼ିଯାଇଛି । ଉପସ୍ଥିତ ଲୋକମାନଙ୍କ ଭିତରେ କୋଳାହଳ ଖେଳିଯାଇଛି, ଡାକ୍ତରଙ୍କୁ ଡାକିବା ପାଇଁ । କେହି ଯିବାପାଇଁ ପ୍ରସ୍ତୁତ ନୁହଁନ୍ତି । ପୁନଶ୍ଚ ସେ ସ୍ତ୍ରୀ ଲୋକଟି ଚେତା ଫେରି ପାଇଛି । କିନ୍ତୁ ସେ ସ୍ତ୍ରୀଲୋକଟି ସ୍ୱାମୀଙ୍କ ମୃତ୍ୟୁ ଜାଣିସାରି ଅନ୍ୟ ଜଣେ ଲୋକଙ୍କ ହାତଧରି ଚାଲିଗଲେ । ଏଠାରେ ସ୍ୱାମୀ ସ୍ତ୍ରୀଙ୍କ ସମ୍ପର୍କ ମଧ୍ୟ କାର୍ଯ୍ୟାଘେନା ହୋଇପଡ଼ିଛି । ଗଳ୍ପନାୟକ କିନ୍ତୁ ଯାଇଛନ୍ତି ଶବଟିକୁ ଗଛ ତଳୁ କାଢ଼ିବାକୁ, ପାରିନାହାନ୍ତି । ପୋଲିସକୁ କହିଛନ୍ତି, ଜଣେ ଭଦ୍ରବ୍ୟକ୍ତିଙ୍କ ସାହାଯ୍ୟ ମାଗିଛନ୍ତି; କିନ୍ତୁ ତାଙ୍କ କଥାକୁ କେହି ଶୁଣିନାହାନ୍ତି । ଯେପରି ଏଥିରେ କାହାର ଦାୟିତ୍ୱ ନାହିଁ । ଆଜିର ସ୍ଥିତିବାଦୀ ସମାଜ ଏହିପରି ରୂପନେଇ ଉପନୀତ ହୋଇଛି । ଏଠାରେ ଜୀବନ ଧାରଣ ପଦ୍ଧତି ମଧ୍ୟ ସମ୍ପୂର୍ଣ୍ଣ ଅଲଗା ହୋଇପଡ଼ିଛି । ଫଳରେ ମଣିଷ ପାଖରେ ତେଲ ଲୁଣର ସମସ୍ୟା ଏକମାତ୍ର ଧ୍ୟେୟ ହୋଇପଡ଼ିଛି । ସାଂପ୍ରତିକ ମଣିଷ ଜୀବନର ଏହି ବିଚ୍ଛିନ୍ନତା ବୋଧ ବିଷୟରେ ଭାବପୂର୍ଣ୍ଣ ଅର୍ଥବାହୀ ଅଭିବ୍ୟକ୍ତି ମାଧ୍ୟମରେ ଶ୍ରୀଯୁକ୍ତ ରଥ ତାଙ୍କର ଅଧିକାଂଶ ଗଳ୍ପରେ ଆଜିର ସମାଜର ସ୍ୱରୂପକୁ ଉନ୍ମୋଚନ କରିଅଛନ୍ତି ।

ଶ୍ରୀଯୁକ୍ତ ରଥଙ୍କ ଗଳ୍ପମାନ ଆଜିର ମଣିଷ ଓ ସମାଜକୁ ନେଇ ରଚିତ ହୋଇଥିବାରୁ, ତାଙ୍କ ଗଳ୍ପରେ ସାମାଜିକ ଚେତନାର ପ୍ରଭାବ ଗଭୀରଭାବରେ ସୁସ୍ପଷ୍ଟ । ଆଜିର ସାମାଜିକ ଦୁନିଆରେ ସତ୍ୟ ନ୍ୟାୟ ନାହିଁ । ନିଜର ପ୍ରତିଷ୍ଠା ପଛରେ ଏକମାତ୍ର ମୁଖ୍ୟ ଅସ୍ତ୍ର ରୂପେ ଅର୍ଥହିଁ କାର୍ଯ୍ୟକରେ । ଏ ପ୍ରକାର ସାମାଜିକ ଭାବଧାରା ଉପରେ ମୁଁ ସିନା ଚିର ଅପରାଧୀ ଗଳ୍ପଟି ରଚିତ । ସେହିପରି 'ବାମମାର୍ଗ'ଗଳ୍ପରେ ସରକାରଙ୍କ ପଦସ୍ଥ ଅଫିସର ପ୍ରହରାଜଙ୍କ ହାତରେ ଆଇନ କାନୁନର ଶୃଙ୍ଖଳ ଥାଇ ମଧ୍ୟ ଖୁନି ଆସାମୀ ବାଲ୍ୟବନ୍ଧୁ ଦିଲ୍ଲୀପକୁ ସେ ଘରେ ଆଶ୍ରୟ ଦେଇଛନ୍ତି । ଦିଲ୍ଲୀପ ସମ୍ପର୍କରେ ସବୁ ଜାଣି ସୁଦ୍ଧା ପୋଲିସକୁ ସେ ଖବର ଦେଇ ପାରିନାହାନ୍ତି । ଦିଲ୍ଲୀପର ହତ୍ୟାପରେ ଘଟିଥିବା ହତ୍ୟାକାଣ୍ଡର ସତ୍ୟବୟାନ କରିବାକୁ ମଧ୍ୟ ସେ ପ୍ରସ୍ତୁତ ନୁହଁନ୍ତି । ଫଳରେ ପଦସ୍ଥ ବ୍ୟକ୍ତିମାନେ କିପରି ସତ୍ୟ ଓ ନ୍ୟାୟର ଗଳାକୁ ଚିପି ଧରିଛନ୍ତି, ତାହାହିଁ ଉକ୍ତ ଗଳ୍ପରେ ବର୍ଣ୍ଣିତ ହୋଇଛି ।

ପକ୍ଷୀର ଡେଣା ଲାଗିଲେ ଯେପରି ଉଡ଼ିଯାଏ, ଠିକ୍ ସେହିପରି ପିଲାମାନେ ପାରଙ୍ଗମ ହେଲେ, ସେମାନେ ପିତାମାତାଙ୍କ ଠାରୁ ଦୂରେଇ ଯାଆନ୍ତି । ସେମାନେ କେବଳ ପିତାମାତାଙ୍କ ପାଇଁ ସ୍ମୃତିରେ, ଚିଠିରେ ରହିଯାଆନ୍ତି, ଆପଣାର ହୋଇ । ଏହି କୃତ୍ରିମ ସମ୍ପର୍କର ତନ୍ତୁ ସେମାନଙ୍କୁ ଆବୋରି ରହିଥାଏ । 'କାଳକାଳକୁ ସେଇ କଥା' ଗଳ୍ପରେ ଗଳ୍ପ ନାୟକ ନର୍ସର ସେବା ଓ ଯତ୍ନରେ ନିଜର ପିଲାମାନଙ୍କ ଅନୁପସ୍ଥିତିରେ ଭଲ ହୋଇଛନ୍ତି । ସେହିପରି ଆଜିର ଆଧୁନିକ ସହରୀ ସଭ୍ୟତାରେ ବଢ଼ିଥିବା ଝିଅମାନେ କିପରି ବୋହୂ ହୋଇ ପାରନ୍ତି ନାହିଁ; ଶାଶୁ ଓ ଶ୍ୱଶୁର ସେମାନଙ୍କ ପାଖରେ ମୂଲ୍ୟହୀନ ତାହାକୁ ଗାଳ୍ପିକ 'ଦାୟାଦ' ଗଳ୍ପରେ ଦେଖାଇଅଛନ୍ତି । ନିର୍ମଳ ସାଆନ୍ତା ବାହାରେ ରହୁଥିବାରୁ ବୁଢ଼ା ବାପର ସେବା କରିପାରି ନହିଁ । ବାପର ଟେଲିଗ୍ରାମକୁ ତାର ସ୍ତ୍ରୀ ଲୁଚ୍ଚାଇ ଶେଷରେ ହାଲକା ଭାବେ ପ୍ରକାଶ କରିବା ଫଳରେ ନିର୍ମଳ ଗଭୀର ମର୍ମାହତ ହୋଇଛି । କିନ୍ତୁ କିଛି କରିପାରିନାହିଁ । ଶେଷରେ ତାର ବାପର ମରିଯିବା ଖବର ଆସି ପହଞ୍ଚିଛି । ଗାଁରେ ଦଶଦିନ ରହିବା ଦ୍ୱାରା ତାଙ୍କ ସ୍ତ୍ରୀ ରଞ୍ଜନା ଓ ପୁଅ ବବ୍ଲୁ ଅସ୍ୱସ୍ତିବୋଧ କରିଛନ୍ତି । ଆଜିର ଝିଅମମାନଙ୍କ ପକ୍ଷରେ ବାପ ଓ ଶ୍ୱଶୁର ମଧ୍ୟରେ ଏକ ବିରାଟ ବ୍ୟବଧାନ ସୃଷ୍ଟିହୋଇଯାଇଛି । ସେହିପରି ଆଜିର ରାଜନୈତିକ ନେତାମାନଙ୍କର ଭାଣ୍ଡାମୀ ଛଳନାକୁ ଗାଳ୍ପିକ 'ହିସାବ ନିକାଶ' ଗଳ୍ପରେ ଦର୍ଶାଇ ଅଛନ୍ତି । 'ଚିହ୍ନଟ' ଗଳ୍ପରେ ଆଜିର ମଣିଷ କିପରି ଏକ ସମ୍ପର୍କ-ଶୂନ୍ୟ ଛଦ୍ମମୁଖାପିନ୍ଧା ଜୀବନ ଧାରଣ କରେ, ତାହାର ଚିତ୍ରକୁ ସାର୍ଥକ ଭାବେ ପ୍ରକାଶ କରିଛନ୍ତି ଗାଳ୍ପିକ । ଟାଉନ ହଲରେ ସମ୍ବର୍ଦ୍ଧନା ସଭା । ସମ୍ବର୍ଦ୍ଧିତ ବ୍ୟକ୍ତି ଝଡ଼ରେ ଗଛଚିପାରେ ପଡ଼ିଛନ୍ତି । କିନ୍ତୁ ତାଙ୍କୁ ଉଦ୍ଧାର କରିବାକୁ କେହି ଯାଉନାହାନ୍ତି । ଏଠାରେ ଅଧିକାରୀଙ୍କ ଭୟ ରହିଛି । ନିଜ ସ୍ୱାର୍ଥରେ ବାଧା ଉପୁଜିବାର ଆଶଙ୍କା ରହିଛି ।

ତେଣୁ ସମ୍ମୁଖରେ ଜଣେ ଏପରି ମୃତ୍ୟୁବରଣ କଲେ କିଛି ଯାଏ ଆସେ ନାହିଁ । ସେହି ସମୟରେ ତାର  ସ୍ତ୍ରୀ ଆସି ଉପସ୍ଥିତ ହୋଇଛି । ଜାଣିଛି ଯେ ତାର ସ୍ୱାମୀ ମୃତ, ତେଣୁ ସେ ଅନ୍ୟ ଜଣକ ହାତଧରି ସେ ସ୍ଥାନରୁ ବିଦାୟ ନେଇଛି । ଏଠାରେ ସମ୍ପର୍କ ଏପରି ଏକ ବସ୍ତୁ ହୋଇପଡ଼ିଛି, ଯାହାର କୌଣସି ନିର୍ଦ୍ଦିଷ୍ଟ ଅର୍ଥ ନାହିଁ । ଶାଢ଼ୀ ପାଲଟା ପରି ମଣିଷ ସମ୍ପର୍କ ସ୍ଥାପନ କରେ । ନିଜର ସ୍ୱାର୍ଥ ସହିତ ସେ ଏହି ସମାଜରେ ବଞ୍ଚିବା ପାଇଁ ଗ୍ରହିଁଛି । ଫଳରେ ତାର ବ୍ୟକ୍ତିତ୍ୱର କୌଣସି ମୂଲ୍ୟ ରହୁନାହିଁ ।

ନାମକରଣ, ବିଷୟବସ୍ତୁ ଓ ଭାବପ୍ରକାଶରେ ପ୍ରତୀକ ଧର୍ମିତାର ପ୍ରୟୋଗ ସାହିତ୍ୟର ଅଙ୍ଗରୂପ ବିବେଚନା କରାଯାଇଛି । ଏଦିଗରେ ଶ୍ରୀଯୁକ୍ତ ରଥ ତାଙ୍କର ଗଳ୍ପରେ ବହୁପରିମାଣରେ ପ୍ରତୀକଧର୍ମୀ ଭାବ ବ୍ୟକ୍ତ କରି ନିଜର ଅସାଧାରଣ କୃତିତ୍ୱର ପରିଚୟ ଦେଇ ଅଛନ୍ତି । 'ସମ୍ପଦ' ଗଳ୍ପରେ 'ପଶ୍ଚିମରୁ ଖରାପଡ଼ିବା' ପ୍ରତୀକାତ୍ମକ ଶବ୍ଦ ମାଧ୍ୟମରେ ଗାଳ୍ପିକ ପାଶ୍ଚାତ୍ୟ ଶିକ୍ଷା ସଭ୍ୟତା ଦ୍ୱାରା ଆଧୁନିକ ସହରୀ ସଭ୍ୟତା କିପରି ଅନ୍ତଃସାର ଶୂନ୍ୟ ହୋଇପଡୁଛି; ତାହାକୁ ବର୍ଣ୍ଣନା କରିଛନ୍ତି । 'ସମର' ଗଳ୍ପରେ କୁଆ ପ୍ରତୀକ ମାଧ୍ୟମରେ ମଣିଷ କିପରି ତାର ଅସହାୟ ମୁହୂର୍ତ୍ତରେ ସଂଗ୍ରାମ କରିବାକୁ ପ୍ରସ୍ତୁତ ହୋଇପଡ଼େ; ତାହାର ଚିତ୍ର ଦିଆଯାଇଛି । ନିଜର ପରିବାର, ନିଜର ସ୍ଥିତି ପାଇଁ ମଣିଷ ଓ ପକ୍ଷୀ ମଧ୍ୟରେକୌଣସି ପାର୍ଥକ୍ୟ ନାହିଁ । ଯେକୌଣସି ମୁହୂର୍ତ୍ତରେ ବିପଦର ସମ୍ମୁଖୀନ ହେବା ପାଇଁ ଏମାନେ ସମର ଘୋଷଣା କରିପାରନ୍ତି ।

ଆଜିର ସାହିତ୍ୟିକମାନେ ବିଶ୍ୱ ସମସ୍ୟାକୁ ସାହିତ୍ୟରେ ସ୍ଥାନ ଦେବାକୁ ଯାଇ ଏକ ହତାଶା-ବୋଧର ଦୁନିଆକୁ ଆବିଷ୍କାର କରିଛନ୍ତି । କିନ୍ତୁ ଗାଳ୍ପିକ ଶ୍ରୀଯୁକ୍ତ ରଥ ଏ ଦିଗରେ ନିଜର ସ୍ୱାତନ୍ତ୍ର୍ୟ ବଜାୟ ରଖିଛନ୍ତି । ମଣିଷକୁ ଏ ନିଃସଙ୍ଗ ଓ ହତାଶରୁ ତାଙ୍କର ଗଳ୍ପମାନ ପ୍ରଚୁର ଆତ୍ମପ୍ରତ୍ୟୟ ଯୋଗାଏ । ସେ ଜୀବନକୁ ଓ ମଣିଷକୁ ଭଲପାଇଛନ୍ତି । ତେଣୁ ତାଙ୍କ ଗଳ୍ପରେ କୌଣସି ଠାରେ ନିରାଶାର ବାର୍ତ୍ତା ନାହିଁ ବରଂ ଅଛି ବଞ୍ଚିବାର ପ୍ରେରଣାଶକ୍ତି । ଏକ ଆସ୍ତିକ ଚେତନାର ଭାବ ପ୍ରକଟିତ କରିବାକୁ ଯାଇ ସେ ମଣିଷ ଉପରେ ଗଭୀର ଆସ୍ଥା ରଖିଛନ୍ତି ଓ ମାନବିକତାର ପ୍ରସ୍ତର ଉପରେ ସର୍ବାଧିକ ଗୁରୁତ୍ୱ ଦେଇଛନ୍ତି । ଏ ପରିପ୍ରେକ୍ଷୀରେ ତାଙ୍କର ଗଳ୍ପମାନ ରଚିତ ହୋଇ ମଣିଷ ପାଇଁ ଓ ସମାଜପାଇଁ ଏକ ବିଶ୍ୱାସର ବାର୍ତ୍ତା ପ୍ରଦାନ କରାଯାଇପାରିଛି ।

**ଚନ୍ଦ୍ରଶେଖର କଥା ସରିତରେ ଶୈଳୀ ବିଗ୍ରହ :—**

ରଚନା ଶୈଳୀ ହେଉଛି ଲେଖକର ବ୍ୟକ୍ତିତ୍ୱର ପରିମାପକ । କଥାଶିଳ୍ପୀ ଚନ୍ଦ୍ରଶେଖର ରଥ ଓଡ଼ିଆ ସାହିତ୍ୟରେ ଜଣେ ସଫଳ ଗଦ୍ୟସ୍ରଷ୍ଟା ଭାବରେ ନିଜର ସ୍ୱାକ୍ଷର ଦେଇଅଛନ୍ତି । କେବଳ ଭାବବସ୍ତୁ ସାହିତ୍ୟକୁ ସାର୍ବଜନଗ୍ରାହୀ କରାଇ ନଥାଏ, ଏହା ସହିତ ଶୈଳୀର ଭୂମିକା ଗୁରୁତ୍ୱପୂର୍ଣ୍ଣ । ଶୈଳୀ ଦୃଷ୍ଟିରୁ ବିଗ୍ରହକଲେ ତାଙ୍କ ସାହିତ୍ୟର

ଏକ ସ୍ୱତନ୍ତ୍ର ଆକର୍ଷଣ ରହିଛି । ଏକ ସ୍ୱତନ୍ତ୍ର ଯାଦୁକାରୀ ଶକ୍ତି ରହିଛି । ତାଙ୍କ ଗଳ୍ପର ଶୈଳୀ ଅନେକାଂଶରେ ଭାବାନୁସାରୀ । ସ୍ୱାଭାବିକ ବର୍ଣ୍ଣନା ତାଙ୍କ ଗଳ୍ପସାହିତ୍ୟର ମୁଖ୍ୟ ଆକର୍ଷଣ । କାହାଣୀର ବାହୁଲ୍ୟକୁ ପରିହାର କରି ଗାଳ୍ପିକ ବ୍ୟଞ୍ଜନାଧର୍ମୀତା ତଥା ପରିମିତ ଭାବନେଇ ଲେଖନୀ ସ୍ୱଳନା କରିଛନ୍ତି । ଓଡ଼ିଆ ଗଳ୍ପ-ସାହିତ୍ୟରେ ତାଙ୍କର ଗଦ୍ୟଶୈଳୀ ଅନନ୍ୟ । ଶ୍ରୀଯୁକ୍ତ ରଥଙ୍କ ଗଳ୍ପର ଶୈଳୀ ବିଗ୍ୱରରେ ଶବ୍ଦ ଓ ବିଶେଷଣର ପ୍ରୟୋଗ, ନାଟକୀୟ ଉପସ୍ଥାପନା, ଚିତ୍ରଧର୍ମୀ ପ୍ରକାଶଭଙ୍ଗୀ, ପାତ୍ରମୁଖୀ ଭାଷା, ପରିବେଶ ବର୍ଣ୍ଣନା ପ୍ରଭୃତି ସମ୍ପର୍କରେ ସାମାନ୍ୟ ଉଦାହରଣର ଆବଶ୍ୟକତା ରହିଛି ।

(କ) ଶବ୍ଦ ଓ ବିଶେଷଣର ପ୍ରୟୋଗ :—

ଏତେ ବଡ଼ ଥାଳି ପଟପରି ପୁନେଇଁ ଜହ୍ନ, ଆଖି ଢ଼ବଢ଼ବ ଫାଟି ପଡୁଥାଏ, ଆଶଙ୍କାର ହୁଡ଼ା ହୁଡ଼ା ମେଘ, ରାହୁ ମୁଣ୍ଡପରି କୁହାଟ, ଅନ୍ଧାର ଅରଣ୍ୟପରି ନୀରବ, ଜଳନ୍ତା ଦ୍ୱିପ୍ରହର ଏକ ଝଟକୁଥିବା ନିଛାଟିଆ ସମୁଦ୍ର, ଡଗଡଗା ହାଣମଙ୍ଗଳ ।

(ଖ) ନାଟକୀୟ ଉପସ୍ଥାପନା :—

(୧) ' ଅଭିଶପ୍ତ ପରିବାରର ସବୁ ଲଜ୍ଜା, ଅପମାନ, କଳଙ୍କ ମୁଁ ମୁଣ୍ଡପାତି ସହିବାକୁ ଜନ୍ମିଛି । ମୋତେ ଯାହା ଲାଞ୍ଛନା ଦେବାର ଦିଅ । ସବୁ କଳଙ୍କ ମୋ କପାଳରେ ବୋଳିଦଅ । ମୁଁ ସମସ୍ତଙ୍କ ପାପ ପାଇଁ ଏକାକୀ ପ୍ରାୟଶ୍ଚିତ କରିବି । ମୋତେ କେହି ଦୟା କରନା.... ଦୟାକରନା । ମୋତେ ଶକ୍ତିଦିଅ.... ସହିବାକୁ ଶକ୍ତି ଦିଅ । ' (ପାତକ)

(୨) 'ମୁଁ ପାହାଡ଼ କହିଲେ ବୁଝେ ଗୋଟାଏ ଜିଅନ୍ତା ବାଘାଜନ୍ତୁ, ଯେମୋତେ ପାଦେ ପାଦେ ଛକିଥିବ । ମୁଁ ତାକୁ ପାଦେ ପାଦେ ପରାଜିତ କରୁଥିବି । ମୁଁ ଜାଣେ ଥରେ ଗୋଟିଏ ପାହୁଣ୍ଡ ଖସି ଗଲେ ସେ ମୋତେ ଛାଡ଼ିବ ନାହିଁ; ଏକାଥରେ ଛତୁ କରିଦେବ । ଯଦି ମରଣ ସେମିତି ଖଣ୍ଡାପରି ଆଗରେ ଝୁଲି ନରହୁଛି, ତେବେ ଲଢ଼ିବାର ଅର୍ଥ କ'ଣ ବେ ନାଲାଏକ ? ମୋର ଆନନ୍ଦ ମୁକାବିଲାରେ ।' (ବାମମାର୍ଗୀ)

(ଗ) ଚିତ୍ରଧର୍ମୀ ପ୍ରକାଶ ଭଙ୍ଗୀ :—

(୧) 'ଭାସୁଥିବା ମେଘ ଖଣ୍ଡ ପରି ମୁଁ କେତେବେଳେ କ'ଣ ପରି ଦିଶୁଥାଏ ମୁହୂର୍ତ୍ତେ ମୁହୂର୍ତ୍ତେ ଲିଭିଯାଉଥାଏ ମୋର ପରିଚୟ ।' (ଚିରକାଳ ଅନ୍ୟ ଭୂମିକାରେ)

(୨) ' ମୁଁ ଦ୍ରବିଯାଉଥିଲି, ସ୍ରବି ଯାଉଥିଲି ରସା,ତଳକୁ ପରାସ୍ତ ଅଙ୍ଗାର ଖଣ୍ଡପରି ।' (ତଳପାହାଚ)

(୩) 'ଆକାଶରେ ମଧ୍ୟାହ୍ନ ସୂର୍ଯ୍ୟ ଜଳୁଥିଲା । ସିଦ୍ଧ ନାଥ ଅଗ୍ନିସ୍ନାନ କରୁଥିଲେ ନୀରବ, ଅସହାୟ ।' (ପିତୃ ପୁରୁଷ)

(୪) 'କେବେ କେମିତି ନିରୋଳା ଦ୍ୱିପ୍ରହର ଧୂପକାଠିପରି କୁହୁଳୁଥିବା ବେଳେ ତାଙ୍କ ଗ୍ୱରିପାଖରେ ସବୁ କେମିତି ତରଳି ଗଲାପରେ ରୂପାନ୍ତରିତ, କାଳାନ୍ତରିତ ହୋଇଯାଏ ।' (ପ୍ରାରବ୍ଧ)

(୫) 'ଏ ବାକ୍ୟର ଅଗ୍ନିରେ ଦରପୋଡ଼ା ଦୌଲତରାମଙ୍କ ପିତୃତ୍ୱ ହୁତ୍ ହୁତ୍ ହୋଇ ଜଳିଯାଇଥିବ । ପାଉଁଶ ଗଦାରୁ ନିଆଁ ଲିଭିଯାଇଥିବ । ନିଷ୍କୃତି ପାଇଥିବେ ସେ ଅନନ୍ତ ଯାତନାରୁ ।' (ପଞ୍ଚପୁତ୍ରର କାହାଣୀ)

(ଘ) ପାତ୍ରମୁଖୀ ଭାଷା :—

ଅଣ ସଡ଼ିଆଙ୍କ ମୁହଁରେ ହିନ୍ଦୀ ଭାଷା

(୧) 'ଆରେ, ଗଜବ ହୋଇଗିଆ ! ପରିଙ୍କା ହନୁମାନ ଜିଉକୋ ପାନି ମେ ଗିରାନେ କୋ ଲେଗୟା । ଆରେ, ଆରେ ତୋବା ତୋବା !!' (ମାୟା ଯୁଦ୍ଧ)

(୨) 'ଦେଖୋ ଭାଇ କୋଇ ଜଲଦି ନାହିଁ । ବକ୍ତ ପର୍ ବଢ଼ାନା । ଅବ୍ ଖୁସ୍ ରହୋ । ମେରେଲିଏ ତୋ ତୁମ୍‌ହାରା ଦୋସ୍ତି ହିଁ କାଫିହେ ।' (ଆଜ ରଜନୀ ମଧ୍ୟଗତେଠ

(ଙ) ପରିବେଶ ବର୍ଣ୍ଣନା :—

(୧) 'ଦୁରୁଦୁରୁ ବର୍ଷା ଛେଚୁଥିଲା ବେଳେ ଭାଉଜ ଉପରକୁ ଅନେଇ ବସିଥିବ । ଉପରୁ ଅଳନ୍ଧୁ ଖସୁଥିବ । ମଟ ମଟ ଡାକୁଥିବ ଗ୍ୱଳ ।' (ଆମକୁ ବିପନ୍ନ କର)

(୨) 'ସମସ୍ତେ ଜଣେଇ ଲାଗିଥାନ୍ତି କେମିତି ସେ ପୁରୁଣା ପଞ୍ଜୁରୀ ଭିତରୁ ଛଟପଟ ହେଉଥିବା ପକ୍ଷୀଟି ଉଡ଼ିଯାଉ । - ଯାଉ ବୁଢ଼ା ଏ ଗୁହ ମୁତରୁ ତ୍ରାହିପାଇଯାଉ : ସେମାନେ ବି ଏ ଜଞ୍ଜାଳରୁ ମୁକୁଳି ଯାଆନ୍ତୁ, ତ୍ରାହି ପାଇ ଯାଆନ୍ତୁ । (ଘାଟମହାସୁଲ)

ବାସ୍ତବରେ 'ଚନ୍ଦ୍ରଶେଖର କଥା ସରତ' ଓଡ଼ିଆ ଗଳ୍ପ ସାହିତ୍ୟରେ ଏକ ଅତୁଳନୀୟ ପ୍ରତିଭା । ଏଥିରେ ତାଙ୍କର ପ୍ରତ୍ୟେକ ଗଳ୍ପ ଏକ ସ୍ୱୟଂସମ୍ପୂର୍ଣ୍ଣ ସତ୍ତାରେ ଉଦ୍‌ଭାସିତ । ତାଙ୍କର ସ୍ରଷ୍ଟା ମାନସ ଏକ ବିସ୍ତୃତ ପରିବ୍ୟାପ୍ତ ଦିଗ୍‌ବଳୟର ସୂଚନା ବହନ କରେ । ଅପୂର୍ବ ଭାଷା ବିନ୍ୟାସ ସହିତ, ଅନୁଭୂତି ବହୁଳ ପ୍ରାଣପ୍ରାବୁର୍ଯ୍ୟକୁ ବହନ କରି ତାଙ୍କର ଗଳ୍ପମାନ ସ୍ୱକୀୟତା ବଜାୟ ରଖିଛି । ବାସ୍ତବ ଜୀବନରେ ରୂପକାର ଭାବରେ ଓଡ଼ିଆ ଗଳ୍ପ ସାହିତ୍ୟରେ ଶ୍ରୀଯୁକ୍ତ ରଥଙ୍କ ପରି କାଳଜୟୀ ସ୍ରଷ୍ଟାଙ୍କ ସଂଖ୍ୟା ସୀମିତ ।

ମୁଖ୍ୟ ଅଧ୍ୟାପକ
ସ୍ନାତକୋତ୍ତର ଓଡ଼ିଆ ବିଭାଗ
ଟାଟା କଲେଜ, ଗ୍ୱଇଁବସା
(ରାଞ୍ଚି ବିଶ୍ୱବିଦ୍ୟାଳୟ)

***

# ଚନ୍ଦ୍ରଶେଖର ରଥଙ୍କ ଉପନ୍ୟାସରେ ଦାର୍ଶନିକତା

**ଡଃ ସଂଘମିତ୍ରା ମିଶ୍ର**

ଚନ୍ଦ୍ରଶେଖର ରଥ ଓଡ଼ିଆ ସାହିତ୍ୟ ଜଗତର ଏକ ସମ୍ମାନାସ୍ପଦ ଉଚ୍ଚାରଣ । ବୃତ୍ତିରେ ଇଂରାଜୀ ଭାଷା ସାହିତ୍ୟର ଅଧ୍ୟାପକ ଚନ୍ଦ୍ରଶେଖର ପ୍ରବୃତ୍ତିରେ ଶିଳ୍ପୀ ଓ ଦାର୍ଶନିକ । ଏକାଧାରରେ କବି, ଅନୁବାଦକ, ଔପନ୍ୟାସିକ, ଗାଳ୍ପିକ ତଥା ଚିତ୍ରଶିଳ୍ପୀ ଭାବରେ ସେ ନିଜର ସ୍ୱାତନ୍ତ୍ର୍ୟର ପରିଚୟ ଦେଇଛନ୍ତି । ଏତଦ୍‌ବ୍ୟତୀତ ସେ ଓଡ଼ିଶାର ସର୍ବମାନ୍ୟ ବାଗ୍ମୀ, ପଣ୍ଡିତ ତଥା ମୂଲ୍ୟବୋଧରେ ବିଶ୍ୱାସ ରଖୁଥିବା ସ୍ରଷ୍ଟା, ଯାହାର ଆଚରଣ ଓ ଉଚ୍ଚାରଣ ଭିତରେ କୌଣସି ପାର୍ଥକ୍ୟ ନାହିଁ । ୧୯୫୨ରେ ଇଂରାଜୀ ସାହିତ୍ୟ ଅଧ୍ୟାପନା ପ୍ରାରମ୍ଭ ସମୟରେ ଦୀର୍ଘ ଦଶବର୍ଷ ସେ ଇଂରାଜୀରେ ବହୁ ସାହିତ୍ୟ ରଚନା କରିଛନ୍ତି । ମାତ୍ର ସେଥିରେ ତାଙ୍କ ଭିତରେ ଥିବା ସ୍ରଷ୍ଟା ପୁରୁଷଟି ହୁଏତ ସନ୍ତୁଷ୍ଟ ହୋଇ ପାରିନାହିଁ । ତେଣୁ ୧୯୬୦ବେଳକୁ ସେ ଓଡ଼ିଆ ଭାଷାରେ ସାହିତ୍ୟ ରଚନା ଆରମ୍ଭ କରିଛନ୍ତି । ଓଡ଼ିଶାର ଭାଷା ସରସ୍ୱତୀ ସତେଯେପରି ଏହି କୃତି ସନ୍ତାନଙ୍କ ଯୋଗଦାନରେ ମହିମାନ୍ୱିତ ହୋଇଉଠିଛନ୍ତି ।

ଚନ୍ଦ୍ରଶେଖରଙ୍କ ବାଲ୍ୟକାଳ କଠୋର ଶୃଙ୍ଖଳା ମଧ୍ୟରେ କଟିଛି । ବେଦ, ଉପନିଷଦ, ଭଗବଦ୍ ଗୀତା, ଭାଗବତ, ରାମାୟଣ ଭିତର ଦେଇ ପିଲାଦିନରୁ ଉପନିଷଦୀୟ ଚିନ୍ତାଧାରାକୁ ବୁଝିବାର ପ୍ରୟାସ କରିଛନ୍ତି । ଖେଳୁଆଡ଼ର ମନୋଭାବ ନେଇ ସେ ଜୀବନକୁ ଅନୁଭବ କରିଛନ୍ତି । ଇଂରାଜୀରେ ଅସାଧାରଣ ବ୍ୟୁତ୍ପତ୍ତି ହାସଲ କରିବାପରେ ସେ କାମ୍ୟୁ, ସାର୍ତ୍ରେ, ମାର୍କସ, ଫ୍ରୟେଡ଼ଙ୍କ ସହିତ ଅରବିନ୍ଦ, ଗାନ୍ଧୀ, ଶଙ୍କର ତଥା ବିବେକାନନ୍ଦଙ୍କ ଦର୍ଶନ ପଢ଼ିବାର ସୁଯୋଗ ପାଇଛନ୍ତି । ଫଳରେ ତାଙ୍କର ସୃଷ୍ଟି ଭିତରେ ଦାର୍ଶନିକତା ଫୁଟିଉଠିଛି । ପାଠକଟିଏ ତାଙ୍କ ଉପନ୍ୟାସ ପଢ଼ିଲେ ମଣିଷର ଦୁଃଖ, ଦୈନ୍ୟ, କପଟତାର ସ୍ପର୍ଦ୍ଧା ତଥା ସ୍ୱାଭିମାନର ପରିଚୟ ପାଇଥାଏ । ମଣିଷର ପ୍ରେମ, ପ୍ରଣୟ ବା ଅଭିମାନ ଭଳି ଘଟଣା ତାଙ୍କ ଦୃଷ୍ଟିରେ ଯେ ନାହିଁ ସେ କଥା ନୁହେଁ, ମାତ୍ର ତାହା ବେଶ୍ ସଂକୁଚିତ । ୧୯୬୬ରେ ଯନ୍ତ୍ରାରୂଢ଼ ଭଳି ଉପନ୍ୟାସ ଲେଖି ସମଗ୍ର ଓଡ଼ିଶାର ପାଠକ ମହଲରେ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିପାରିଥିବା ଚନ୍ଦ୍ରଶେଖର ରଥ ମାତ୍ର ତିନିଗୋଟି ଉପନ୍ୟାସ ରଚନା କରିଛନ୍ତି । ଯନ୍ତ୍ରାରୂଢ଼, ଅସୂର୍ଯ୍ୟ ଉପନିବେଶ ଓ ନବଜାତକ । ଏତଦ୍ ବ୍ୟତୀତ ତାଙ୍କର ପ୍ରବନ୍ଧ ସଂକଳନ ଗୁଡ଼ିକ ହେଉଛି ମନ ଅରଣ୍ୟ, ଦୃଷ୍ଟି ଓ ଦର୍ଶନ, ଏ ଯେଉଁ ପୃଥିବୀ, ମୁଁ ସତ୍ୟଧର୍ମା କହୁଛି, ମଧୁସନ୍ଧାନ, ଉତ୍ତର ଅରଣ୍ୟ, ଅଶ୍ରୁତସ୍ୱର, କ୍ରୀତଦାସର

ସ୍ୱପ୍ନ, ଓ ରଥ ସପ୍ତକ । 'ତୁମ ପାଇଁ ପକ୍ଷୀଗାନ' ଓ 'ଆଗକୁ ବନସ୍ତ' ତାଙ୍କର ଦୁଇଟି ପ୍ରକାଶିତ କବିତା ପୁସ୍ତକ ଯଦିଚ ତାଙ୍କର ଶତାଧିକ ଇଂରାଜୀ କବିତା ବର୍ତ୍ତମାନ ପର୍ଯ୍ୟନ୍ତ ଅପ୍ରକାଶିତ । ତାଙ୍କର ଗଳ୍ପ ସଂକଳନ ଗୁଡ଼ିକ ହେଉଛି ଅନେକ ବନ୍ୟାପରେ, ଅଶ୍ୱାରୋହୀର ଗଳ୍ପ, ସମ୍ରାଟ ଓ ଅନ୍ୟମାନେ, ଅନ୍ୟ ଏକ ସକାଳ, ସବୁଯାକ ସ୍ୱପ୍ନ, ଏତେ ପାଖରେ ସମୁଦ୍ର,, ବିକ୍ରି ପାଇଁ ଫୁଲମାଳ, ବାଘ ସବାର, ସ୍ୱପ୍ନ ବାହକ, ସହଯାତ୍ରିକ, ସବୁଠାରୁ ଦୀର୍ଘରାତି, ଅନ୍ତିମା କ୍ରମଶଃ ଗଭୀର ନଈ ଓ ଶିଖର ଲଙ୍ଘନ । ଶ୍ରୀଯୁକ୍ତ ରଥ ତାଙ୍କ ସୃଷ୍ଟି ନିମିତ୍ତ ଓଡ଼ିଶା ସାହିତ୍ୟ ଏକାଡେମୀ, କେନ୍ଦ୍ର ସାହିତ୍ୟ ଏକାଡେ଼ମୀ, ଶାରଳା ପୁରସ୍କାର ଭଳି ଅନେକ ମର୍ଯ୍ୟାଦାଜନକ ସମ୍ମାନ ପାଇଛନ୍ତି । ତାଙ୍କର ପ୍ରବନ୍ଧଗୁଡ଼ିକ ଏତେ ସୁଖପାଠ୍ୟ ତଥା ତଥ୍ୟଭିତ୍ତିକ ଯେ ଏହା ଥରେ ପଢ଼ିବା ଆରମ୍ଭ କଲେ ପାଠକ ଏଥିରେ ଉବୁଟୁବୁ ହୋଇ ଭାସିଯାଏ । ପ୍ରବନ୍ଧର କ୍ଲିଷ୍ଟତା ଏଥିରେ ନଥାଏ ବରଂ ଥାଏ ବିଷୟରୁ ବିଷୟାନ୍ତରକୁ ଯିବାର ସ୍ୱାଭାବିକ ଗତି । ଲଳିତ ନିବନ୍ଧ, ଶୀର୍ଷକରେ ଏଗୁଡ଼ିକ ଓଡ଼ିଶାର ପ୍ରାୟ ପ୍ରତ୍ୟେକ ପ୍ରତିଷ୍ଠିତ ପତ୍ର ପତ୍ରିକାରେ ପ୍ରକାଶିତ ହୋଇ ପାଠକୀୟ ସ୍ୱୀକୃତି ଲାଭ କରିଛି ।

ଭାଷା ପ୍ରୟୋଗ କ୍ଷେତ୍ରରେ ଶ୍ରୀଯୁକ୍ତ ରଥରଙ୍କର ଦକ୍ଷତା ଯଥେଷ୍ଟ । ଓଡ଼ିଶାର ବିଭିନ୍ନ ପ୍ରାନ୍ତୀୟ ଉପଭାଷା ସହିତ ସେ ଘନିଷ୍ଠ ଭାବରେ ଜଡ଼ିତ ଯାହା ତାଙ୍କ ସୃଷ୍ଟିକୁ ଅନ୍ୟ ଏକ ସ୍ୱାତନ୍ତ୍ର୍ୟ ପ୍ରଦାନ କରିପାରିଚି । ଏତଦ୍‌ବ୍ୟତୀତ ସଂସ୍କୃତରେ ମଧ୍ୟ ତାଙ୍କର ଯଥେଷ୍ଟ ଦକ୍ଷତା ରହିଛି । ତେଣୁ ତାଙ୍କର ଅଧିକାଂଶ ରଚନାରେ ସଂସ୍କୃତ ଶୀର୍ଷକ ରହିଥିବା ଦେଖାଯାଏ । ଯେ ଯଥା ମାଂ ପ୍ରପଦ୍ୟନ୍ତେ, ତୃପ୍ୟନ୍ତାମ୍, ଯୋଗ୍ୟତରେଷୁ ପ୍ରଭୃତି ଯେଭଳି ନାମକରଣ । ପୁଣି କାନ୍ଦୁରା, ଦିଅଁଦେଖା, ଦିଗବାଉଳା, ମୁଁ କିଏ ? ଛପନରୋଗୀ ଭଳି ନାମକରଣରୁ ସରଳ ଭାଷାରେ ମାଧୁର୍ଯ୍ୟ ଝରିପଡ଼େ । ଗୋଟିଏ କଥାରେ କହିଲେ ସେ ସଚେତନ ଭାବରେ, ନିର୍ଦ୍ଦିଷ୍ଟ ଦାର୍ଶନିକ ଚିନ୍ତାରେ ଘାରି ହୋଇ ସୃଷ୍ଟି କରନ୍ତି ଯହିଁରେ ଜୀବନ ଜଗତର ଛବି ଦିଶେ । ସେ ଜୀବନ ଉତ୍ତାନପାଦର ଜୀବନ ଓ ସେ ଜଗତ କ୍ରମଉତ୍ତରଣ ଦିଗରେ ଉର୍ଦ୍ଧ୍ୱମୁଖୀ ଜଗତ । ସେଠାରେ ଅଂଧକାର ଅଛି ସତ ମାତ୍ର, ତାଠାରୁ ମୁକ୍ତିପାଇବାରେ ଉପାୟ ମଧ୍ୟ ଅଛି । ସବୁ ଅଂଧାର ଶେଷରେ ଅଭିଳଷିତ ସୂର୍ଯ୍ୟୋଦୟଟିଏ ଅପେକ୍ଷା କରିଛି ମଣିଷକୁ । ଚନ୍ଦ୍ରଶେଖରଙ୍କ ଉପନ୍ୟାସତ୍ରୟ ସମ୍ପର୍କରେ ଏ ଆଲୋଚନାଟି ସୀମିତ ।

'ଯନ୍ତ୍ରାରୂଢ଼' ଉପନ୍ୟାସଟି ଭଗବଦ୍ ଗୀତାର ସେହି ପ୍ରସିଦ୍ଧ ଶ୍ଳୋକ
'ଈଶ୍ୱରଃ ସର୍ବଭୂତାନାଂ ହୃଦ୍ଦେଶେର୍ଜୁନ ତିଷ୍ଠତି
ଭ୍ରାମୟନ୍ ସର୍ବଭୂତାନି ଯନ୍ତ୍ରାରୂଢ଼ାନି ମାୟୟା ।।''
(ଶ୍ରୀମଦ୍ ଭଗବଦ୍-ଗୀତା ୧୮ଶ ଅଧ୍ୟାୟ - ୬୧ ପଦ)

ଏ ସୃଷ୍ଟିରେ ପ୍ରତ୍ୟେକ ମନୁଷ୍ୟ ଯନ୍ତ୍ରାରୂଢ଼ । ନାୟକ ସନାତନ ଭିତରେ ସନତନୀ ଆର୍ଯ୍ୟ ଚେତନା ପାଠକକୁ ଆଛନ୍ନ କରେ । ସେ ବୁଝିପାରେ ଯେ ସଂସାର ମାୟାମୟ, କ୍ଷଣିକ । ତଥାପି ସେ ସଂସାରରେ ମୋହ ଛାଡ଼ିପାରେ ନାହିଁ କାରଣ ସେ ଯନ୍ତ୍ରାରୂଢ଼ । ଯନ୍ତ୍ରର ଆଦେଶ ବା ଆଗ୍ରହ ବ୍ୟତୀତ ଯନ୍ତ୍ରଠାରୁ ମୁକ୍ତି ସମ୍ଭବ ନୁହେଁ ବରଂ ଯନ୍ତ୍ରାରୂଢ଼ ହୋଇ ଧନ୍ଦି ହେବାହିଁ ମାନବର ନିୟତି । ସନାତନ ନାମକରଣଟି ମଧ୍ୟ ଇଚ୍ଛାକୃତ । ଏହି ନାମ ମଧ୍ୟରେ ମୁକ୍ତି ପିପାସା ଚିରନ୍ତନ ମାନବାତ୍ମାକୁ ହିଁ ପ୍ରତୀକିତ କରାଯାଇଛି । ଏକାଧାରରେ ଭୋଗ ଓ ଯୋଗ, ସଂସାର ଓ ସନ୍ୟାସକୁ ଧରି ରଖିଥିବା ସନାତନ ଭିତରେ ଔପନ୍ୟାସିକ ଏକ ଶୁଦ୍ଧ ଚୈତନ୍ୟକୁ ଠାବ କରିଛନ୍ତି । ଅସୂର୍ଯ୍ୟ ଉପନିବେଶ ୧୯୭୪ରେ ରଚିତ ଉପନ୍ୟାସ । ଭାବମୟ ଦୃଷ୍ଟିରୁ ବିଗ୍ବର କଲେ ଏହା ଯନ୍ତ୍ରାରୂଢ଼ ପୂର୍ବବର୍ତ୍ତୀ ଭଳି ମନେହୁଏ । ପାଶ୍ଚାତ୍ୟ ସଂସ୍କୃତି ସହିତ ଭାରତୀୟ ସଂସ୍କୃତି ଏକୀଭୂତ ହେବାପରେ ସାଂସ୍କୃତିକ ଅବକ୍ଷୟର ଚିତ୍ର ଏହି ଉପନ୍ୟାସରେ ଚିତ୍ରିତ । ଶିକ୍ଷିତ ସଂଗତିସମ୍ପନ୍ନ ମଣିଷମାନଙ୍କର କାମନା ଜର୍ଜରିତ ମାନସିକତା, ସ୍ୱାର୍ଥପରତା ଓ ହିଂସାର ଚିତ୍ର ଦେବାରେ ଉପନ୍ୟାସଟି ଆଧୁନିକ ଜନଜୀବନର ଏକ ସ୍ୱୟଂସଂପୂର୍ଣ୍ଣ ଆଲେଖ୍ୟ ପାଲଟି ଯାଇଛି । ଉପନ୍ୟାସର ନାୟକ ଜୟରାମ ଭାରତୀୟ ମୂଲ୍ୟବୋଧ ତଥା ନୈତିକତାରେ ବିଶ୍ୱାସୀ । ମାତ୍ର ଜୟନ୍ତ ଭଳି ନୀତିହୀନ ବ୍ୟକ୍ତିମାନେ ତାଙ୍କୁ ସ୍ୱାଭାବିକ ଭାବରେ ବଞ୍ଚିବାକୁ ଦିଅନ୍ତି ନାହିଁ । ବସ୍ତୁବାଦୀ ମଣିଷ ସ୍ୱାର୍ଥପାଇଁ ଯେକୌଣସି ଅନୀତି କରିପାରେ କିନ୍ତୁ ଏପରି ମଧ୍ୟ ହୁଏ ଯେ, ସାମାଜିକ ଜୀବନରେ ବିଶ୍ୱାସ କରୁଥିବା ମଣିଷଟି ଅସହାୟ ହୋଇ କୌଣସି ପ୍ରକାର ପ୍ରତିରୋଧ କରିପାରେ ନାହିଁ । ବିଦ୍ରୋହ ଓ ବିପ୍ଳବର କଥା ଭାଷଣରେ ରହିଥାଏ । ବଞ୍ଚିବା ପାଇଁ ତାକୁ କେବଳ ସାଲିସ୍ କରିବାକୁ ପଡ଼େ ।

ସଂସାରର ବଂଧନକୁ 'ନବଜାତକ' ଉପନ୍ୟାସର ତୈଜସ ପୁରୁଷ ଆହ୍ୱାନ ଭାବରେ ଗ୍ରହଣ କରେ । ଅଦୃଶ୍ୟ ବୃହତଙ୍କ ଆଦେଶରେ ତୈଜସ ପୁରୁଷ ଦୀକ୍ଷିତଭିକ୍ଷୁଙ୍କର କାୟା ପ୍ରବେଶ କରନ୍ତି । କାୟା ପ୍ରବେଶ ପରେ ତାଙ୍କ ପାଇଁ ସଂସାରର ମାୟା ତୀବ୍ରତର ହୁଏ । ତେଣୁ ସେ ଉଚ୍ଚାରଣ କରନ୍ତି ନାମ ଓ ରୂପ ଉଭୟ ମିଥ୍ୟା । ତେଣୁ ସମାଜ ଓ ସଂସାର ଉଭୟ ତାଙ୍କ ପାଇଁ ପ୍ରତିକ୍ରିୟାଶୀଳ ହୋଇ ତାଙ୍କୁ କଠୋର ଦଣ୍ଡାଦେଶ ଦେଇଛନ୍ତି । ଯୋଗଦ୍ୱାରା ସେ ସମସ୍ତ ଦଣ୍ଡାଦେଶକୁ ଅତିକ୍ରମ କରନ୍ତି । ସାଂସାରିକ ବଂଧନରେ ବନ୍ଧା ମଣିଷଟି ନିଜର ହସ କାନ୍ଦ, ଦୁଃଖ ସୁଖର ଅଭ୍ୟାସ ମଧ୍ୟରେ ଏପରି ମଜ୍ଜିଥାଏ ଯେ ସେ ଆତ୍ମାର ଉନ୍ନତି ସଂପର୍କରେ ଚିନ୍ତା କରିପାରେ ନାହିଁ । ତାର ସୁପ୍ତ ଚେତନାକୁ ଜାଗ୍ରତ କରିବା ପାଇଁ ତୈଜସ ପୁରୁଷଙ୍କ ଭଳି ମହାତ୍ମାମାନବର ଆବଶ୍ୟକତା ଅଛି । ସାଧନା ମାଧ୍ୟମରେ ପ୍ରତ୍ୟେକ ବ୍ୟକ୍ତି ନିଜ ନିଜ ଯାତ୍ରାର ସଫଳ ପରିସମାପ୍ତି କରିପାରିବେ ବୋଲି ଔପନ୍ୟାସିକ ନବଜାତକ ମାଧ୍ୟମରେ ବାର୍ତ୍ତା ପ୍ରଦାନ କରିଛନ୍ତି ।

**ଦାର୍ଶନିକତାର ଉପଯୋଗ :—**

ଔପନ୍ୟାସିକ ଚନ୍ଦ୍ରଶେଖରଙ୍କ ଉପନ୍ୟାସଗୁଡ଼ିକରେ ଦାର୍ଶନିକତାର ସ୍ପର୍ଶ ବେଶ୍ ସ୍ପଷ୍ଟ । 'ଯନ୍ତ୍ରାରୂଢ଼'ର ସନାତନ ଦାସ ଚରିତ୍ରରେ ସଂସାରୀ ଓ ସନ୍ୟାସୀର ସମନ୍ୱୟ ଚମତ୍କାର । ତାଙ୍କ ବ୍ୟକ୍ତିତ୍ୱର ଗୋଟିଏ ପାର୍ଶ୍ୱ ସାଂସାରିକ କ୍ଳେଶ ଓ ଜଂଜାଳରେ ଯନ୍ତ୍ରାରୂଢ଼ ଓ ଅପରପାର୍ଶ୍ୱ ଐଶ୍ୱରୀୟ ଯନ୍ତ୍ରାତୀତ ହେବାପାଇଁ ବ୍ୟାକୁଳ । ମାୟା ନିକଟରେ ସମସ୍ତ ମାନବ ସମାଜ ଅଠାକାଠିରେ ପଡ଼ିଥିବା ଶୁଆପରି । ଉପନ୍ୟାସର ପ୍ରାରମ୍ଭରେ ସନାତନ ଦାସ ସାଧାରଣ ମଣିଷଟିଏ ମାତ୍ର । କିନ୍ତୁ ତା'ର ଅନ୍ତର୍ଜଗତ ବେଶ୍ ଗଭୀର ଓ ମନନଶୀଳ । ସାଂସାରିକ ବନ୍ଧନର ଡୋର ଛିଣ୍ଡାଇବା କଷ୍ଟକର ବୋଲିଜାଣି ମଧ୍ୟ ସେ ଲକ୍ଷ୍ମୀ— ନାରାୟଣଙ୍କ ଠାରେ ଲୟ ରଖନ୍ତି । ଜଗନ୍ନାଥଙ୍କ ଆଖି ଦେଖି ଅଭିଭୂତ ହୋଇପଡ଼ନ୍ତି । କିନ୍ତୁ ଜଗନ୍ନାଥଙ୍କୁ ଦେଖିବାପରେ ସେ କାଶୀଯାତ୍ରା କରନ୍ତି । କାଶୀର ମଣିକର୍ଣ୍ଣିକା ଘାଟରେ ପହଞ୍ଚିବା ପରେ ତାଙ୍କ ଚେତନାର ରୂପାନ୍ତର ଘଟିଛି । ଔପନ୍ୟାସିକଙ୍କ ଭାଷାରେ "ସାଁ ସାଁ ହୋଇ ତାଙ୍କ ମଝିଶିରା ହାଡ଼ଟା କନ କନ ହୋଇଉଠିଲା । ତାଙ୍କୁ ଲାଗିଲା ସେ ଯେମିତି ଓସାରିଆ ହୋଇଯାଉଛନ୍ତି । ମଣିକର୍ଣ୍ଣିକା ଘାଟ ଗୋଟାଯାକ ସେ ଘୋଟି ଯାଉଛନ୍ତି ଗୋଟେ ଛାଇ ପରି । ମୁଣ୍ଡଟା ଯାଇ କାହିଁ କୋଉ ଉପରେ ଲାଗିଛି । ବର୍ଷା ପାଣି ପଶିଗଲେ ହୁଙ୍କାରୁ ପକ୍ଷାଲଗା ଉଇ ବାହାରିଲା ପରି ଖର୍ବ ଖର୍ବ ଲୋକ ତାଙ୍କରି ଭିତର ଦେଇ ସାଇଁ ସାଇଁ ହୋଇ ବାହାରିଯାଉଛନ୍ତି । ତାଙ୍କରି ଭିତର ଦେଇ ପୁଣି ଫେରିଆସୁଛନ୍ତି । ସେ ଯେମିତି ଫାଙ୍କ । ଉଶ୍ୱାସିଆ ହୋଇ ପବନରେ ମିଳେଇ ଯାଉଛନ୍ତି । (ଯନ୍ତ୍ରାରୂଢ଼/ପୃ-୧୫୩) ଏହା ଭଗବତ ଗୀତାର ଦର୍ଶନ ଓ ଯୋଗର ଅନୁଭୂତି ସହିତ ସମତା ରକ୍ଷାକରେ ।

ମଣିଷ ଠାରୁ ତାର ଛାଇ କଦାପି ଛିଣ୍ଡିଯାଇ ପାରିବ ନାହିଁ । ମଣିଷ ତା ଉପରେ ଚଢ଼ି ଆଲୁଅ ଆଡ଼କୁ ଯିବ । ଛାଇ ହିଁ ଆଲୁଅ ଆଡ଼କୁ ଯିବାକୁ ମଣିଷକୁ ଶକ୍ତି ଦେବ । ଆଲୁଅରେ ମିଶିଗଲା ପରେ ଛାଇର କୌଣସି ଅବଶେଷ ରହିବ ନାହିଁ । ଏହାହିଁ ଦର୍ଶନର ଗୂଢ଼ ରହସ୍ୟ, ଯାହା ଯନ୍ତ୍ରାରୂଢ଼ରେ ପ୍ରତିଫଳିତ ।

'ଅସୂର୍ଯ୍ୟ ଉପନିବେଶ'ର ନାମକରଣରୁ ହିଁ ଦର୍ଶନର ଆଭାସ ମିଳେ । ସାମର୍ଥ୍ୟ ଥିବା ମଣିଷ ହିଁ ନିଜର ଅହଂକାର ପ୍ରତିପାଦନ କରିବା ପାଇଁ ଉପନିବେଶ ସୃଷ୍ଟିକରେ । ଏହା ତାର ପୈତୃକ ନୁହେଁ ବରଂ ଆହୃତ । କିନ୍ତୁ ଯଦି ସେ ଉପନିବେଶକୁ ସୂର୍ଯ୍ୟାଲୋକ ନଯାଏ ତେବେ କଣ ହେବ ? ଯାହା ହୋଇଛି ଜୟରାମ ବାବୁଙ୍କର । ଜୟନ୍ତ ପରିଡ଼ା ଭଳି ବ୍ୟକ୍ତିମାନେ ପ୍ରତିଶୋଧପରାୟଣ ହୋଇ ଜୟରାମଙ୍କୁ ନାନାପ୍ରକାର ଅସୁବିଧାରେ ପକାନ୍ତି । ତାଙ୍କର ସରଳ ଜୀବନକୁ ଜଟିଳ କରିଦିଅନ୍ତି । ବିଶ୍ୱମ୍ଭର ଭଳି ସରଳ ଯୁବକକୁ ଅତ୍ୟାଧୁନିକ ଅସତ୍ ଚରିତ୍ରା ସୁଜାତା ସହିତ ବିବାହ କରାଇ ଥରେ ଜୟନ୍ତ ସଫଳ ହୋଇଛି । ସୋଣ୍ଡୀ ଭଳି ଚରିତ୍ର ତାକୁ ଏଥିପାଇଁ ସାହାଯ୍ୟ ମଧ୍ୟ କରିଛି । କିନ୍ତୁ ସୁଜାତା

ନିଜ ଗର୍ଭସ୍ଥ ସନ୍ତାନକୁ ନଷ୍ଟ କରିବାପରେ ସୋନ୍ଧୀ ବା ଜୟନ୍ତ କେହି ତାକୁ ଆଡ଼ ଆଖିରେ ଚାହିଁ ନାହାନ୍ତି । ନାରୀର କାମିନୀରୂପ ଯେ କ୍ଷଣସ୍ଥାୟୀ ଓ ଆଚରଣରେ ତ୍ରୁଟି ଏହି ରୂପକୁ ହତଶ୍ରୀ କରିଦିଏ, ସୁଜାତା ତାର ପ୍ରକୃଷ୍ଟ ଉଦାହରଣ । ବିଶ୍ୱମ୍ଭରର ଦୁଇ ସନ୍ତାନଙ୍କୁ ନେଇ ଗ୍ରକର ବାଞ୍ଛା ସେମାନଙ୍କ ଜେଜେ ଦିଗମ୍ବରଙ୍କ ଗୃହରେ ଆଶ୍ରୟ ନେଇଛି । ବିଶ୍ୱମ୍ଭର ନିଜର ସାନଭାଇ ସୋମନାଥଙ୍କୁ ଧରି ଭୁବନେଶ୍ୱର ଯାଇଛନ୍ତି । ଜୟନ୍ତ ବାଟମଙ୍ଗଳା ପାଖରେ ଗାଡ଼ି ରଖି ସୋନ୍ଧୀ ସହିତ ରୋଜି ନାମ୍ନୀ ବାଳିକାକୁ ବଳାତ୍କାର କରିଛନ୍ତି । ବିଶ୍ୱମ୍ଭର ସୋମନାଥଙ୍କୁ ଜୟନ୍ତ ଭାବି ପଥର ଛେଚି ହତ୍ୟା କରିଛି । ଛବିକୁ ଦିଗମ୍ବର ନିଜର ପାପପଙ୍କିଳ ଅତୀତର ପ୍ରେମି ବୋଲି ଭାବି ତାର ତଣ୍ଟି ଚିପିବାକୁ ବାହରିଛି । ମାତ୍ର ଜୟନ୍ତ ସୁଯୋଗର ସଦ୍‌ବ୍ୟବହାର କରି ରୋଜିକୁ ଉପଭୋଗ କରିବସିଛି । ଶେଷରେ ଅଜାଣତରେ ବିଶ୍ୱମ୍ଭର ଭାତୃହନ୍ତା ପାଲଟିଯାଇଛି । କାମନା ମଣିଷକୁ ଅମଣିଷ କରିଦିଏ ଓ ଥରେ ଅମଣିଷ ହେବା ପରେ ହତ୍ୟା, ଧର୍ଷଣ, ଲୁଣ୍ଠନ ଇତ୍ୟାଦି ଯାହା କରିବସିଲେ ମଧ୍ୟ ବିବେକ ନୀରବ ହୋଇଯାଏ । ସେଥିପାଇଁ ଔପନ୍ୟାସିକଙ୍କ ଭାଷାରେ "ଏଠି ଆମେ ଶିଷ୍ଟାଗ୍ରର ପିନ୍ଧୁ, ସ୍ୱାଭିମାନ ପିନ୍ଧୁ, ଫେସନ ପିନ୍ଧୁ, ଖାଉ କେବଳ ଗୁଡ଼ିଏ ଅଭ୍ୟାସ, ଗୁଡ଼ିଏ କଣ୍ଟା ଗ୍ରମଚ ଓ ଅନେକ ମିଛିମିଛିକା କ୍ଷୁଧା, କହୁ ଗୁଡ଼ିଏ କଞ୍ଚାମିଛ । ଯାହା ଆମ ଆଖି ଆଗରେ ଇନ୍ଦ୍ରଜାଲର ଶାଖା ମେଲି, ପଲ୍ଲବି ଯାଏ । ଗଞ୍ଜେଇ ଧୂଆଁ ପରି ମିଳେଇ ମଧ୍ୟ ଯାଏ ।" (ଅସୂର୍ଯ୍ୟ ଉପନିବେଶ (ପୃ-୧୫)

ରୂପାନ୍ତରୀକରଣ ମାଧ୍ୟମରେ ନବଜାତକର ତୈଜସପୁରୁଷ ଯୋଗସିଦ୍ଧିର ପୂର୍ଣ୍ଣତା ଲାଭ କରନ୍ତି । କାୟା ପ୍ରବେଶପରେ ସଂସାରର ମାୟାରେ ସେ ଅଭିଭୂତ ହୁଅନ୍ତି । ନାମ ଓ ରୂପ ଉଭୟକୁ ମିଥ୍ୟା ବୋଲି ଘୋଷଣା କରି ସେ ରାଜଦ୍ରୋହୀ ପାଲଟି ଯାଆନ୍ତି । ମାତ୍ର ସେ ଯୋଗଦ୍ୱାରା ସମୟ ପ୍ରବାହକୁ ଅଟକାଇ ଦେବାର ପ୍ରୟାସ କରନ୍ତି । ଅପର ପକ୍ଷରେ ଦୀକ୍ଷିତଭିକ୍ଷୁ ସୁନନ୍ଦ ଓ ଅମୀୟ ନାମକ ଦୁଇ ଶିଷ୍ୟଙ୍କୁ ସଂସାର ଚିହ୍ନାଇବା ପାଇଁ ସଂସାରିକ ବନ୍ଧନରେ ଆବଦ୍ଧ କରନ୍ତି । ସୁବୋଧ ସଂସାର ଭିତରେ ରହି ମଧ୍ୟ ମୁକ୍ତ ରହିପାରନ୍ତି । ସେହି ଦୀକ୍ଷିତଭିକ୍ଷୁ ଯୋଗଦ୍ୱାରା ଅନ୍ୟର ଦୁଃଖକୁ ଆତ୍ମସ୍ଥ କରିପାରନ୍ତି । ନବଜାତକ ନାମକରଣ ମଧ୍ୟରେ ତାତ୍ତ୍ୱିକତା ଉପଲବ୍ଧ ହୁଏ । ମନୁଷ୍ୟ ମହାଚେତନାର ଅଂଶବିଶେଷ । ସେ ନିଜେ ଚେତନ । ତେଣୁ ତା'ର ଉତ୍ତରଣ ହିଁ ଅବଶ୍ୟମ୍ଭାବୀ । ଶ୍ରୀ ଅରବିନ୍ଦଙ୍କ ଦର୍ଶନରେ ଏହି ଚେତନାର ଉତ୍ତରଣ ବିଷୟରେ ବହୁବାର କୁହାଯାଇଛି । 'ନବଜାତକ'ର ମୁଖବଂଧରେ ଔପନ୍ୟାସିକ କୁହନ୍ତି -"କୌଣସି ଅସାମାନ୍ୟ ଭୂମିରେ ସ୍ୱୟଂ ବିଚରଣ କରିଥିଲାବେଳେ ସମ୍ଭବ-ଅସମ୍ଭବ ଅନେକ ତନୁ ବିସ୍ତାର ଏକ ରୂପ ପରିଗ୍ରହ କଲା । ତାର କିଛି ଅଂଶ ଅବିଚଳିତ, ଗଭୀର, କାଳ ସମ୍ମତ ଏବଂ ପରିଚିତ, ଅଥଚ ଅନ୍ୟ ଅଂଶଟି ଏକ ଭାସମାନ, ଅଜ୍ଞାତ ସ୍ୱର୍ଣ୍ଣାଭ ମେଘଖଣ୍ଡର ସୁଦୂର ପ୍ରତିଶ୍ରୁତି ପରି ଅପରିମେୟ ସେ ସମଗ୍ର ରୂପଟିର

ନାମ ନବଜାତକ'' । ଅନ୍ଧ, କୁଷ୍ଠ ଓ ପିଙ୍ଗଳା ଭଳି ବ୍ୟକ୍ତିଙ୍କର ଜ୍ଞାନଚକ୍ଷୁ ଉନ୍ମୀଳନ କରି ମାନବିକ ଚେତନାକୁ ସ୍ରଷ୍ଟା ଯଥାସମ୍ଭବ ଉତ୍ତରିତ କରିପାରିଛନ୍ତି । ବ୍ରହ୍ମ ଶବ୍ଦର ଅର୍ଥ କରି ଶଙ୍କର କହନ୍ତି ବ୍ରହ୍ମ ନିତ୍ୟ ଶୁଦ୍ଧ ବୁଦ୍ଧ, ମୁକ୍ତ ସ୍ୱଭାବ, ସର୍ବଜ୍ଞ ଓ ସର୍ବଶକ୍ତିମାନ । ତେଣୁ ମୁକ୍ତି ହେଉଛି ନାମରୂପ ଓ ସଂସାରରୁ ମୁକ୍ତି । ବସ୍ତୁ ସ୍ଥାନାନ୍ତରିତ ହେଲେ ଅଦୃଶ୍ୟ ହୋଇଯାଏ ଓ କାଳାନ୍ତରିତ ହେଲେ ମଧ୍ୟ ଅଦୃଶ୍ୟ ହୋଇଯାଏ । ତେଣୁ ଦୃଶ୍ୟ ଓ ଅଦୃଶ୍ୟ ଉଭୟ ଭ୍ରମ । ମନର ଶକ୍ତିକୁ ଦେଖିହୁଏ ନାହିଁ ବରଂ ଅନୁଭବ କରିହୁଏ । ତେଣୁ ଔପନ୍ୟାସିକଙ୍କ ଭାଷାରେ ଏଠି ମନର ଶୁଦ୍ଧ ଶକ୍ତି ଅଛି । କିଛି ଭ୍ରାନ୍ତି ନାହିଁ । ମନ ଏକ ଅତି ବିଶାଳ ଶକ୍ତି । ତାକୁ ଅନୁଭବ କର । ଏଠି କୌଣସି ରୂପ ନାହିଁ । ସବୁରୂପର ଆଢୁଆଳରେ ଗୋଟିଏ ମାତ୍ର ସ୍ୱରୂପ । ଏ ଗଛ ଗଛ ନୁହେଁ । ଏ ପାହାଡ଼ ପାହାଡ଼ ନୁହେଁ । ଏଗୁଡ଼ିକ ସବୁ ଗୋଟିଏ ଲେଖାଁ ରୂପ ଏବଂ ତା ସହିତ ଯୋଖି ହୋଇ ରହିଥିବା ଗୋଟିଏ ଲେଖାଁ ନାମ । ଯାକୁ ଅତିକ୍ରମ କରିଗଲେ ସ୍ୱରୂପ ଦୃଶ୍ୟ ହେବ । (ନବଜାତକ, ପୃ-୪୧)

ସଂସାର ଭିତରେ ରହି ଅନାସକ୍ତ ରହିହେବ ବା ଜ୍ଞାନ ପ୍ରାପ୍ତିପରେ ଏହି ଛୋଟ ଛୋଟ ପ୍ରାପ୍ତି ଅନାବଶ୍ୟକ ମନେ ହେବ । ଏକଥା ଚନ୍ଦ୍ରଶେଖର ବାରମ୍ବାର କହିଛନ୍ତି । ସକଳ ତରଙ୍ଗାୟିତ । କାଳସମୁଦ୍ର ଅତିକ୍ରମ କଲେ ଯେଉଁ ନିସ୍ତରଙ୍ଗ ବାରିଧି ଦୃଷ୍ଟିଗୋଚର ହୁଏ ତାହାହିଁ ମହାକାଳ । ସେଠାରେ ମଣିଷ ନର ବା ନାରୀ ନୁହେଁ । ସେ ରୂପ ଓ ନାମହୀନ ଏକ ଚେତନା । ଏଠାରେ ବୃହଦ୍ ନାମକରଣ ଭିତରେ ସେହି ଉପନିଷଦୀୟ ଭାବଧାରା ପ୍ରତିଫଳିତ । ଅବାସ୍ତବ ରହସ୍ୟମୟ କୁହେଳିକା ଆତ୍ମିକ କେଉଁ କାଳ୍ପନିକ ସ୍ୱର୍ଗରାଣୀର କାମନା ସେ କରନ୍ତି ନାହିଁ । ଅଧିକନ୍ତୁ କାମନା ପୂର୍ତ୍ତିରେ ଦୁଃଖର ବିନାଶ ହୋଇପାରିବ ବୋଲି ଉପଦେଶ ଦିଅନ୍ତି । ସେ ଶରୀରକୁ ବେଶ୍ ମର୍ଯ୍ୟାଦା ଦିଅନ୍ତି । ଏହି ଶରୀର ଜୀବନ ଓ ମୃତ୍ୟୁକୁ ଧାରଣ କରେ । ତେଣୁ ଶରୀର ତ୍ୟଜ୍ୟ ନୁହେଁ ବରଂ ସମ୍ମାନର ସହିତ ତାକୁ ଦୀର୍ଘସ୍ଥାୟୀ କରାଯାଇପାରେ ।

ତାଙ୍କର ପ୍ରତି ଉପନ୍ୟାସରେ କିଛି ବାର୍ତ୍ତା ରହିଛି । ଏକାଧିକ ତତ୍ତ୍ୱର ଉପସ୍ଥାପନା ଏଗୁଡ଼ିକରେ କରାଯାଇଛି । ସବୁ ଉପନ୍ୟାସରେ ଚନ୍ଦ୍ରଶେଖରଙ୍କର ସଂଭ୍ରାନ୍ତି ପ୍ରକଟିତ । ସତେ ଯେପରି ସର୍ବମୟ ଶ୍ରୋତା/ପାଠକମାନଙ୍କୁ ସ୍ରଷ୍ଟା ଚନ୍ଦ୍ରଶେଖର ବୃହତ୍ତର ଗିରିଶୃଙ୍ଗର ସନ୍ଧାନ ଦେଇଛନ୍ତି । ତୀବ୍ର କାମନା ଫଳରେ ହିଁ ସ୍ରଷ୍ଟାର ମାନସିକ ପୂରଣ ହୋଇପାରେ । ସେ ସ୍ରଷ୍ଟା ପାଲଟିଯାଏ ଦ୍ରଷ୍ଟା ।

**ଆତ୍ମ ଅନ୍ୱେଷାର ମନ୍ତ୍ରଉଚ୍ଚାରଣ :—**

ଆତ୍ମଅନ୍ୱେଷା (Search for self) ଓ ଆତ୍ମବିଶ୍ଳେଷଣ (Self analysis) ବିଂଶ ଶତକର ଚିନ୍ତାଶୀଳ ମଣିଷଙ୍କୁ ନୂଆ ଭାବରେ ଜୀବନ ତଥା ଜଗତକୁ ଦେଖିବାର ସାମର୍ଥ୍ୟ

ଦେଇଛି । ଯେତେବେଳେ ମନୁଷ୍ୟ ଅତୀତ ସହିତ ଅସଂପୃକ୍ତ ହୋଇପଡ଼େ, ସେତେବେଳେ ତାର ନିଜ ଉପରୁ ବିଶ୍ୱାସ ଊଣା ହୋଇଯାଏ । ଫଳରେ ସେ ଏହି ପୈତୃକ ପୃଥିବୀରେ ନିଜକୁ ସମ୍ପୂର୍ଣ୍ଣ ନିଃସଙ୍ଗ ମନେକରେ । ବେଳେବେଳେ ବିଜ୍ଞାନର ନିରଙ୍କୁଶ ଆଧିପତ୍ୟ, ବ୍ୟକ୍ତିକୁ ବସ୍ତୁରେ ପରିଣତ କରିଦେଉଥିବା ଦେଖି ଏହି ଚିନ୍ତାଶୀଳ ମଣିଷ ବ୍ୟକ୍ତି ପ୍ରତି ସମ୍ବେଦନଶୀଳ ହୁଏ । ସେ ବ୍ୟକ୍ତିକୁ ସ୍ୱାତନ୍ତ୍ର୍ୟ ଦେବାରେ ବିଶ୍ୱାସ କରେ ଓ ଜୀବନକୁ ସ୍ୱାୟତ୍ତ ବୋଲି ଘୋଷଣା କରେ । ଏହାହିଁ ଅସ୍ତିତ୍ୱବାଦୀ ଚିନ୍ତାଧାରା । ଅସୂର୍ଯ୍ୟ ଉପନିବେଶର ଜୟରାମ ଚରିତ୍ର ଭିତରେ ଏହି ଅନ୍ୱେଷା ବେଶ୍ ତୀବ୍ର । ସେ ଧର୍ମୀୟ ଅନୁଷ୍ଠାନମାନଙ୍କୁ ବ୍ୟଙ୍ଗ କରେ । ପ୍ରତିକୂଳ ପରିବେଶରେ ଥାଇ ମଧ୍ୟ ବଞ୍ଚିବା ହିଁ ଏକମାତ୍ର ଧ୍ୟେୟ ବୋଲି ବୁଝିଥାଏ । ବର୍ତ୍ତମାନ ଉପରେ ନିର୍ଭରଶୀଳ ଏହି ଚରିତ୍ର ଈଶ୍ୱରଙ୍କ ଅସ୍ତିତ୍ୱକୁ ସ୍ୱୀକାର କରେ ନାହିଁ । ସେ କହେ "ଈଶ୍ୱର ବୋଲି ପଦାର୍ଥଟି ଗୋଟିଏ ଶବ୍ଦ କେବଳ ଯାହାକୁ ଖୋଜିବାକୁ ଆମେ ଅନେକ ସମୟରେ ବ୍ୟାକୁଳ ହେଉ ଏବଂ ପାଉନା, ପାଇପାରୁନା, ପାଇ ନାହୁଁ ବା ପାଇ ପାରିବୁ ନାହିଁ । " (ଅସୂର୍ଯ୍ୟଉପନିବେଶ-ପୃ୧୫୭) । ଜୟନ୍ତ ପରିଡ଼ା ମଧ୍ୟ ମଣିଷକୁ ଭଦ୍ର ମଜବୁଦ୍ ଗ୍ୱରିଗୋଡ଼ିଆ ଷ୍ଟୁଲ୍ ବୋଲି ମନେକରେ । ଯାହା ଉପରେ ପାଦଦେଇ ଉପରକୁ ଚଢ଼ିହେବ । ବିଦ୍ୟାଧର ବଂଚିବା ପାଇଁ ସୋଣ୍ଡୀ ନିକଟରେ ଗ୍ୱକିରୀ କରେ, କାରଣ ବଂଚିବା ହେଉଛି ପ୍ରଥମ ସମସ୍ୟା ।

'ଯନ୍ତ୍ରାରୂଢ଼'ରେ ଏ ସମସ୍ୟା ଅଛି ସତ୍ୟ ମାତ୍ର ତା ଠାରୁ ଅଧିକ ଭାବରେ ସମାଧାନର ସହଜ ସୂତ୍ରଟିଏ ରହିଛି । ସେଠାରେ ସବୁ ସମାଧାନ ଘଟିଛି ଜଗନ୍ନାଥଙ୍କ ସହିତ ମିଶିଯିବାର ଅଭୀପ୍ସା ଭିତରେ । ସେଠାରେ ଜଗନ୍ନାଥ କୌଣସି ଦେବତାର ନାମ ମାତ୍ର ନୁହେଁ । ଆଧ୍ୟାତ୍ମିକ ସମର୍ପଣର ଭିନ୍ନ ନାମ । "ପଣ୍ଡିତେ କହିଥିଲେ ଯେ ଆମେ ନିଜ ଦୋଷରୁ କଷ୍ଟପାଉ । ନିଜେ ନିଜ ପାଇଁ ବନ୍ଧନ ତିଆରି କରି ନିଜେ ତା ଭିତରେ ପଡ଼ି ଛଟପଟ ହେଉ । ସେଦିନ ଶତପଥୀ ମଧ୍ୟ ସେହି କଥା କହିଥିଲେ ।" ଜଗନ୍ନାଥ କି ଅଦ୍ଭୁତ ରୂପ ! ଗୋଡ଼ ନାହିଁ ସେ ଅଚଳ ସ୍ଥାଣୁ । ତମ ପାଖକୁ ଆସି କିଛି କରିଦେବେ ନାହିଁ । ହାତନାହିଁ - ସେ କର୍ମରେ ନିର୍ଲିପ୍ତ । କାନ ନାହିଁ । ଇସ୍ କେଡ଼େ କଥା ହୋଇଛି ସତେ । ପୁଣିକାନ ନାହିଁ ? ଯେତେ ଡାକିଲେ ସେ ଶୁଣିବେ ନାହିଁ ।କେବଳ ମେଘ ପରି କଳା ମୁହଁରେ ସୂର୍ଯ୍ୟ ଚନ୍ଦ୍ରପରି ଏଡ଼େ ଏଡ଼େ ଚକା ଚକା ଆଖି ଦୁଇଟା ସେ ସେହି ଗମ୍ଭାରୀ ଭିତରେ ଖାଲି ଦେଖୁଛି । ତା ଆଖିକୁ ଦିଶିଲା ପରି କାମ କରିବା ହେଲା ଅସଲ ଧର୍ମ । (ଯନ୍ତ୍ରାରୂଢ଼-ପୃ-୫୨-୫୩) ଯଦି ଥରେ ପତିତପାବନ ବାନାକୁ ଗ୍ୱହିଁଦେଲେ ସକଳ ପାପତାପ ଦୂର ହୋଇଯିବ, ତେବେ ଆଉ ବାଟ ଭୁଲିବାର କଥା ଆସିବ କେଉଁଠୁ ? ପୁଣି ନିଜ ଦୁଃଖରେ ଭାଙ୍ଗି ପଡୁଥିବା ମଣିଷ ଚୌଦ ବ୍ରହ୍ମାଣ୍ଡର ଦୁଃଖ ଘୁଞ୍ଚାଇବା ପାଇଁ

ସେହି ବିପୁଳ ଶକ୍ତି ନିକଟରେ ପ୍ରାର୍ଥନା କରିବ । କର୍ମଫଳ ଭୋଗୁଛି ବୋଲି ଅନେକ ଉଦାହରଣ ସହିତ ନିଜକୁ ବାରମ୍ବାର ବୁଝାଉଥିବ ସତ, ମାତ୍ର ଦୁଃଖ ସୁଖର ଆବର୍ତ୍ତନ ଚକ୍ରରୁ ମୁକ୍ତି ପାଇବାର କାମନାଟିକୁ ଅନ୍ତର ଭିତରେ ପ୍ରଜ୍ୱଳିତ କରି ରଖିଥିବ ।

ନବଜାତକରେ ସତେଯେପରି ସେହି ଅନ୍ୱେଷଣର ଅପାର୍ଥିବ ଫଳ ପାଠକମାନେ ଆସ୍ୱାଦନ କରିଛନ୍ତି । ଦୁଃଖର ସ୍ୱରୂପ ସଂପର୍କରେ ଦୀକ୍ଷିତଙ୍କର ଏହି ଉକ୍ତି ସମଗ୍ର ଉପନ୍ୟାସର ଭାରକେନ୍ଦ୍ର ଭଳି ମନେହୁଏ । ''ବିଷମତା ହିଁ ଦୁଃଖ । କ୍ଷୁଧା ହିଁ ଦୁଃଖ । ଶରୀର ଥିଲେ କ୍ଷୁଧା ରହିବ । ମନଥିଲେ ବିଷମତା ରହିବ । ସେଥିପାଇଁ ସଂସାରରେ ଏତେ ଦୁଃଖ । ସବୁ ଦୁଃଖ ପାଇଁ ମଣିଷର ଭୟ ରହିଛି । ସବୁ ଭୟର ଚେରଗୁଡ଼ିକ ମୃତ୍ୟୁରେ ହିଁ ଦୁଃଖ ଦୁସ୍ତର ନୁହେଁ । ସେ ସବୁ ଏହି ମାଟି ଉପରେ ଲଟେଇ ଥିବା ଗୁଡ଼ିଏ ଡଙ୍କ । ଯା ଉପରେ ଖୁବ୍ ମୁକ୍ତ ଆକାଶ । ସେଠିକି ଯାଇହେବ । ଦେହ ମନର ଉପାଦାନ ବଦଳିଗଲେ ସେମାନଙ୍କ ପ୍ରକୃତି ବଦଳିବ । ତେଣିକି ଏ ଦୁଃଖ ନାହିଁ କି ମୃତ୍ୟୁ ନାହିଁ ।'' (ନବଜାତକ-ପୃ-୪୬-୪୬-୪୭)

ଜୀବନରେ ଯାତନାକୁ ଚିହ୍ନିବା ଓ ଚିହ୍ନିବାପରେ ତହିଁରୁ ମୁକ୍ତିପାଇବାର ପଥ ଖୋଜିନେବା ହିଁ ଆତ୍ମଅନ୍ୱେଷାର ମାର୍ଗ । ଔପନ୍ୟାସିକ ଚନ୍ଦ୍ରଶେଖର ଏହି ଅନ୍ୱେଷଣର କଥା କହିବାବେଳେ ଦାର୍ଶନିକରେ ରୂପାନ୍ତରିତ ହୋଇଯାଉଛନ୍ତି । ମନକୁ ଆୟତ୍ତ କରିପାରିଲେ ମଣିଷ କାମନାର କବଳରୁ ମୁକ୍ତି ପାଇପାରିବ । ଏକଥା ଯୁଗେ ଯୁଗେ ବହୁ ସାଧକ ମନୀଷୀ କହିଯାଇଛନ୍ତି । ଭାଗବତ ଠାରୁ ଆରମ୍ଭ କରି ବାଇବେଲ୍, କୋରାନ୍ ପର୍ଯ୍ୟନ୍ତ ସମସ୍ତେ ମନର ପ୍ରଭାବକୁ ସ୍ୱୀକାର କରିଛନ୍ତି । ତେଣୁ ଯନ୍ତ୍ରାରୂଢ଼ ମାନବ ପ୍ରଥମେ ଅସୂର୍ଯ୍ୟ ଉପନିବେଶରେ ବସତି ସ୍ଥାପନ ପାଇଁ ଲାଳାୟିତ ହେବା ସ୍ୱାଭାବିକ । କିନ୍ତୁ ଏକଥା ନିଶ୍ଚିତ ଯେ ସବୁଦିନେ ଉପନିବେଶ ସୂର୍ଯ୍ୟହୀନ ହୋଇରହିବ ନାହିଁ । ସେଠାରେ ଅବଶ୍ୟ ଚେତନାର ସୂର୍ଯ୍ୟୋଦୟ ହେବ । ଥରେ ଚେତନା-ସୂର୍ଯ୍ୟ ଉଦିତ ହେବାପରେ ଏ ମଣିଷର ନବଜନ୍ମ ହେବ । ସେ ହେବ ନବଜାତକ । ସେ ଆଉ ଜନ୍ମ ମୃତ୍ୟୁ ଜରାବ୍ୟାଧିର କବଳିତ ହେବନାହିଁ । ବରଂ ଏକ ଦିବ୍ୟ ଚେତନାର ସ୍ପର୍ଶରେ ତାର ଅନେକ ଉତ୍ତରଣ ଘଟିବ । ଜଗତ ମଧ୍ୟରେ ରହି ଜଗତକୁ ଅତିକ୍ରମ କରିହେବ । ଶରୀର ମୋହରେ ନ ପଡ଼ି ଶରୀର ଧାରଣ କରିବାକୁ ହେବ । ଏହି ଧାରଣା ଶ୍ରୀରଥଙ୍କର ଉପନ୍ୟାସ ତ୍ରୟରୁ ସ୍ପଷ୍ଟ ହୋଇଥାଏ ।

'ଯନ୍ତ୍ରାରୂଢ଼'ର ସନାତନ ଔପନ୍ୟାସିକଙ୍କ ସ୍ରଷ୍ଟାମାନସର ପ୍ରତିନିଧି । ସେ ସାଧାରଣ ଭିତରେ ଅସାଧାରଣ । ତେଲ ଲୁଣ ସଂସାରରେ ଘାଣ୍ଟି ହେଉଥିବା ଆଜ୍ଜନ ଜୀବଟି ବାରମ୍ବାର ଜୀବନଠାରୁ ଆଘାତ ପାଇଥିଲେ ମଧ୍ୟ ତା ଭିତରେ ଥିବା ବିଶ୍ୱାସ କ୍ରମେ ଦୃଢ଼ ହୋଇଛି ଯେ ପରଂବ୍ରହ୍ମ ଲକ୍ଷ୍ମୀନାରାୟଣ ହିଁ ଏ ସଂସାରର ପାଳନ କର୍ତ୍ତା । ମଦନପୁର ମହାଜନଙ୍କ

ରୁଦ୍ରାଭିଷେକ ପରେ ହିଁ ଏହି ଚରିତ୍ର ମଧ୍ୟରେ ଆଧ୍ୟାତ୍ମିକ ଅନ୍ୱେଷା ଜାଗ୍ରତ ହୋଇଛି । ସେ ସୂକ୍ଷ୍ମ ଚେତନାଟିଏ ଅନୁଭବ କରିବାକୁ ଉଦ୍ୟମ କରିଛନ୍ତି ।

'ଅସୂର୍ଯ୍ୟ ଉପନିବେଶ'ର ଜୟରାମ ଚରିତ୍ର ସେହିଭଳି ନୈତିକ ମୂଲ୍ୟବୋଧର ପ୍ରତିଭୂ । ଜୟନ୍ତ ନୀତିହୀନ ଯୁବକଙ୍କର ପ୍ରତିନିଧି ଯେକି ଜୟରାମକୁ ଶାନ୍ତିରେ ରଖି ଦେଉନାହିଁ । ବିଶ୍ୱମ୍ଭର ଭଳି ସରଳ ଯୁବକକୁ ସୁଜାତା ସହିତ ବିବାହ କରାଇବାପରେ ମଧ୍ୟ ସେ ସୁଜାତା ସହିତ ପାପ ସମ୍ପର୍କ ରଖିଛି । ତେଣୁ ସରଳ ବିଶ୍ୱମ୍ଭର ପାଗଳ ହୋଇ ଘର ଛାଡ଼ିଛି । ଅଧଃପତନ ଆଡ଼କୁ ମୁହାଁଇ ଥିବା ସୁଜାତା ଗର୍ଭନଷ୍ଟ କରି ହତଶ୍ରୀ ହୋଇଯିବାପରେ ଜୟନ୍ତ ବା ତାର ଆଶାୟୀ ବନ୍ଧୁ ସୋନ୍ଧୀର ମନ ନେବା ପରେ ସମର୍ଥ ହୋଇନାହିଁ । ସୁଜାତା ଅନୁଶୋଚନା କରିଛି ସତ ମାତ୍ର ତାର ଛଳନା ଫଳରେ ତାର ପରିବାର ବିପର୍ଯ୍ୟସ୍ତ ହୋଇଯାଇଛି । ରୋଜି ନାମ୍ନୀ ତରୁଣୀ ମଧ୍ୟ ଜୟନ୍ତ ଓ ସୋନ୍ଧୀର କାମନାର ଶିକାର ହୋଇଛି । ଅବଶେଷରେ ବିଶ୍ୱମ୍ଭର ଜୟନ୍ତ ମନେକରି ସୋମନାଥଙ୍କୁ ହତ୍ୟା କରିଛି । ହିଂସା, ରକ୍ତପାତ, ବ୍ୟଭିଚାର ଓ ସ୍ଖଳନର ଯେଉଁ ସ୍ୱର ଅସୂର୍ଯ୍ୟ ଉପନିବେଶରେ ପ୍ରତିଧ୍ୱନିତ, ସେଠାରେ ସାମ୍ପ୍ରତିକ ସମୟର ବିଭଙ୍ଗ ଚିତ୍ରହିଁ ଦିଶେ । ନବଜାତକ ସମ୍ପୂର୍ଣ୍ଣ ତତ୍ତ୍ୱାଶ୍ରୟୀ ଉପନ୍ୟାସ । ପ୍ରଥମ ଦୁଇଟି ଉପନ୍ୟାସର ମଣିଷର ଉତ୍ତରଣ ପାଇଁ ଯେଉଁ ଆଗ୍ରହ ରହିଥିଲା, ନବଜାତକ ସେହି ଆଗ୍ରହର ପରିଣତି । ଏଠାରେ ସୁନନ୍ଦ ବା ଦୀକ୍ଷିତଭିକ୍ଷୁ ସମସ୍ତେ ଶୁଦ୍ଧ ଚୈତନ୍ୟରେ ସଚେତନ । ଶରୀରତତ୍ତ୍ୱ ପାଇଁ ରସବତୀ ଗନ୍ଧବତୀ ପୃଥିବୀର ଆବଶ୍ୟକତା ରହିଛି । ଏହା ସ୍ଥୂଳତମ ମହାଭୂତ । ଏପାରି ଓ ସେପାରି ଶବ୍ଦ ଭିତରେ ପୃଥିବୀ ଓ ଆକାଶର କଥା ହିଁ କୁହାଯାଇଛି ।

**ପରମ୍ପରାର ଆଲୋକରେ ଚନ୍ଦ୍ରଶେଖର**

ସ୍ରଷ୍ଟା ଚନ୍ଦ୍ରଶେଖର ପୁସ୍ତକରୁ ପ୍ରାପ୍ତ ଜ୍ଞାନ ଆହରିତ୍ କୌଶଳକୁ ନେଇ ଉପନ୍ୟାସରେ ଏତାଦୃଶ ପରୀକ୍ଷା କରିନାହାନ୍ତି । ସେ ଏହିଭଳି ନବଜାତକ ସମ୍ପର୍କରେ ଗଭୀର ଅନୁଧ୍ୟାନ କରିଛନ୍ତି । ପୂର୍ବ ସୂରୀଙ୍କ ଦ୍ୱାରା ସେ ବହୁ ଭାବରେ ପ୍ରଭାବିତ । ସେ ବେଦାନ୍ତ ଦର୍ଶନ ବା ଜଡ଼ ଦର୍ଶନ ହେଉ, ଉଭୟ ଚିନ୍ତା ଚେତନାକୁ ସେ ଉପଲବ୍ଧିକୁ ଆଣିଛନ୍ତି । ଫକୀରମୋହନଙ୍କ ଠାରୁ ଗୋପୀନାଥ ମହାନ୍ତିଙ୍କ ପର୍ଯ୍ୟନ୍ତ ପ୍ରତ୍ୟେକ ସ୍ରଷ୍ଟାପୁରୁଷ ତାଙ୍କ ଲେଖନୀକୁ ସାମର୍ଥ୍ୟ ପ୍ରଦାନ କରିଛନ୍ତି । ଏପରିକି ସଚ୍ଚି ରାଉତରାୟ ତାଙ୍କ ଚିତ୍ରଗ୍ରୀବ ଉପନ୍ୟାସରେ କହନ୍ତି ଯେ -''ପ୍ରତ୍ୟେକ ସଭ୍ୟତାରେ ବାଲ୍ମିକୀଙ୍କ ଲେଖନୀ ପୂର୍ବରୁ ଦସ୍ୟୁ ରତ୍ନାକରର ଗଜାଟା ଆଗ ଦରକାର : ଆଗେ ମଣିଷକୁ ଶରୀର ଆଡ଼ୁ ବଞ୍ଚିବାକୁ ହେବ । (ସଚ୍ଚି ରାଉତରାୟ ଗ୍ରନ୍ଥାବଳୀ - ଦ୍ୱିତୀୟ ଭାଗ ପୃ-୧୦)

'ଅସୂର୍ଯ୍ୟ ଉପନିବେଶ'ରେ ଗୋପୀନାଥଙ୍କର ଦାନାପାଣିର ଛିଟିକାଏ ଦେଖିହୁଏ । ସମକାଳୀନ ଅନ୍ୟାନ୍ୟ ଗାଳ୍ପିକ ସ୍ୱର୍ଗତ ଅଖିଳ ମୋହନ ପଟ୍ଟନାୟକ ସ୍ୱର୍ଗତ ବାମାଚରଣ

ମିତ୍ର, ସ୍ୱର୍ଗତ କୃଷ୍ଣପ୍ରସାଦ ମିଶ୍ର, ମହାପାତ୍ର ନୀଳମଣି ସାହୁ, ଶାନ୍ତନୁ ଆଚାର୍ଯ୍ୟ, ସ୍ୱର୍ଗତ ସୁରେନ୍ଦ୍ର ମହାନ୍ତି, ବସନ୍ତ କୁମାରୀ ପଟ୍ଟନାୟକ, କିମ୍ବା ପୂର୍ବବର୍ତ୍ତୀ ସ୍ୱର୍ଗତ ପ୍ରାଣବନ୍ଧୁ କର, ସ୍ୱର୍ଗତ ରାଜକିଶୋର ପଟ୍ଟନାୟକ, ସ୍ୱର୍ଗତ ରାଜକିଶୋର ରାୟ ପ୍ରଭୃତି ଶ୍ରୀଯୁକ୍ତ ରଥଙ୍କ ସୃଷ୍ଟି ସହିତ ସମକାଳରେ ସାହିତ୍ୟ ରଚନା କରିଛନ୍ତି । ସ୍ୱର୍ଗତ ବାମାଚରଣ ମିତ୍ରଙ୍କର ଧଡ଼ି ଭାଇ ସହ ଗୋଟିଏ ରାତି' ଗଳ୍ପଟି ଶ୍ରୀଯୁକ୍ତ ରଥଙ୍କୁ ସବୁଠାରୁ ଦୀର୍ଘରାତି ଲେଖିବା ପାଇଁ ପ୍ରେରଣା ଦେଇଥିବା ସମ୍ଭବ । ଏପରିକି କୃଷ୍ଣପ୍ରସାଦଙ୍କ ସିଂହକଟୀ ଓ ଅସୂର୍ଯ୍ୟ ଉପନିବେଶର ପ୍ରେରଣା ସ୍ରୋତରେ ସାମଞ୍ଜସ୍ୟ ଖୋଜି ହେବ ।

ଶ୍ରୀଯୁକ୍ତ ରଥ ନିଜ ସମୟରେ ବେଶ୍ ସ୍ୱତନ୍ତ୍ର । 'ଯନ୍ତ୍ରାରୂଢ଼'ରେ ଶତପଥୀ ଧବଳେଶ୍ୱର ମନ୍ଦିରରେ ଦାସେଙ୍କୁ କହିଥିଲେ ''ମଣିଷ ଭିତରେ ପଶୁ ସ୍ୱଭାବ ପୁରି ରହିଛି । ସେ ଦୃଷ୍ଟିରୁ ମଣିଷ ଯେ, ପଶୁସେ, କିନ୍ତୁ ଏତିକି ଖାଲି ପ୍ରଭେଦ ଯେ ବଣର ପଶୁ ଅମାନିଆ ହୋଇ ହିଂସ୍ର ହୋଇଯାଏ, ଆଉ ମଣିଷ ମନର ପଶୁକୁ ପୋଷା ମନେଇବାକୁ ଜଣେ ଅଛି । ସେଇଟା ହେଲା ବିବେକବୁଦ୍ଧି । ମାତ୍ର ଯେତେ ପୋଷା ମାନିଲେ କଣ ହେବ, ପଶୁଜାତି ଫେର ପଶୁ, ତାକୁ ତା ଆହାର ଗଣ୍ଡାକ ନ ଯୋଗାଇ ଦେଲେ ସେଇଟା ଗର୍ଜିବ, ରଖେଇଦେବ ନାହିଁ । (ଯନ୍ତ୍ରାରୂଢ଼-ପୃ-୫୬)

ଶିକ୍ଷକ ଚନ୍ଦ୍ରଶେଖର କେବେ କବି ତ କେବେ ଦାର୍ଶନିକ । ତାଙ୍କର ପୃଥିବୀ ପ୍ରତି ଆନ୍ତରିକତା ଯଥେଷ୍ଟ । ନିଜ ନିଜ କ୍ଷୁଦ୍ରତା ନେଇ ଦୁଃଖ ଭୋଗୁଥିବା ମଣିଷମାନଙ୍କ ପ୍ରତି ତାଙ୍କର ସାହାନୁଭୂତି ସହସ୍ରଧାରାରେ ଝରି ଯାଇଛି । ମାତ୍ର ଦାର୍ଶନିକ ଚନ୍ଦ୍ରଶେଖର ଏକ ଭିନ୍ନ ଇଲାକାର ମଣିଷ । ସେ ମଣିଷର କ୍ଷୁଦ୍ରତାରୁ ମୁକ୍ତି ପାଇବାର ସମ୍ଭାବ୍ୟ ପଥମାନ ଖୋଜିବା ପାଇଁ ବିବ୍ରତ । ସେ ତୀର୍ଥ କ୍ଷେତ୍ର ହେଉ, ଈଶ୍ୱର ହୁଅନ୍ତୁ, ଗୁରୁ ହୁଅନ୍ତୁ ବା ନିଜର ଶୁଦ୍ଧ ଅନ୍ତଃକରଣ ହେଉ । ତାଙ୍କର ରଚନାବଳୀ ତାଙ୍କ ଉତ୍ତୁଙ୍ଗ ବ୍ୟକ୍ତିତ୍ୱ ନେଇ ସେ ଅନ୍ୟମାନଙ୍କ ଭିତରେ ବାରି ହୋଇପଡ଼ନ୍ତି । ତାଙ୍କର ଉପନ୍ୟାସ ତିନୋଟି ସାଧାରଣ ପାଠକପାଇଁ କେତେ ଆନନ୍ଦ ଦେଇପାରେ ଏହା ତାହାର ଆକଳନ ନୁହେଁ ବରଂ ସକଳ ଦୁଃସ୍ଥିତି ସତ୍ତ୍ୱେ ଆମ ସମୟର ସାମର୍ଥ୍ୟ ତଥା ସୁଡ଼ଙ୍ଗ ଶେଷରେ ସୂର୍ଯ୍ୟ ଉଦୟର ବାର୍ତ୍ତା ସମ୍ପର୍କରେ ଏହା ସଚେତନ ପାଠକକୁ ଆଶ୍ୱାସନା ଦେଇପାରେ ।

ପ୍ରଫେସର, ଓଡ଼ିଆ ବିଭାଗ,
ଉତ୍କଳ ବିଶ୍ୱବିଦ୍ୟାଳୟ,
ବାଣୀବିହାର, ଭୁବନେଶ୍ୱର

***

# Better a Socrates Dissatisfied

***Dr. Dinanath Pathy***

*"To say what one means... to make oneself understood means to hold what is said together with an infinity of what is not said in the unity of one meaning...Someone speaks speculatively when his words do not reflect beings, but express a relation to the whole being."*

I begin with Professor Hrudananda Ray to reach out his dear friend Professor Chandra Sekhar Rath's 'creative other' Not that I use Ray as medium or a prelude : alternatively it is rather an accepted norm to use a provoking thought or an event to speak what you want as Ray's post script - addenda in Rath's Navajataka. I am harping on a kind of dialetic parallels. My text could be a pretext to enter into a wider denotative arena of writers and artists.

Hrudananda Ray joins the Orissa Tourism when I am the curator in the Orissa State Museum. Both the offices run from the same imposing building. I have an enviable office room with a large semi-circular balcony overlooking the inner courtyard, a lilypool and garden. Incidents unfold as envisaged. I receive him at the Museum entrance. Lead him to the first floor into my room and then relinquish the space, the furniture and my right to further entry in favour of Ray. The professor is taken aback at this overwhelming generous gesture and is comfortable in this special chamber that he later writers in his memori Jane Anubhavi Anubhavare (Ray. 2002.p.590). But the philosopher forgets to mention my significant role in securing a room and a balcony for him. This balcony later becomes the meeting place of his intimate friends. Chandra Sekhar Rath. Mahapatra Nilamani Sahoo. Rajendra Prasad Das and Sarat Kumar Mohanty.

I gain access to these people the three eminent Oriya writers and the archaeologist. I enjoy their friendship. I am commissioned by Nilamani Sahoo to design two jackets for Utkal Prasanga and Orissa Review. Here I discover Chandra Sekhar Rath's other creative self. The initial acquaintance turns into intimacy. Intimacy extends further and whole network of relations grows. His father in law artist Udayanath Nanda brother in law Bhavani my hostel mate at Khalikote Art School. All emerge as tangible comrades in arms in the search for parallel experiences. We move on.

Art brings us still closer like the canvas and paint. I admire his small little sculptures (brooding philosopher, torso) and drawings (rustic

woman) and he frequents my flat in the Kalpana Colony to share his journeys into the realms of form and colour.

I once invited him to join a group of artists exhibiting at the Academy of Fine Arts. Calcutta under the aegis of the working Artists Association of Orissa on a thematic art project - Jagannatha and the Oriya Artists. Chandra Sekhar Rath participates with a painting on Jagannath. That was the time : Jagannath was the craze with writers and painters. Since then he remains a painter. A sympathiser a friend who devotes his time and energy to art events organised in the town. Art's real concern is to sublimate and to claim new territories. In post modernistic age as ours, art is both visible and invisible. You can go on and on with its changing sides and affiliations and still remain committed. At times it happens that you enlarge both your mental and physical space and you realise that the fundamental nature of art is a gift and not a commodity. When an artist is in a mood to accept others. Other artist(s) comes in the role of relation like Gyanesh. my student and his son-in-law. This is a reflection to see your own in others.

As time passes by the writer in him overpowers the artist and he gracefully submits but the urge remains undying like a dim fire momentarily withdrawn. Our attempts to build up a battery of writer-painters taking along Chandra Sekhar Rath. Jagannath Prasad Das. Prafulla Tripathy, Ramanendra Mahapatra, Rajendra Panda and Hara Prasad Das remain partly cherished. But intuitively the writers influence the artists to commit to creative writing and their calls do not go unheeded.

Since nineties I take to serious writings, travelogues, autobiography, poetry, stories and fictions reflect my other self. Now Dinanath, the writer meets Professor Chandra Sekhar Rath in literary gatherings. book release functions, poetry recitals and book fairs. Instead of talking painting, we talk books. styles, language and structures. Creativity has little to do with age or else Rabindranath would not have been a successful painter starting quite late in life. I could envision Sri Chandra Sekhar starting to paint sooner or later after his poetry adventures.

Director,
Alice Boner Institute,
Varanasi

***

# Seven ways of looking at Chandra Sekhar Rath

*Ramesh Panigrahi*

I have every reason to be envious of a person, who was born on a fullmoon day-embodying the sixteen Kalas, out of which I am capable of perceiving none. I was born on Masanta, the day before the Vishuba Samkranti, perhaps a contrast to him. Yet, Mr. Chandra Sekhar Rath was the first great man, a young Ramesh Panigrahi encountered with. I had just begun as a lecturer at DAV college, Titilagarh, when he was the Principal That was 1971.

I was playing on the harmonium, to compose a tune for a chorus on one of my lyrics. I was totally absorbed in the tune and 6 to 7 student singers surrounded me. Suddenly I was taken aback discovering Mr. Rath (My Principal) standing behind me.

He stood there with a Vedic sloka and requested me to tune it for a chorus. I didnot know any sloka - except a few from the Bhagavat Gita, recited occasionally by the coastal pundits in their stupid Odia style. The coastal belt used to dominate us with some folk songs through Akash Vani and they seemed to treat a sanskrit sloka with derision and that too, with a cynical bent.

I tried to tune the sloka in Odia style and he did not approve of any of them. He expected something like a Vedic recitation, in 'Anustup' or 'Tristup" Chhandas, that were alien to me That was a different Remesh Panigrahi, one who considered himself to be a superior specimen in a place, where 70% of the students had not seen how a harmonium looked like. Yet I was flaber gasted since I was not able to tune the sloka to his expectations. That was a glaring musical failure. I was on my favourite ocatve - C- sharp-and he could discren my ignorance of the vedic rhythm. This self awareness led me towards a virtual collapse. That was the beginning of a fear wrought on C sharp, the Octave of my psyche.

I tried to convince myself that this man was ignorant of our Cuttacki pop trends which I knew. I consoled myself saying that our pop-tunes were better than these Brahminical antiques culled from the store house of a dead lagnguage. Now I feel that the process of decadence had already started within me.

Nurtured in class rooms stinking with colonial snobbery, I foliated with labyrinthine enclosures shrouding me like mystic geometry. Sanskrit was forbidden to us and was consigned to the garbage heaps of racial

memory. The pundits were objects of comedy in Jatra performances since the enactment of 'Babaji.'

The young Ramesh Panigrahi could not comrehend in his 'Chinmatra" the energizing aspects of the vedic sloka and its modes of choral recitation. Perhaps, I refused the very idea of tuning a sloka, the motion of Mr. Rath's notion of vedic music. I dindnot know how words assumed the status of "mantras" and recitation inhered music.

Perhaps it was beyond my capacity to comprehend Chandrasekhar Rath as someone with a Vedic musical rhythim vibrating in his essence. I did not know. that the four mythical veenas- Bruhti, Kalavati, Mahati and Kachhapi could articulate mantras. I could comprehend later that the essential Chandra Sekhar Rath had an intense musical 'Maya", that could be the product of a pure intellect without attributes, self shining and unchangeable.

He was my first Principal (and perhapes, the last) who planned to begin a day in the college with Havan, a fire sacrifice, keeping close to the high ideals of the Dayamand Anglo-vedic Prasthana".

Sri Rath was not as famous as today as a literary figure. It was his egging phase. More was he known as 'Lucknow Shree" as a body builder. At least, that was the version of my local colleagues. It was the 'Vimarsa Roopa' of the person, the description of a sthula" existence of some one, who was roleplaying a principal, best an academician endeavoring to espouse a vision if it could be discerned at all.

Bikram Seth, in his novel A suitable Boy, remarks lightheartedly that there are three types of teachers. those who are forgotten, those who are remembered and hated, and those who are remembered and forgiven. There is no denying that the damage done by bad or indifferent teachers can be extensive and premanent. And depending on the students' tolerance threshold or their success in salvaging themselves from the negative influence, such teachers are either forgotten, hated or forgiven. But those students, who have had the rare fortune of enjoying the guidance of knowledgable gurus, Bikram's statement would appear most cruel. In the name of justice, then a fourth category would have to be included in the list - those who are always remembered, loved and admired. Chandra Sekhar Rath is one such teacher, nay, an Acharya, who is evidence of this fourth phenomenon.

On day, I presented him a copy of my play "Mu, Ambhe-O-Ambhemane" That was my eighth play and had been prescribed for the graduate course of Berhampur University. He was slightly taken aback and began to look at me from a different angle. He called me a few days

later and asked me to deliver an extra-mural lecture to the staff and the students.

'What'd you like to speak on ?' He asked. It was a challenging question. I paused, ransacked my inner library and replied, "Time'.... 'On time". Next day I spoke something tracing the collusion between "essence" and "transcendence" following Heidegger. This fool, in those days, did not know that Mr. Rath was a thorough scholar of western philosophy.

Another day, he invited me to his quarters. It was a previlege for a beginner in the academia. He showed me lots of paintings he had done and few sculptures that he etched out - when I didn't know any one in the academic line doing such things. But I had almost grown in. painting studios. Bipin Sahu and Dinapathy Padhy are my childhood friends. with my experiences in Arts studios I tried to decipher the trends and I was shocked to discover that Sri Rath's paintings and sculptures were at par with the avantgarde movement in France.

Sri Rath used to show me poems written in English and Oriya. They were never published Not even till today, perhaps. The poems were more powerful than those I read in the last book captioned Astapadi. I knew Ashtakas in Sanksrit and fumbled a while to know what the author meant actually by 'astapadi"- may be an insect with eight legs - may be an 'octopus'. What is retained as memory of this 1968 collection is quite intersting. But that seemed quite appaling in those days. As a contrast, Sri Rath's poems seemed to touch my core, the core of my culture. I asked, why don't you publish these poems, Sir ?' He didnot reply anything. Asked me to listen to one of his 'belles lettres' captioned "Gadi Chhadidela" (The vehicle buzzed off).

I was sure, Mr. Rath had little ambition to be a poet. Perhaps he wanted to speak more. Gadi Chhadi dela was something with a mixed flavour. It was a story essay written in the style of a poem and described with the vividness of a paintng. It had an innate sens of humour and the vision of a philosopher. A mixed thing, but quite novel in the literary context of Orissa. This deceptively simple piece of loose sally of the mind' has been anthologized in Mana Aranya (The jungles in the Mind 1971) . He read it out and I enjoyed listening to it while grabbing a sumptuous home-made tiffin, but I could not comment on it. I pitied my incapacity. There were no previous models and I did not dare to compare him with Gopal Praharaj and Gobind Tripathy. I was qualified for the public service commission posting. And thus was I distantiated from Sri Rath. But I was with him as a reader of his literature. All along.

I moved to my new station - Jeypore. As usual, I was with lots of literary movements of Orissa. That year I was the vice President of the Oriya Yuva Lekhak Sammilani and I edited a magazine captioned Ityadi. I sent a copy of Ityadi to Sri Rath, my ex-principal.

Sri Rath was at Jeypore for a short spell and he was quite known in the literary circle. That was a time of literary formentation in Oriya. It was tending toward a pseudo-avantgardist movement. The leaders of the movement seemed to me as stupid followers of the European avantgarde.

Here comes a new paradox, a paradox, emerging from a strange mythic twilight in the cultural scenario, As a playwright and an active participant-cum-observer of the literary movements I found broken centres every where, leading to crisis of values. Excepting a few, most of the English teachers of the state appeared to me as hollow vessels, at times decadent and stupid in their experimental euphoria, and most of the times they figured as agents of uprooting the Odia values under the pretext of secularization and democratization of literature.

It was no longer possible for me to share the intellectual and spiritual preoccupations of the literary heroes. The array of anti-traditions generated during that period posited a high, strenuous world of religious feelings. Mahapatra Nilamani Sahu took shelter under the lotus umbrella of 'Srima'. As an editor of the mini-magazine called Ityadi, I questioned whether the darkness of the Odia souls would dispel ever.

Sri Chandra Sekha Rath was the only light blinking at the end of a tunnel. That was with his vovel, Yantrarudha, written poignantly on the ambivalences of a tradition-bound protagonist, sandwitched between maya and the demystificatory jolts of an emerging world of colonial empiricism.

I was fighting a lonely battle in the theater sector, which was further marooned under the crude wheels of so-called absurdism. There was a distinct separation between art and life and the battle in the interstices signified an opposition between order and chaos. Mr. Rath's prose genere seemed to resurrect dead ideologies and bridged up the gap between the 'high and the low with his writings exuding humour and a positive vision simultaneously and transforming myths of one peiod into those of another. His master art embodied popular materials that were greatly refined and given complex, individual artistic shapes.

While sending a copy of our mini-magazine Ityadi, I wrote to him whether the chaos of darkness would end in any of the future mornings and as a reply, I received a copy of his book Mana Aranya,

dedicated to me. Since no one has a record of that writing called 'dedication", I quote it verbatim : It is like a small letter :

ପ୍ରିୟ ପାଣିଗ୍ରାହୀ ମହାଶୟ,

ମୁଁ ହୁଏତ ପାହାନ୍ତାରେ ହିଁ ସ୍ଖଳିଯିବି । ସେଇ ପାହାନ୍ତାର ସୂର୍ଯ୍ୟ ଆପଣ ଦେଖିବେ । ତାର ସ୍ୱାଗତ କଲାବେଳେ ପଛକୁ ଫେରି ଚାହିଁବାର ଅବକାଶ ନଥାଏ, ପ୍ରୟୋଜନ ମଧ୍ୟ ନଥାଏ । କିଂତୁ ପାହାନ୍ତା ବେଳେ ପ୍ରତି ଶାଖାରେ କୋଳାହଳ । ଆକାଶର ଶିରାରେ ଶିରାରେ କୋଳାହଳ । ସେଥିରୁ ଗୋଟିଏ ସ୍ୱର ଏଇ ।

ଅଧ୍ୟାପକ ରମେଶ ପ୍ରସାଦ ପାଣିଗ୍ରାହୀଙ୍କୁ :

ଚନ୍ଦ୍ରଶେଖର ରଥ

୧୨।୧୦।୭୧

This I don't consider as a dedication. Nor do I accept this as a letter frozen midway toward timelessness. This is a manifestation of Sri Rath's 'Vimarsa Roopa", Vimarsa Roopa has three facets : Sthula, Sukshma and Para.

My colleagues eulogized him as Lucknow -Shree". That was for his wrestlers physique. Fine. Subhendu (Mund) informed me that he was acclaimed as a great actor in some play staged at Bolangir. Perhaps. He too, roleplayed as my Principal. These are all his "sthula' identities. Vedic music is sukshma.

We have discovered him as a painter and a sculptor, painting and sculpting an Abhipsa, branching off into another triad of Subtelties, raga, Ichha and Abhipsa - all the three in Para, Supra-Verbal form. But the world finds him as an archetict of words only.

Baffling as a personality through his ouevre, this legend of our times, this cross -generic creator, manifests images and images only, static, kinetic or synaesthetic. His abhipsa exuding statisticity and dynamism, colours and structures, music and acting occupies and sprawls out into heterogenous space intensify using the mystery of creation in multiple levels. He refuses a synthesis that can be pinned down to a measurable identity.

What I do here through a 'Sthula' search across these thirtytwo years (1971-2003) is a misadventure. To grasp his energy of desie that comes through degrees and phases would be incomplete.While role playing the knower, perhaps I am distantiating my self from the act of knowing and feign that the person is known.

105, Rsulgarh,
Bhubaneswar

***

# ଚନ୍ଦ୍ରଶେଖର କଥା ମାନସ

**ପ୍ରତିଭା ରାୟ**

ଓଡ଼ିଆ କଥା ସାହିତ୍ୟ କ୍ଷେତ୍ରରେ ଚନ୍ଦ୍ରଶେଖର ରଥ ଏକ ପ୍ରତିଷ୍ଠିତ ନାମ । ତାଙ୍କର ପ୍ଲଟଗୁଡ଼ିକ ସମକାଳର ଅନ୍ୟାନ୍ୟ ଲେଖକଙ୍କ ଠାରୁ ସ୍ୱତନ୍ତ୍ର । ତାଙ୍କ ସୃଷ୍ଟିରେ ଆହରିତ ଅନୁଭୂତି ଓ ଅନୁଚିନ୍ତନର ବିରଳଦିଗନ୍ତ ମାନ ଉନ୍ମୋଚିତ ହୋଇଥାଏ । କ୍ଷୁଦ୍ରଗଳ୍ପରେ ଟେକ୍‌ନିକ୍ ଦୃଷ୍ଟିରୁ ଗାଳ୍ପିକ ଭାବରେ ସେ ଯେତିକି ସଚେତନ ଉପନ୍ୟାସର ବର୍ଣ୍ଣନା, ଚରିତ୍ର ଚିତ୍ରଣ, ଭାଷା ବିନ୍ୟାସ, ଓ ପ୍ଲଟ ଦୃଷ୍ଟିରୁ ମଧ୍ୟ ସେ ସେତିକି ଅଭିଜ୍ଞତା ସମ୍ପନ୍ନ ଓ ବିରଳ ସ୍ରଷ୍ଟା । ତାଙ୍କର ଗଳ୍ପର ପ୍ରତ୍ୟେକ ପାଠକ ଏବେବି ପ୍ରଶ୍ନକରେ କିଏ ସେହି ଅପରିଚିତ ନାୟକ ସମ୍ରାଟ ? (ସମ୍ରାଟ ଓ ଅନ୍ୟମାନେ)

ଚନ୍ଦ୍ରଶେଖରଙ୍କ ଉପନ୍ୟାସର କଥାବସ୍ତୁ ପାଠକମାନଙ୍କ ପାଇଁ ସର୍ବଶ୍ରେଷ୍ଠ ଆକର୍ଷଣ । ତେବେ ତାଙ୍କ କଥାବସ୍ତୁରୁ ସମସ୍ତ ତଥ୍ୟ ଆବିଷ୍କାର କରିବାକୁ ହେଲେ ଉପନ୍ୟାସର ଶେଷ ପର୍ଯ୍ୟନ୍ତ ପାଠକକୁ ଅପେକ୍ଷା କରିବାକୁ ପଡ଼ିବ । ତାଙ୍କରି କଥାବସ୍ତୁମଧ୍ୟରେ ସତେ ଯେପରି ଜୀବନର ସତ୍ୟ ଫୁଟିଉଠେ । ତାଙ୍କ ଲିଖିତ କଥାବସ୍ତୁ (Subject) ଓ ତଥ୍ୟ (theme) ମଧ୍ୟରେ ଏକ ସ୍ପଷ୍ଟ ପାର୍ଥକ୍ୟ ପାଠକ ଲକ୍ଷ୍ୟ କରିଥାଏ । ଗଳ୍ପଟିର ପରିସର ଯେଉଁ କାହାଣୀକୁ ଉଜ୍ଜ୍ୱଳ କରିଥାଏ ତାହାହିଁ ତା'ର କଥାବସ୍ତୁ । ମାତ୍ର ସେହି ପରିସର ମଧ୍ୟରେ ମାନବୀୟ ଅଭିଜ୍ଞତା ପ୍ରତି ଏକ ସାର୍ବଜନୀନ ମନ୍ତବ୍ୟ ହେଉଛି କଥ୍ୟ ବା Them । ଯାହା ଗଳ୍ପଟିର ଚରିତ୍ରର ଅନ୍ତଃସ୍ୱର । ଜୀବନାଦର୍ଶ ଓ ବିଭିନ୍ନ ଚିତ୍ରକଳ୍ପ ଓ ପ୍ରତୀକକୁ ନେଇ ମୂର୍ତ୍ତିମନ୍ତ ହୋଇଥାଏ ।

ତାଙ୍କର ରଚନାଶୈଳୀ ଓ ରସ ଗ୍ୱତୁରୀ ଆବେଗ ମଧ୍ୟରୁ ପାଠକ କେବେ ଅପସରି ଯାଇପାରେନା । ସତେ ଯେପରି ସ୍ରଷ୍ଟାର ହୃଦୟ ଓ ପାଠକର ହୃଦୟ ମଧ୍ୟରେ ଭାବ ଆଦାନ ପ୍ରଦାନର ଏକ ରାସ୍ତା ତିଆରି ହୋଇଯାଏ । ତାଙ୍କ ଉପନ୍ୟାସ ଗୁଡ଼ିକ ସତେ ଯେପରି ଗୋଟିଏ ଗୋଟିଏ ଏପିକ୍ । ବିଭିନ୍ନ ଚରିତ୍ରମାନଙ୍କ ସମାବେଶ ଓ ସେମାନଙ୍କ କ୍ରମ ବିକଶିତ ରୂପ ଉପନ୍ୟାସର ଅବେଦନକୁ ଚିତ୍ତାକର୍ଷକ କରେ । ସମକାଳ ସମାଜ ପାଇଁ ଚନ୍ଦ୍ରଶେଖର ରଥ ହେଉଛନ୍ତି ଆଉ ଏକ ଆକର୍ଷଣ । ପାଠକ ସମାଜ ପାଇଁ ସେ ଏକ ଆହ୍ୱାନ । ଆଜି ତାଙ୍କର ଜନ୍ମବାର୍ଷିକୀ ଉପଲକ୍ଷେ ସେ ହୋଇଯାଇଛନ୍ତି କଥା ସାହିତ୍ୟ ସାମ୍ରାଜ୍ୟରେ ସମ୍ରାଟ ।

ତାଙ୍କ ସାହିତ୍ୟିକ ଜୀବନକୁ ଚିନ୍ତା କଲେ ମନେ ହୁଏ - ସତେ ଯେପରି ଏକ ଗଭୀର ଗଣ୍ଡରେ ପୋତା ହୋଇଥିବା ବାଉଁଶ ହିଁ ତାଙ୍କ ଜୀବନ । ସାଧାରଣ ଦୃଷ୍ଟିରେ ବାହାରକୁ ଯେତିକି ଦୃଶ୍ୟ ହୁଏ ଲୋକେ କୁହନ୍ତି ତାହାହିଁ ପ୍ରାୟ ଜୀବନ, ଯେତେକ ଅଂଶ ଅଦୃଶ୍ୟ ତାହା ଅଜଣା ପରି ଜଣାପଡ଼େ । ତାଙ୍କ ଜୀବନ ଉଭା ଯେତିକି ପୋତା ତା'ଠାରୁ ଅଧିକ । ଉଭାର ଶୋଭା ଜାଣିହୁଏ ପୋତାରୁ । ତାଙ୍କ ଭିତରର ଲୁଚିରହିଥିବା ଅଂଶକୁ ପଣ୍ଡିତମାନେ କୁହନ୍ତି ରହସ୍ୟ । ଲେଖକ ଚନ୍ଦ୍ରଶେଖର ଉଭା ଓ ପୋତା ଏହି ଦୁଇଟା ସତ୍ତା ସହିତ ଏକୀଭୂତ ହୋଇ ଯାଆନ୍ତି । ସତେ ଯେପରି ସେ ଏକାକୀ ଅଶ୍ୱାରୋହୀ'' ।

ସାହିତ୍ୟିକ ବନ୍ଧୁମାନେ ଏକତ୍ର ହୁଅନ୍ତି ଏହି ପବିତ୍ର ଜନ୍ମୋତ୍ସବଟିରେ । ଏହା ଯେପରି ତାଙ୍କ ଜନ୍ମ ବାର୍ଷିକୀ ନୁହେଁ - ସାହିତ୍ୟର ଜନ୍ମ ବାର୍ଷିକୀ । ଦୀର୍ଘ ଶହେରୁ ଉର୍ଦ୍ଧ୍ୱ ବର୍ଷ ଧରି ଲମ୍ବି ଆସିଥିବା ଏହି କଥା ସାହିତ୍ୟ (ରେବତୀ ୧୮୯୮ଠାରୁ) ରାସ୍ତାଟିରେ ଚନ୍ଦ୍ରଶେଖରଙ୍କ ପାଦଚିହ୍ନ ପ୍ରବୀଣ ଓ ନବୀନମାନଙ୍କ ପାଇଁ ତୀର୍ଥଧୂଳି ଢ଼ାଳି ଚାଲିଛି ।

ତାହାହେଲେ ଜୀବନ କଣ ଏଠାରେ ସୂର୍ଯ୍ୟହୀନ ଉପନିବେଶ ? ତେବେ କୋଉ ଆଲୋକର ଟୁକୁଡ଼ା ଆମେ ? କୋଉ ନିର୍ଜନତାର ଶୂନ୍ୟ ପ୍ରସାରୀ ବୁକୁରେ ହଜିଯିବା ହିଁ ଆମର ଭାଗ୍ୟ ? ଚନ୍ଦ୍ରଶେଖରଙ୍କ ଏହିପରି ଦାର୍ଶନିକ ଦୃଷ୍ଟିଭଙ୍ଗୀ ପାଠକର ମସ୍ତିଷ୍କ ଉପରେ ଚାପ ପ୍ରୟୋଗ କରେ... ପାଠକଙ୍କୁ ମନନଶୀଳ କରେ ।

ଆଜିର ଏହି ପବିତ୍ର ଉତ୍ସବରେ ମୁଁ ତାଙ୍କ କଥା ସାହିତ୍ୟର ସମୀକ୍ଷା କରିବାର ଦୁଃସାହସ କରୁ ନାହିଁ । ବରଂ ଲେଖକୀୟ ଦୃଷ୍ଟିଭଂଗୀ ପ୍ରତି ଶ୍ରଦ୍ଧା ଜଣାଉଛି । ସମକାଳ ପରିପ୍ରେକ୍ଷୀରେ ଭଲ ଗଳ୍ପ କିମ୍ବା ଭଲ ଉପନ୍ୟାସ କାହାକୁ କହିବା ? ତାଙ୍କ ଦ୍ୱାରା ଲିଖିତ 'ସବୁଠାରୁ ଦୀର୍ଘରାତି'' ବହୁ ପାଠକର ପ୍ରଶଂସାପୂର୍ଣ୍ଣ ପୁସ୍ତକ । କଥାକାର ହିସାବରେ ସେ ଅଗଣିତ ଜୀବନ ସହ ଐକାନ୍ତିକ ସଂଯୋଗ ସ୍ଥାପନ କରି ଅଗଣିତ ଜୀବନ ପ୍ରତି ସଂବେଦନଶୀଳ ହୋଇପଡ଼ନ୍ତି । ଜଣେ ମଣିଷର ଅନ୍ୟ ଜଣେ ମଣିଷ ପ୍ରତି ଶ୍ରଦ୍ଧା ସୃଷ୍ଟି କରିବା କିମ୍ବା ହୃଦୟ ସହ ହୃଦୟକୁ ସଂଯୋଗ କରିବାର ପଶ୍ଚାଦ୍‌ଭାଗରେ ଏପରି ପୁସ୍ତକର ଭୂମିକା ଅନସ୍ୱୀକାର୍ଯ୍ୟ ।

୨୦୦୩ ମସିହା ସାହିତ୍ୟ ପାଇଁ ସମଗ୍ର ପୃଥିବୀରେ ଏକ ଛକାପଞ୍ଝାର ସମୟ । ଗୋଟିଏ ପଟରେ ବିଜ୍ଞାନ ଯେତେବେଳେ ବିଜୟ ହାସଲ କରି ଚାଲୁଛି, ଆମର ଭବିଷ୍ୟତ ସେତେ ଅନ୍ଧକାରକୁ ତଥା ଅନିଶ୍ଚିତତା ଭିତରକୁ ପ୍ରବେଶ କରୁଛି । ତେଣୁ ଆଜି ଆଉ ଗୋଟିଏ ବିଶ୍ୱଯୁଦ୍ଧ ପାଇଁ ଦେଶ ଦେଶ ମଧ୍ୟରେ ଅସ୍ତ୍ର ଯୋଗାଡ଼ ଚାଲିଛି । ଏ ଉପରେ ଅଭିମତ ଦେବାକୁ ଯାଇ ପ୍ରଫେସର ଇମାନୁଏଲ କହନ୍ତି — We are narrow minded

in National concept. But we would rather be international than national ।
ସମକାଳ ପରିପ୍ରେକ୍ଷୀରେ ପ୍ରାଚ୍ୟ ପାଶ୍ଚାତ୍ୟ ବୋଲି କିଛି ନାହିଁ । ସବୁ ଯେମିତି ଫେଣ୍ଟା ଫେଣ୍ଟି । ଏ ସବୁ ବାତାବରଣ ଭିତରେ କଥାକାର ଚନ୍ଦ୍ରଶେଖରଙ୍କ ସୃଜନଶକ୍ତି ନିର୍ଦ୍ଦିଷ୍ଟ ଆଞ୍ଚଳିକତା ଭିତରେ ସୀମାବଦ୍ଧ ନୁହେଁ । ଭାରତୀୟ ସାହିତ୍ୟାକାଶରେ ତାଙ୍କର ଲେଖନୀ, ଶଂଖ ନାଦର ଧ୍ୱନି ସୃଷ୍ଟିକରିସ୍ଥିଲେ, ଏଥିରେ ସନ୍ଦେହ ନାହିଁ । ''ସବୁଠାରୁ ଦୀର୍ଘରାତି''ର ଏହି ବିରଳ ସ୍ରଷ୍ଟାଙ୍କର ''ସବୁଠାରୁ ଦୀର୍ଘ ଜୀବନ'' ପାଇଁ ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା ।

ଆଖ୍ୟାୟିକା ୨୭, ଗଜପତି ନଗର,
ଭୁବନେଶ୍ୱର - ୭୫୧୦୦୫

***

# 'ରଥ ସପ୍ତକ' ଓ କବି ଚନ୍ଦ୍ରଶେଖର

ଡଃ ଶକୁନ୍ତଳା ବଳିଆରସିଂହ

ବେଳେବେଳେ ବନ୍ଦୀଶାଳାରେ ମହାପୁରୁଷ ଜନ୍ମଲାଭ କଲା ପରି ସାହିତ୍ୟ ସୃଷ୍ଟି ତାର ସ୍ରଷ୍ଟାକୁ ଅତିକ୍ରମ କରିଯାଏ । (୧) ଏକଥା ନିଶ୍ଚିତ ସତ୍ୟ । ଏ କଥା ବି ସତ୍ୟ ଯେ ସ୍ରଷ୍ଟା ନିଜେ ତା ସୃଷ୍ଟିର ନିମିତ୍ତ ଏବଂ ଉପାଦାନ । କେତେରାତି ଉଜାଗର ରହି ଆକାଶରୁ ନକ୍ଷତ୍ରମାନଙ୍କୁ ଏକାଠି କରି ସେ ମାଳାଟିଏ ରଚନା କରେ, କହେ, ''ଜଗଦୀଶ୍ୱରଙ୍କ ଇଚ୍ଛାରେ ତାହା ସଂପନ୍ନ ହୋଇଛି ।'' । (୨) ଚନ୍ଦ୍ରଶେଖର ଠିକ୍ ବୁଝିଛନ୍ତି ଯେ ଜଗଦୀଶ୍ୱରଙ୍କ ଆଶୀର୍ବାଦ ବିନା ଅନ୍ତତଃ 'ରଥ ସପ୍ତକ' ଭଳି ପୁସ୍ତକ ସଂପନ୍ନ ହୁଏ ନାହିଁ ।

'ରଥସପ୍ତକ' ହେଉଛି ତେରବର୍ଷର ଘୋଷଯାତ୍ରା ପୁଣ୍ୟ ତିଥିରେ ଲେଖାହୋଇଥିବା ତେରଟି ରଚନାର ସମାହାର । ତେରବର୍ଷ ଧରି ନିୟମିତ ଗୋଟିଏ ଆବେଗଭୂମିରେ କବି ନିରବଚ୍ଛିନ୍ନ ଏଭଳି ପ୍ରୋଥିତ ହୋଇ ରହିବା ହିଁ ଗୋଟିଏ ଅଦ୍ଭୁତ ବିସ୍ମୟ । ତେବେ ଏହି ଆଲୋଚନାରେ କେବଳ ପ୍ରଥମ ସାତଟି ଶ୍ରଦ୍ଧାସୁମନକୁ ପରିସରଭୁକ୍ତ କରାଯାଇଛି । ସୁମନଗୁଡ଼ିକ ହେଉଛନ୍ତି; 'ମୁଁ କ୍ଷେତ୍ରଯିବି', 'ହୋ ଭଗତେ', 'ପ୍ରଭୁବିଜେ', 'ରଥପ୍ରସ୍ଥାନ', 'ବାହୁଡ଼ା ବିଚ୍ଛେଦ', 'ମଧୁରାଧିପତେ' ଓ 'ଠାକୁର ଭଲେ ବିରାଜୋ ଜି' ।

କବି ଶ୍ରୀ ଚନ୍ଦ୍ରଶେଖର ରଥ ମହାଶୟ ଏହି ସାତଟି ସ୍ତବକକୁ ଯେଭଳି ଯତ୍ନର ସହ ଗ୍ରଥିତ କରିଛନ୍ତି, ଯେଭଳି ଭକ୍ତପ୍ରାଣର ଆର୍ତିର ଗଭୀରତାକୁ ଉନ୍ମୋଚନ କରିବାର ସାଧନାରେ ଓଡ଼ିଆର ସାଂସ୍କୃତିକ ଜୀବନର ରହସ୍ୟକୁ ଉଦଘାଟିତ କରିଛନ୍ତି, ତାହାକୁ ଗୋଟିଏ ଅଲୌକିକ ବ୍ୟାପାର କହିବା ହିଁ ଠିକ୍ ହେବ । ଓଡ଼ିଆ ଜାତିର ତଥା ଉତ୍କଳଭାରତୀଙ୍କର ଏହା ପରମ ସନ୍ତୋଷର କାରଣ ଯେ ଏଭଳି ସୁସନ୍ତାନ ଦେଶମାତୃକାର ଅଛନ୍ତି ଯିଏ ମାତୃ-ଋଣ ପରିଶୋଧ କରିବାର ଦାୟିତ୍ୱ ନିଜେ ନିଜ ଉପରେ ସହଜରେ ନେଇଯାଇଛନ୍ତି ।

ଚନ୍ଦ୍ରଶେଖର ଶତାୟୁ ହୁଅନ୍ତୁ !

ପ୍ରଥମେ 'ମୁଁ କ୍ଷେତ୍ରଯିବି' ବୋଲି ବାରମ୍ବାର ରୋଦନ କରି କଟାଳ କରୁଥିବା ସେଇ କବି ଓ ମହାପୁରୁଷମାନଙ୍କୁ ସେ ଚିହ୍ନି ଚିହ୍ନାଇ ପାରିଛନ୍ତି ଓ ଦେଖି ଦେଖାଇ

(୧) ରଥ ସପ୍ତକ — ପ୍ରାକ୍‌ଭାଷ

(୨) ତତ୍ରୈବ — ପ୍ରାକ୍‌ଭାଷ

ପାରିଛନ୍ତି । ସେମାନଙ୍କ ପ୍ରାଣର ଆର୍ତି ତାଙ୍କ ଆଗରେ ସ୍ୱଚ୍ଛନ୍ଦଭାବରେ ଖୋଲିଯାଇଛି । ସେମାନଙ୍କ "ଅଙ୍ଗେ ଅଙ୍ଗେ ଉତ୍କଣ୍ଠା, ରୋମେ ରୋମେ ଉନ୍ମୁଖତା, ଶାଖାରେ ଶାଖାରେ ଗୋଟିଏ ମାତ୍ର ଶ୍ୟାମଳ ସତ୍ୟ ପଲ୍ଲବିତ ! ମୁଁ କ୍ଷେତ୍ରଯିବି ସୁଧୀଜନେ, ମୋତେ ବାଟ ବତାଇ ନେଇଯାଅ ! (୩) ଏଭଳି ଅଝଟ କରୁଥିବା ମହାପୁରୁଷର ପଥ କେହି କେବେ ରୋଧିପାରେ ?

ଚନ୍ଦ୍ରଶେଖର ଏଇ ମହାପୁରୁଷମାନଙ୍କୁ ଭେଟିଛନ୍ତି । "ତାର ସୂକ୍ଷ୍ମପୁରୁଷ ସର୍ବଦା କ୍ଷେତ୍ରବାସୀ । ଅବୟବଗୁଡ଼ିକୁ କେବଳ ଗଡ଼େଇ ନେବା କଥା" (୪) ପୁଣି ଅବୟବ ଗଡ଼େଇ ନେବାରେ ବାଧା ଉପୁଜିଲେ ବଡ଼ଦାଣ୍ଡରେ ଥାଇ ବି ସେ ତାର ଶ୍ରୀଫଳ ଅର୍ଘ୍ୟ ଟେକି ଦେଇପାରେ । ଅବୟବର ହାତ ଟେକିଦେଲେ ସୂକ୍ଷ୍ମପୁରୁଷ ବିପୁଳଭୁଜ ବିସ୍ତାର କରି ତାହା ତୋଳିନିଏ । ସେଇମିତି ସାତଶ' ପଞ୍ଚାଶକୋଶ ଦୂରରୁ ସାଲବେଗ ଅଳି କରିପାରେ ଅବା ଘୋରଜଳରୁ ଗଜରାଜ ଚିନ୍ତା କରିପାରେ । ହେଲେ ଏ ଯେଉଁ ଘେନା ଘେନି ରସଘନ ବ୍ୟପାର, ସେଠି "କହିହେବ ନାହିଁ" ବେଦ ପ୍ରଥିତ ପୁରୁଷୋତ୍ତମ ସ୍ୱୟଂ ଆକୃଷ୍ଟ ହୋଇ ଏ ପୁରୀକୁ ପରିପୂର୍ଣ୍ଣ କରନ୍ତି ନା ପରମତୀର୍ଥ ଭକ୍ତଗଣ ଏ ସିନ୍ଧୁତୀରକୁ ଟାଣି ହୋଇ ଆସି ଏ ଭୂଖଣ୍ଡର ରେଣୁଗୁଡ଼ିକୁ ତୀର୍ଥାୟିତ କରନ୍ତି ।" (୫)

କବି ବୁଝିଛନ୍ତି ଏ ଉଭୟ ହିଁ ସତ୍ୟ । କାରଣ ସୂକ୍ଷ୍ମ ଆବେଗ-ଭୂମିରେ ଦିଗବାରିବା, ବେଗ ବାରିବା ସହଜ ନୁହେଁ । ସ୍ଥିତି ଏବଂ ଗତିକୁ ପୃଥକ କରିବା ବି ସହଜ ନୁହେଁ । ସେଥିରେ ପୁଣି ରୂପରେ ଅରୂପକୁ ବାନ୍ଧିବା ଆଉ ମୂର୍ତିରେ ଅମୂର୍ତ ଅପ୍ରକଟକୁ ଅନୁଭବ କରିବାର ରହସ୍ୟ ବି ଅଛି । ସେ ରହସ୍ୟକୁ ଉଦ୍‌ଘାଟନ କରିବାର "ଅଦ୍ଭୁତ ତନ୍ତୁଟି ହେଉଛି ପ୍ରେମ ଆଉ ବିଶ୍ୱାସର ବିଶୁଦ୍ଧତମ ଉପାଦାନ ।" (୬)

ସେଇ ଉପାଦାନରେ ନିର୍ମିତ ପାଟଡୋରରୁ କେଉଁଟିଏ ଶୂନ୍ୟକୁ ଫିଙ୍ଗିଦେଇ ଯୁଗାବଧିବ୍ୟାପୀ ଅଖଣ୍ଡ ତପସ୍ୟାରେ ବସିଯାଏ ଭକ୍ତ । ସେଇ ନିରବଚ୍ଛିନ୍ନ ତପସ୍ୟାରେ ନିମଜ୍ଜିତ ହୋଇ ଆତୁର ବେଦନାରେ ପ୍ରତୀକ୍ଷାରତ ଚନ୍ଦ୍ରଶେଖର ମହାଶୂନ୍ୟର ଅଜ୍ଞାତ କଂପନକୁ ଅନୁଭବ କରିଛନ୍ତି । ଦେଖିଛନ୍ତି ସେଇ କମ୍ପନର ସ୍ପନ୍ଦନରୁ ଦ୍ରବୀଭୂତ ଅବସ୍ଥାରେ ଅଣ୍ଟାରେ ପ୍ରସ୍ଥ ପ୍ରସ୍ଥ ପାଟଡୋର ଛନ୍ଦାହୋଇ ଅର୍ଦ୍ଧାକାଶରେ ପ୍ରକଟିତ ହୋଇଥିବା ପୁରୁଷୋତ୍ତମଙ୍କୁ ଭେଟିବାକୁ ପରମତୀର୍ଥ ଭକ୍ତଗଣ କ୍ଷେତ୍ରଯାତ୍ରୀ ହେଉଛନ୍ତି ।

---

(୩) ତତ୍ରୈବ — ପୃ ୩

(୪) 'ରଥ ସପ୍ତକ' — ପୃ ୩

(୫) ତତ୍ରୈବ — ପୃ ୪

(୬) ତତ୍ରୈବ — ପୃ ୪

ସେଇ ପରମତୀର୍ଥ ଭକ୍ତମାନେ କିଏ ? ସେମାନେ ଗୌରକାନ୍ତ ଚୈତନ୍ୟ ମହାପ୍ରଭୁ, ମତ୍ତବଳରାମ, ବନ୍ଧୁ ମହାନ୍ତି, ଭକ୍ତ ସାଲବେଗ । "ସେମାନଙ୍କର ପ୍ରତ୍ୟେକ ରୋମ ଉନ୍ମୁଖ ହୋଇ ଚ୍ଚହିଁ ରହିଛି ନନ୍ଦିଘୋଷ ଗର୍ଭକୁ ଘୋଷ-ଯାତ୍ରାର ଅବସରରେ । ପାଟଡୋରରେ ଉତ୍କଟ ସଂସାରରୁ ଟାଣି ହୋଇ ଆସିଥିବା ଏ ଭାଗ୍ୟବନ୍ତ ଭକ୍ତ ପାଇଁ ଭଗବାନ ଏକ ପ୍ରଗାଢ଼ ବିସ୍ମୟ । କାରଣ କୋମଳ ଅଥଚ ଅନୁପେକ୍ଷ୍ୟ ସେଇ ଆକର୍ଷଣରେ ପାଟଡୋରକୁ ଆଉଜି ତା ଉପରେ ଓହଳିପଡ଼ି ସେ ଆସି ହର୍ଷ ଗଦଗଦ ଠିଆ ହୋଇଛି ବଡ଼ଦାଣ୍ଡ ମଝିରେ ଓ ଚ୍ଚହିଁଛି ଆର୍ଦ୍ଧାକାଶକୁ ।" (୭)

ପ୍ରେମ ଓ କରୁଣାର ଏହି ଉଭୟ ପାକ୍ଷିକ ସୂକ୍ଷ୍ମ ପାଟ ଡୋରଟିର ସ୍ପର୍ଶ କିପରି ଲାଗିଛି ଚନ୍ଦ୍ରଶେଖରଙ୍କୁ ? ଭାରି ବ୍ୟସ୍ତ ହୋଇପଡ଼ିଛନ୍ତି ସେ କ୍ଷେତ୍ରଯିବାକୁ । "ଝୁଲଣ ଗଲା, ଚନ୍ଦନ ଗଲା । ଏ ପୋଚ୍ଚ ଦେହଖଣ୍ଡକ ବାଦ କଲା, ଆସିପାରିଲି ନାହିଁ ମାଲିକେ । ଏଥର ମୋ ନେତ୍ର ପବିତ୍ର କରିବି । ମୁନ୍ଦାଏ ଟଙ୍କତୋରାଣି ପିଇଦେଲେ ତେଣିକି ମରିଯା'ନ୍ତି ।" ଚ୍ଚରିକୋଡ଼ି ବୟସର ପୁରୁଣା ଦେହ କଟାଳ କରୁଛି ।

ଭାରିବ୍ୟସ୍ତ ହୋଇ ପଡ଼ିଛନ୍ତି ସତେଅବା ବିଶ୍ୱବାସୀ ।

ଘୁମୁସର, ପାପଡ଼ାହାଣ୍ଡି, ସାନଖେମୁଣ୍ଡି, ପାରଳା, ଉମରକୋଟରୁ ଚ୍ଚଲିଚ୍ଚଲି ଚିଲିକା କୂଳେ କୂଳେ ଆସିଛନ୍ତି ପୁରତ୍ତମ, ଥରଟେ ଦେଖିବେ ବୋଲି ଜଗନ୍ନାଥଙ୍କୁ ।

ଆସିଛନ୍ତି ଯଶୀପୁର, ଗରୁଆଁ, ଚଁପୁଆ, ରାଇରଙ୍ଗପୁର, ବାରିପଦା, ବାଲେଶ୍ୱର, ମେଦିନୀପୁର, ଚ୍ଚଇଁବସା ଆଉ କେନ୍ଦୁଝରରୁ ମହାପାତକୀମାନେ ଡାକିଡାକି, ପାରିକର୍ ଠାକୁର୍ ! ମୁଁ କ୍ଷେତ୍ରଯିବି, ଆଉ ବେଳ ନାହିଁ ।

ରଥ ଘିଚିବାକୁ ଆସିଛନ୍ତି ରୋଢ଼ାଖୋଲ, ସମ୍ବଲପୁର, ସାଲେଭଟା, ତର୍ଭା, କଳାହାଣ୍ଡି, ବଲାଙ୍ଗୀର, ସୋନପୁର, ବଉଦ, ଫୁଲବାଣୀ ଆଉ ସୁନ୍ଦରଗଡ଼ରୁ । ବାଟ୍ କହିଦିଅ ଗୁରୁ, ଆମେ କ୍ଷେତ୍ର ଯିମୁ ।

"ମହେନ୍ଦ୍ରଗିରିଠାରୁ ମେଘାସନ, ଋଷିକୁଲ୍ୟାଠାରୁ ସୁବର୍ଣ୍ଣରେଖା ଏବଂ କୋଣାର୍କଠାରୁ ହୀରାକୁଦ—ଏ ସମଗ୍ର ଭୂମିରେ ବିଛେଇ ହୋଇ ରହିଛି ପାଟଡୋର । ସେଥିରେ ପଡ଼ି ଟାଣି ହୋଇ ଆସୁଛନ୍ତି ନୀଳାଦ୍ରିକେନ୍ଦ୍ରକୁ ସହସ୍ର ସହସ୍ର ଅନୁଗତ ଭକ୍ତ । (୮) ଆର୍ତ୍ତ ତୃଷାର୍ତ୍ତ ପକ୍ଷୀଟିଏ ପରି ବିକଳ ହେଉଥିବା ଆତ୍ମାମାନଙ୍କର ଆବେଦନକୁ ଚିହ୍ନି କିଏ ଆମକୁ ଏପରି ଚିହ୍ନାଇଥିଲା ଏ ଜାତିର ସଂସ୍କୃତିର ମୂଳମନ୍ତ୍ରକୁ ? ଏ ଜାତିର ଭୌଗୋଳିକ

(୭) 'ରଥ ସପ୍ତକ' — ପୃ ୬୨

(୮) 'ରଥ ସପ୍ତକ' — ପୃ ୭

(୯) 'ରଥ ସପ୍ତକ' — ପୃ ୧୧

ମାନଚିତ୍ରକୁ ? ଏ ଜାତିର ଭାତୃତ୍ୱର ଆବେଦନକୁ ? ଏ ଜାତିର ଅଲୌକିକ ଆଧ୍ୟାତ୍ମିକ ଜାଗରଣକୁ ? ମାନବିକତାର ଏ ଧାରାକୁ ?

ଘୋଷଯାତ୍ରାର ଅବସରରେ 'ମୁଁ କ୍ଷେତ୍ରଯିବି' ଆକୁତିରେ ବିଭିନ୍ନ ଭାଷା ଓ ଭାବଭଙ୍ଗୀରେ ଏଇ ଧାରାର ପ୍ରତିଟିବିନ୍ଦୁ ପ୍ରତିଧ୍ୱନିତ ହେଉଛି । ଏ ଧାରା ଭକ୍ତି ଆଉ ବିଶ୍ୱାସର ଧାରା । ପଶ୍ଚିମା, ଗୁଜରୀ, କଚ୍ଛୀ, କର୍ଣ୍ଣାଟକୀ, ହିମାଚଳୀ, ଆହାମିଆ, ଘଡ଼ଉଆଳୀ, ଛତିଶଗଡ଼ୀ—ଭାରତଭୂମିର ଦୂରଦୂରାନ୍ତରୁ ଟାଣି ହୋଇ ଆସିଥିବା କେତେ ତୃଷାର୍ତ୍ତ ଭ୍ରତକଙ୍କ କଳରବରେ ପୂରିତ ଏ କ୍ଷେତ୍ର ।

ଏ କଳରବ ଝାସ ଦେବାକୁ ଚାହେଁ ପୂର୍ଣ୍ଣତାର ସମୁଦ୍ରରେ । ରୂପ ରଂଗ ଆକୃତି ଭାଷା ଭାବ ଭଙ୍ଗୀର ବୈଚିତ୍ର୍ୟମୟ ଏ ମାନବ ସମୁଦ୍ରରେ ଗୋଟିଏ ମାତ୍ର ଭାବ ତରଂଗ, ସେଥିପାଇଁ ରଥାରୂଢ଼ ବାମନଙ୍କର ଚରଣ ସ୍ପର୍ଶ କରୁଛି । ବିଭିନ୍ନତା ଭିତରେ ଐକ୍ୟ, ଏଇ ଯେଉଁ ସଂସ୍କୃତି ତାକୁ କେବେ କିଏ ଆମକୁ ଏପରି ଦିବ୍ୟପୁରୁଷ ସୂର୍ଯ୍ୟଙ୍କ ଆଲୋକରଶ୍ମି ତଳେ ଇନ୍ଦ୍ର, ଅଗ୍ନି, ଯମାଦିଙ୍କ ସମ୍ଭ୍ରମ ସ୍ତବଗାନ ଭିତରେ ସାଶ୍ରୁଲୋଚନରେ ଦେଖାଇଥିଲା ।

**ଦୀର୍ଘାୟୁ ହୁଅନ୍ତୁ ଚନ୍ଦ୍ରଶେଖର !**

ପୁଣି ପାଦ ପଖାଳି ବଡ଼ ଦାଣ୍ଡକୁ ବିଜେକରି ଆଣିଛନ୍ତି ସେ ଭଗତମାନଙ୍କୁ, ଆମରି ପୂର୍ବପୁରୁଷମାନଙ୍କୁ କେଡ଼େ ସମ୍ମାନରେ ! କେଡ଼େ ସୋହାଗରେ !

ଫୁଟିଲା କଦମ୍ବପରି ଦେହ କଣ୍ଟକିତ । ଓଠ ଥରଥର, ହାତ ଥରଥର, ପାଦ ଥରଥର । ବିଶୁଦ୍ଧ ଶ୍ରୀଫଳ ପରି ମଧୁର ଘନରସରେ ପରିପୂର୍ଣ୍ଣ, ଅରୁଣ ଖମ୍ବତଳକୁ ଗଳବସ୍ତ୍ର ହୋଇ ଛଳଛଳ ନୟନରେ ବାହୁପ୍ରସାରି ଠିଆ ହୋଇଛନ୍ତି ଦାସ ପ୍ରଧାନ ଦାସିଆ ବାଉରୀ, ନାକପୁଡ଼ା ଫୁଲିଫୁଲି କହୁଛି : "ଏ ନଡ଼ିଆଟି କଣ ତୁମ ମନଲାଖି ନଜିର ହେବ କି ?" (୯)

ସାତଲହଡ଼ା ମଠରୁ ସୁସଜ୍ଜ ମଞ୍ଜରୀଗୁଡ଼ିଏ ଆଞ୍ଜୁଳାରେ ଧରି ଆସୁଛନ୍ତି ଯେଉଁ "ସରଳପ୍ରଶାନ୍ତ ଶୁଚିମନ୍ତ ପୁରୁଷ, ଯାହାଙ୍କର ଆଖିଗୁଡ଼ିକ ପଦ୍ମପାଖୁଡ଼ା ପରି ଢ଼ଳଢ଼ଳ, ଯେହୁ ପିନ୍ଧିଛନ୍ତି ଶୁକଳ ଅମ୍ଳାନ, ତୁଳସୀଚନ୍ଦନରେ ଯେହୁ ମହମହ ବାସୁଛନ୍ତି, ନବାକ୍ଷରୀ ଛନ୍ଦପରି ଯାହାଙ୍କ ବିଗ୍ରହ ମନୋରମ, ସେ ମହାତମା ହେଉଛନ୍ତି ଭାଗବତପୁରୁଷ ଜଗନ୍ନାଥଦାସ—ଜ୍ଞାନଭକ୍ତିର ଗଂଗାସାଗର ସଂଗମ ହେଉଛନ୍ତି ଏ ତୀର୍ଥରାଜ ।(୧୦)

(୧୦) 'ତତ୍ରୈବ' — ପୃ ୧୧
(୧୧) 'ତତ୍ରୈବ'— ପୃ ୧୨
(୧୨,୧୩) 'ରଥ ସପ୍ତକ' — ପୃ ୧୩

ତେଣେ କାଶୀମିଶ୍ରଙ୍କ ଉଆସଆଡୁ ଗୋଳଚହଳ ପାଖେଇ ଆସୁଛି । ଦୁଇବାହୁ ଉର୍ଦ୍ଧ୍ବକୁ ଟେକି ସାତ୍ତ୍ୱିକ ବିକାରରେ ଉନ୍ମତ୍ତପ୍ରାୟ କେଶବାସ ଅସମ୍ଭାଳ ହୋଇ, ଶ୍ୱେତକଳଭ ପରି ଲୀଳାୟିତ ଭଙ୍ଗୀରେ ଝୁଲିଝୁଲି ଯେ ଅବତରଣ କରୁଛନ୍ତି, ଯାହାଙ୍କ ଶ୍ରୀଅଙ୍ଗରୁ ପଦ୍ମକେଶର ଗନ୍ଧ ବାହାରୁଛି, ସେ ହେଉଛନ୍ତି ଯୁଗପୁରୁଷ ଗୌରାଙ୍ଗ, ତାଙ୍କୁ ଘେରିନାବୁଛନ୍ତି ଭକ୍ତଗଣ — ରାମାନନ୍ଦ, ନିତ୍ୟାନନ୍ଦ । (୧୧)

ଅରୁଣ ଖମ୍ବ ପାଖରେ ଆଡ଼ଘସା ଦେଇ, ସରୁଗାମୁଛାଟିଏ ବେକରେ ପକାଇ ଯେ ଠିଆ ହେଉଛନ୍ତି, ଲୁହରେ ଝରିଯାଉଛି ପ୍ରାଣର ନିବେଦନ, କାନ୍ଦକାନ୍ଦ ହୋଇ କରଛଡ଼ା ଦେଇ ଠିଆ ହେଉଛନ୍ତି ସେ ହେଉଛନ୍ତି ପ୍ରଭୁଙ୍କ ଅଙ୍ଗଲାଗି ଭକ୍ତଶିରୋମଣି ମହାତ୍ମା ସାଲବେଗ । ସେ କୁଆଡ଼େ ଜାତିରେ ଯବନ ହୋ ଭଗତେ, ଏ ବିମଳ ମୁକ୍ତାଫଳ ପରି ଝଟକୁଥିବା ବିଶୁଦ୍ଧ ଆତ୍ମା କୁଆଡ଼େ ଯବନ ! (୧୨)

ଗେରୁଆ ଠେକାଭିଡ଼ି, ଗେରୁଆ ଗାମୁଛାଟିଏ ବେହେରଣ ପକେଇ କଳା ମଚମଚ ବୁକୁ ଉପରକୁ ଦରପାଚିଲା ଦାଢ଼ି ଲମ୍ବେଇ ଦେଇ ଯଷ୍ଟି ଖଣ୍ଡିଏ ଧରି ସେ ଯେଉଁ ବାଙ୍ଗରାମଣିଷଟି ଥଙ୍ଗେଇଲା ପରି ବାଟ ବାରି ବାରି ଆସୁଛନ୍ତି, ତାଙ୍କୁ ଛାମୁଛାଡ଼ କରି ଦଣ୍ଡବତ ହୁଅ ଭଗତେ । ପ୍ରାଣୀଙ୍କ ଅପ୍ରମିତ ଆରତ ସହି ନ ପାରି ନିଜକୁ ନର୍କରେ ବିସର୍ଜି ଦେବାକୁ ଏ କାରୁଣିକ ସନ୍ଥକବି ଭୀମାଭୋଇ ବାହୁଟେକି ବ୍ରହ୍ମ ନିରଞ୍ଜନଙ୍କୁ ଡାକୁଛନ୍ତି । (୧୩)

ସେ ଯେଉଁ ମହିମାନ୍ୱିତ ଯୋଗସିଦ୍ଧ ପୁରୁଷ ମାନେ ଗମ୍ଭୀର ମୁଦ୍ରାରେ ଏ ଆଡ଼କୁ ପାଖେଇ ଆସୁଛନ୍ତି ସେମାନେ ହେଉଛନ୍ତି ଜ୍ଞାନଗୁରୁ ଅଚ୍ୟୁତ, ଯଶୋବନ୍ତ ଏବଂ ଅନନ୍ତ ।

ପିଣ୍ଡ ବ୍ରହ୍ମାଣ୍ଡର ରହସ୍ୟ ତାଙ୍କୁ ଜଣା ।

ତୁଣ୍ଡରେ ଛଳବାକ୍ୟ, ଆଖିରେ ଲୁହ, ହାତରେ ଚମ୍ପା ମାଳଟିଏ, ପ୍ରାଣରେ ଅବେଗ ଇଚ୍ଛା, ସେ ଚମ୍ପାମାଳଟିକୁ ଠାକୁରଙ୍କ ମାଜଣା ବଢ଼ିବା ଉତ୍ତାରେ ଚୂଳ ଉପରେ ଖଞ୍ଜି ଦିଅନ୍ତେ । ସେ ବିହ୍ୱଳ-ଅନ୍ତର ରସିକ କବି ହେଉଛନ୍ତି କବିସୂର୍ଯ୍ୟ ବଳଦେବ ରଥ । (୧୫)

ଦେହରେ ଖଣ୍ଡିଏ ବୋଲି ଧୋବ ବେହେରଣ, ବେକରେ ତୁଳସୀର କଣ୍ଠି, କପାଳରେ ବୈଷ୍ଣବର ଚିତା, ଦେହସାରା କଦମ୍ବପରି ଟାଙ୍କୁରି ଉଠୁଛି, ଯମୁନାପରି ଉଲ୍ଲସି, ଉଛୁଳି ଉଠୁଛନ୍ତି ମଞ୍ଜରୀଭାବରେ - ସେ ତଦ୍‌ଗତ କବି ଗୋପାଳକୃଷ୍ଣ । ହାତରେ ଲୁଚେଇ

(୧୪, ୧୫,୧୬) — ତତ୍ରୈବ — ପୃ ୧୪
୧୨,୧୩-'ରଥ ସପ୍ତକ' ପୃ ୧୩

ଧରିଛନ୍ତି ଖଣ୍ଡିଏ ମଲ୍ଲୀମାଳ, ଲୁହପଖଳା ଓଠରୁ ଅସ୍ଫୁଟ ସ୍ୱର ଶୁଭୁଛି : ମଲ୍ଲୀମାଳ ଶ୍ୟାମକୁ ଦେବି, ମନ ତୋଷିବି । (୧୬)

କମ୍ବୁ କଟକରେ ନୀଳାଦ୍ରି ସିଂହଙ୍କୁ ନିଉଛାଳି ହେବା ପାଇଁ ମଣିମାଣିକ୍ୟ ଖଚିତ ବିଚିତ୍ର କିରୀଟ କୁଣ୍ଡଳ, ଗଜମୁକ୍ତାର ସ୍ରପସରି ଧରି ସମ୍ରାଟ ଭଳି, ସେ ଯେ ବିରାଜିତ ହେଉଛନ୍ତି, ସେ ହେଲେ ଅପୂର୍ବ ପଣ୍ଡିତ କବି ରାଜର୍ଷି ଉପେନ୍ଦ୍ର । (୧୭)

ତାଙ୍କ ପାଖକୁ ଅଭିମନ୍ୟୁ, ଭକ୍ତ ଚିନ୍ତାମଣି ତାଙ୍କ ପାଇଁ ଅବ୍ୟକ୍ତ ଲୀଳାକୁ ବ୍ୟକ୍ତ କରିଦିଅନ୍ତି ।

ତାଙ୍କ ପାଖକୁ ରସଘନ ବିଗ୍ରହଙ୍କ ଚରିତ ସୁରଧୁନୀ ଯାହାଙ୍କ ପାଇଁ କଲ୍ଲୋଳିତ ହେଉଛନ୍ତି, ଯାହାଙ୍କ ରୂପ ସ୍ନିଗ୍ଧ, ଶୀତଳ କହ୍ଲାର ଫୁଲଟିଏ ପରି ସଦ୍ୟସ୍ନାତ- ସେ ହେଉଛନ୍ତି ଭାବସମ୍ପଦର ଅଧୀଶ୍ୱର କବି ଦୀନକୃଷ୍ଣ । (୧୮)

ବଳିଷ୍ଠ ଯୋଦ୍ଧା ପରି ତ୍ରିକଚ୍ଛ ପିନ୍ଧି ପ୍ରକାଣ୍ଡ ଜୁଡ଼ା ପକାଇ ଯେ ଅପ୍ରତିହତ ପଲାସି ଆସୁଛନ୍ତି, ଯାହାଙ୍କ ନିର୍ଭିକ କପାଳ ଉପରେ ଗୋଳା ସିନ୍ଦୂର ଟୋପା ଦାଉ ଦାଉ ଜଳୁଛି, ଝଙ୍କଡ଼ରୁ ପୁରଷମ ଯେ ସ୍ୱଚ୍ଛନ୍ଦ ଗତି କରିପାରନ୍ତି, ସେ ହେଉଛନ୍ତି ଶୁଦ୍ରମୁନି ସାରୋଳା । (୧୯)

ବଡଦାଣ୍ଡଟିକୁ ଅକସ୍ମାତ ମଳୟ ସଂସ୍ପର୍ଶରେ ସୁରଭିତ କରି ଲବଙ୍ଗ ଲତିକାର କୁଞ୍ଜଗୁଡିକୁ କୋକିଳ କୂଜିତ କରି ସେ ଯେଉଁ ସ୍ନିଗ୍ଧ-ମଧୁର ରସସ୍ନାତ ଲଳିତ କବି ସ୍ଥିର ତଡ଼ାଗର ହଂସ ପରି ଭାସି ଆସୁଛନ୍ତି, ସେ ହେଲେ ଗୋସ୍ୱାମୀ ଜୟଦେବ । (୨୦)

ଉତ୍ତର ଆକାଶ ସାରା ହଲୋଳମୟ । ସେଇ ଦିଗରୁ ମହାତ୍ମାମାନେ ଅବତରଣ କରୁଛନ୍ତି, ଦେଖିବା ହେଉ ଭଗତେ ! ପିଙ୍ଗଳ ଜଟା ମଣ୍ଡିତ ଆୟତ-ନେତ୍ରଧାରୀ, ବିଶାଳ ବୋଦ୍ଧା ବ୍ୟାସଦେବ ଆସୁଛନ୍ତି, ପ୍ରଣିପାତ ହୁଅ । (୨୮)

ନିକଟତମ ପିତୃପୁରୁଷ ଛାଇ ଭଳି ଆମ ଗହଣରେ ପଶି ଆସିଛନ୍ତି । ହେଇ ସେ ଜଣକ ଯାହାଙ୍କ ଆଖି ଯୋଡିକ ଗ୍ରହ ନକ୍ଷତ୍ର ରାଜ୍ୟରେ ବିଚରଣ କରି କରି କ୍ଳାନ୍ତ, ରୋଗାକ୍ରାନ୍ତ ଶରୀରଟି ତପଃକ୍ଳିଷ୍ଟ, ଶୀର୍ଣ୍ଣ, ଯାହାଙ୍କର ଏକମାତ୍ର ଧେୟ ନୀଳାଚଳ ନିବାସୀ, ଜଗଦାନନ୍ଦକନ୍ଦ, ସେ ହେଉଛନ୍ତି ପଠାଣୀ ସାଆନ୍ତେ ! (୨୨)

ହାତେ ଉଚ୍ଚ ବେକ ଉପରକୁ ଆମ୍ବ ଟାକୁଆ ପରି ଥୋଡି, ଠାପୁଆ ଗାଲ, ଆଉ ସେ ଟାହୁଲିଆ ଆମୋଦିଆ ଆଖି ଯୋଡ଼ିକୁ ଚିହ୍ନିବା ହେଉ ଭଗତେ । ସେ ହେଲେ ବ୍ୟାସ କବି ଫକୀରମୋହନ । (୨୩)

---

୧୪,୧୫,୧୬- ତତ୍ରୈବ ପୃ ୧୪

୧୭, ୧୮, ୧୯- ତତ୍ରୈବ ପୃ ୧୫

ଆଉଜଣକ ଚନ୍ଦ୍ରଭାଗା ପରିକ୍ରମା କରି ଫେରିଛନ୍ତି-

କବିବର ରାଧାନାଥ । (୨୪)

ତାଙ୍କ ପାଖକୁ ଫୁଟିଲା ପଦ୍ମ ପରି ବିକଶୁଛନ୍ତି ଦରିଦ୍ରତା ପଙ୍କ ଭିତରୁ ସ୍ୱଭାବକବି ଗଂଗାଧର । (୨୫)

ନାରାୟଣଙ୍କୁ ଉତ୍କଳର ନେତା ରୂପେ ମାନିଥିବା ସେ କାନ୍ଧୁରା ମଣିଷଟି ହେଉଛନ୍ତି ପୁଣ୍ୟ ଶ୍ଳୋକ ଉତ୍କଳମଣି । (୨୬)

ଶୁଭ୍ରପଗଡ଼ି ମଣ୍ଡିତ ହୋଇ ସେ ଯେଉଁ ଶାଣିତ ଚରିତ୍ରଟି ଝଟକୁଛନ୍ତି, ଦୁଃଖରେ ଅଭିମାନରେ ଖୋଜୁଛନ୍ତି ମାଆକୁ, ଡାକୁଛନ୍ତି ଭାଇକୁ.... ସେ ହେଉଛନ୍ତି ମଧୁସୂଦନ ଦାସ । (୨୭)

ଯୁଗ ଯୁଗ ଧରି ଏଇମାନେ ଆସିଥିଲେ- ଏବେ ଏଇମାନେ ଆସିଛନ୍ତି । ଏହା ଉତ୍ତାରୁ ଯୁଗ ଯୁଗ ଧରି ଏଇମାନେ ହିଁ ଆସୁଥିବେ । ଏଇମାନଙ୍କ ପାଇଁ ପହଣ୍ଡି ବିଜୟ, ଏଇମାନଙ୍କ ପାଇଁ ଘୋଷଯାତ୍ରା ।

କେତେ 'ବାଦ', କେତେ 'ମତ' ଧାରଣ କରି ଆସୁଛନ୍ତି ଯୁଗପୁରୁଷ ଆଚାର୍ଯ୍ୟମାନେ - ଆଚାର୍ଯ୍ୟ ଶଙ୍କର, ରାମାନୁଜ, ନିମ୍ବାର୍କ, ମାଧ୍ୱବଲ୍ଲଭ । ଆସୁଛନ୍ତି ଜ୍ଞାନସୁରଧୁନୀର ଶାଖାୟିତ ଅସଂଖ୍ୟ ସ୍ରୋତ- ଦୟାନନ୍ଦ ସରସ୍ୱତୀ, ମମ୍ମଟ, ପାଣିନୀ । ଆସୁଛନ୍ତି କବିକୁଳ କବୀର, ସୁରଦାସ ଓ ଜ୍ଞାନେଶ୍ୱର । ଆସୁଛନ୍ତି ଗୋସ୍ୱାମୀ ତୁଳସୀ ଦାସ, ଆସୁଛନ୍ତି ମହାପୁରୁଷ ଶ୍ରୀ ଅରବିନ୍ଦ ।

ହିରଣ୍ମୟ ଜ୍ୟୋତିପୁରୁଷ ଇନ୍ଦ୍ରଦେବ, ଅଗ୍ନି, ବରୁଣ, କୁବେର, ମରୁତ୍‌ଗଣ, ବେଦମାତା, ଆଦିତ୍ୟ ବିଷ୍ଣୁ, ଶିବଗଣ, ହଂସବାହିନୀସରସ୍ୱତୀ, ଜଗଜ୍ଜନନୀ ଉମା, ସୁଷମାମୟୀ ମହାଲକ୍ଷ୍ମୀଙ୍କ ସମାଗମରେ ମହୋଦଧିଙ୍କ ଗହଣରେ, ଜ୍ୟୋତିଶ୍ଚକ୍ର ଗ୍ରହଗଣ, ତାରକା, ନକ୍ଷତ୍ର, ଧୂମିଳ ନିହାରିକା ମଣ୍ଡଳଙ୍କ ଶୂନ୍ୟାନ୍ତର ଉପସ୍ଥିତିରେ ଆମେ କାହିଁ ଆମର ଏଇ କଲ୍ୟାଣତମ ପୁରୁଷଙ୍କୁ ଆଗରୁ ତ ଦେଖିନଥିଲୁ ! ଆମ ଶିଥିଳ ଅଙ୍ଗରେ ଏ ମନ୍ଦୀଭୂତ ରକ୍ତପ୍ରବାହ କିଏ ଦେଲା ? ଏ ଘନ ତମିସ୍ରାର ପଲକ ଯୋଡ଼ିକୁ କିଏ ଜ୍ୟୋତି ଦାନ କଲା ?

**ଚିରକାଳ ସୁସ୍ଥ ନିରାମୟ ହୋଇ ଜୀଇ ରହନ୍ତୁ ଚନ୍ଦ୍ରଶେଖର ।**

ପ୍ରଭୁଙ୍କ ବିଜୟ ଅବସରରେ ପୁଣି ବିଶ୍ୱାବସୁ ଶବରର ବିଡ଼ମ୍ବନା କିପରି ବିସ୍ତୃତ ହୋଇଛି ! ''ଶୁଣରେ ଶବରା ତୋର ପତ୍ର ପୁଷ୍ପ ଫଳେ, ମନ ନ ରୁଚିଲା ଏବେ ଯିବା

୨୦- 'ରଥ ସପ୍ତକ' ପୃ ୧୫

ନୀଳାଚଳେ ।''- କେତେକାଳ ହେଲା ଏ ପଦକ କହିଦେଇ ପଛକରି ବାହାରି ଆସିଲୁ ! ଆସିଲୁ ଯେ ଆଉ ଫେରି ଗ୍ରହିଁଲୁ ନାହିଁ । ଆସନ୍ତୁ ଯଦି, ଧନ, କାନ୍ଧରେ ବସେଇ ଘେନିଯାନ୍ତି । ତୋ ଗୋଡ଼ରେ କଣ୍ଟା ବାଜନ୍ତା ନାହିଁ । ..... ଆଖିରେ ଥୋଲା ଥୋଲା କାରୁଣ୍ୟ । କେରି କେରି ଧଳା ବାଳ । ଶହ ଶହ ବର୍ଷର ଭାରରେ ନଇଁ ପଡିଥିବା ଧଳା ଧଳା ଭୁରୁ । ବିଶ୍ୱାବସୁ ଶବର ବିଡ଼ମ୍ୱିତ । (୨୮)

ଏଇ ବିଜୟ ଯାତ୍ରା ଦେଖିବାକୁ ଗୋପାଳୁଣୀମାନେ ଗୋପପୁରରୁ ସର୍ବସ୍ୱ ମୁଣ୍ଡେଇ ଆସିଛନ୍ତି । ତାଙ୍କ ଆଖିରେ ଆସିଛି ଯମୁନା । ଦେହରେ ଆସିଛି କଦମ୍ବ । ଥର ଥର ଅଙ୍ଗରେ ଲାଗିରହିଛି କାକରପବନ । (୨୯)

ପୁଣି ଆକାଶରେ କନକବର୍ଣ୍ଣା ଉମା ଆବିର୍ଭୂତା ।

ଆସିଛନ୍ତି ମଧୁଚକ୍ର ପରି ନଦିଆ, ଆହାମିଆ, ଶ୍ୱେତାଙ୍ଗ ସମ୍ପ୍ରଦାୟର କୀର୍ତ୍ତନ ମଣ୍ଡଳୀମାନେ ମୃଦଙ୍ଗ ଝାଞ୍ଜର ନାଦ ଛନ୍ଦରେ ସ୍ପନ୍ଦିତ ହେବାକୁ ।

''ପୁଣି ମଥିତ ସାଗର ପରି ଜନ ସମୁଦ୍ରରେ ଉଭା ହୋଇଛନ୍ତି ଶ୍ୱେତକହ୍ଲାର ସଦୃଶ ରୂପାୟିତ ଭକ୍ତି । କୋମଳପାଟଳ ବର୍ଣ୍ଣର ଅନୁରାଗ । ଦଗ୍ଧ କାଞ୍ଚନ ବର୍ଣ୍ଣର ଅଗ୍ନିଶିଖା ପରି ଜ୍ଞାନ । ତରଳ ମେଘାଚ୍ଛନ୍ନ ତାରକା ପରି ଦିଶି ନ ଦିଶୁଥିବା କୌତୁହଳ । ଧୂମକୁଣ୍ଡଳୀ ପରି ଧୂସର ସଂଶୟ । ବର୍ଚ୍ଛାପରି ତିଖ ଇସ୍ପାତରଂଗର ସ୍ପର୍ଦ୍ଧା- ଏବଂ ତରଳ, ନୀରବ, ବର୍ଣ୍ଣହୀନ, ଅଗାଧ ସଂସାର । (୩)

ଏକତ୍ରିତ ହୋଇଛନ୍ତି ଦିବ୍ୟ ଜ୍ୟୋତି ବିକୀର୍ଣ୍ଣ କରୁଥିବା ଋଷିବୃନ୍ଦ । ସିଂହଦ୍ୱାରରୁ ପ୍ରଭୁ ନିର୍ଗତ ହେଉଛନ୍ତି । ଗ୍ରହିଁଛନ୍ତି ସମ୍ରାଟ ଭଙ୍ଗୀରେ ଆଡିଳ ତାରକା-ବିସ୍ତୃତ ବିଶ୍ୱଭୂମିକୁ । ରଥାରୂଢ଼ ହେବେ ପରମ ପାବନ ବିଷ୍ଣୁ ।

ବିଷ୍ଣୁକ୍ରାନ୍ତା ହେବ ବସୁନ୍ଧରା । (୩୧)

ପରମପାବନ ମୁହୂର୍ତ୍ତରେ ରଥାରୂଢ଼ ହୋଇ ଶୋଭାପାଉଛନ୍ତି ବାମନ ବିଷ୍ଣୁ । ଉଲ୍ଲସିତ ପଦ୍ମବନରେ ଉଦୟ ହୋଇଛନ୍ତି ସବିତା ।

ଭୂଲୋକରୁ ସତ୍ୟଲୋକ ଯାଏ କୀଟ ଠାରୁ ବ୍ରହ୍ମ ପର୍ଯ୍ୟନ୍ତ ସିଦ୍ଧ, ଗନ୍ଧର୍ବ, ବିଦ୍ୟାଧର, ମୁନି, ଋଷି, ଯକ୍ଷ, ରକ୍ଷ, ଦେବତା କୃତାଞ୍ଜଳି ହୋଇ ସ୍ତବମାନ କରୁଛନ୍ତି ।

ଝଲମଲ କରୁଛନ୍ତି ଦିବ୍ୟ ରଥମାନେ । ଝଲମଲ କରୁଛନ୍ତି ହାତ ଧରାଧରି, କାନି ଧରାଧରି ହୋଇ କାଚ ଝମ୍‌ଝମ୍ କରୁଥିବା, ତେଲ ଜୁଡୁବୁଡୁ ମୁଣ୍ଡ, ଦଣ୍ଡିପିନ୍ଧା ନାକଝାଡ଼ି, ତକାହକା ହୋଇ ପୁରସ୍ତମ ଆସି ଠାକୁରକୁ ଦେଖି ଦେଖାଉଥିବା ଗାଁ ମାଇପେ, କେତେ ନରନାରୀ, କେତେ ଅସହାୟ ଶିଶୁ ।

---

୨୧ - ୨୭- ତତ୍ରୈବ ପୃ ୧୬

କେତେ ପ୍ରକାର ଆର୍ତି ପ୍ରକାଶୁଛି ଭକ୍ତ । "ଅଗାଧ ଜଳରାଶିରେ ବୁଡ଼ିଗଲି, ପ୍ରଭୁ ! ମୋର ଚେତନା ମୁହ୍ୟମାନ । ଅକଳନୀୟ ଶୀତଳ ଜଳାର୍ଣ୍ଣବ ରୂପେ ମୃତ୍ୟୁ ମୋତେ ଗ୍ରାସ କରିଯାଉଛି । ମୁଁ ବିମୂଢ଼ ! ମୁଁ ପରାସ୍ତ । ତୋର ଶରଣାଗତ ।" (୩୨)

ରଥ ପ୍ରସ୍ଥାନ କଲେ ।

ଡାହୁକ ନିର୍ଦ୍ଦେଶ ଦେଲେ । ନନ୍ଦିଘୋଷ ବିଜୟ କଲେ । ଦାରୁକ, ଅଶ୍ୱ, ବସୁଧା-ଯେ ଯାହା ସ୍ଥାନ ଆବୋରି ରହିଲେ । ଅବତୀର୍ଣ୍ଣ ହେଲେ ଠାକୁର; ଜଗତ୍ ପ୍ରବାହରେ ରୂପାୟିତ ହେଲେ ଜଗଦୀଶ ।

ରୂପାୟିତ ହେଲେ ଶବର, ଗୋପାଳଠାରୁ ଆରମ୍ଭ କରି ରାଗ, ଅନୁରାଗ, ଭକ୍ତି, ସ୍ପର୍ଦ୍ଧାଙ୍କ ଠାରୁ ଦେବ ଦାନବ ଯାଏ । ସମସ୍ତେ ଆପଣାକୁ ଭୁଲି ଜଗନ୍ନାଥଙ୍କ ଠାରେ ସମର୍ପିତ ହେବାର ଦିବ୍ୟ ଚିତ୍ରଟିଏ ଅଙ୍କିତ ହୋଇଗଲା । ଏ ଚିତ୍ରକର କିଏ ?

**ଦୀର୍ଘାୟୁ ହୁଅନ୍ତୁ ଚନ୍ଦ୍ରଶେଖର !**

ଆସିଗଲା ବାହୁଡ଼ା ବିଚ୍ଛେଦ । ବିମାନ ନେଲେ ଦକ୍ଷିଣ ମୋଡ଼ ।

ଏତ ଜଣା କଥା- ସେ ଯେମିତି ଶ୍ରଦ୍ଧା ଲଗାଇ ଜାଣେ, ସେମିତି ଭାଙ୍ଗି ମଧ୍ୟ ଜାଣେ ।

" ଏ ସପ୍ତଦ୍ୱୀପା ମେଦିନୀ, ଏ ନଦୀ, ପର୍ବତ, ଏ ନବର ପାଚେରୀ, ଏ ବକୁଳ ବନ- ସମସ୍ତେ ମିଶି ବିଳାପ କଲେ ଭଲା ସେ ଆଉ ଘଡ଼ିଏ ଏଠି ରହିଯିବ ? ନା, ଏବେ ସବୁ ପଛରେ ପଡ଼ି ରହିଯିବ; ଏ ଶୂନ୍ୟ ସିଂହାସନ, ଏ ନୀରବ ପଥରକାନ୍ଥ, ଏ ନିଛାଟିଆ ଅଗଣା, ନବରବେଢ଼ା ଆଉ ପାଚେରୀ !- ସବୁ ସୋହାଗ ପଛେଇ ଯିବ ମଉଳା ପାଖୁଡ଼ା ପରି, ଏ ପଥର ଫାଟି ନଯାଇ ଧୈର୍ଯ୍ୟ ଧରିବତ !" (୩୩)

ଗୁଣ୍ଡିଚ୍ଚା ନବରର ପଥର କାନ୍ଥରୁ ଏ କାନ୍ଦ ଆପଣମାନେ ଏଭଳି ଉଚ୍ଚସ୍ୱରରେ ଆଗରୁ ଶୁଣିଥିଲେ ? ହୁଏତ ଅନୁଭବ କରିଥିବେ ହେଲେ ଏଭଳି ସ୍ପଷ୍ଟ ଉଚ୍ଚାରଣ ତ କାନରେ ବାଜି ନଥିଲା ! ଏଭଳି ବ୍ୟାକୁଳତା ତ କାନ ଉଠିଲା ଦିନୁ ଶୁଣି ନଥିଲା ।

ଗୋଟାଏ ବିବର୍ଜିତ ଭୂମିରେ ଠିଆ ହୋଇ ସରିଯାଇଥିବା ଦିହକର କାହାଣୀ ଶୁଣାଇ ଆମକୁ ପବିତ୍ର କରିଛନ୍ତି କବି ।

ଚିରଞ୍ଜୀବୀ ହୁଅନ୍ତୁ ଚନ୍ଦ୍ରଶେଖର !

---

୨୮- 'ରଥ ସପ୍ତକ' - ପୃ ୨୧
୨୯- 'ରଥ ସପ୍ତକ' - ପୃ ୨୨
୩୦- 'ରଥ ସପ୍ତକ' - ପୃ ୨୪

ଡେଣାର ଷ୍ଟୋଟକରେ ବାହୁଡ଼ାବିଜୟର ବାର୍ତା ପ୍ରଚାର କରି ଅସଂଖ୍ୟ ଶ୍ୱେତପାରାବତ ନୀଳାଚଳ ଆକାଶରେ ଶ୍ରୀମନ୍ଦିର ବିମାନ ମଣ୍ଡଳକୁ ଚକ୍ରାକାର ପ୍ରଦକ୍ଷିଣ କରୁଛନ୍ତି । ସ୍ୱସ୍ଥାନକୁ ଫେରୁଛନ୍ତି ନିଳାଦ୍ରି ନାଥ ନବଦିନ ଘୋଷଯାତ୍ରା ପରେ । ସେହିଭଳି ଲାଜ ଲାଜ ଭାବ । ସେହିଭଳି ଅଜସ୍ର ପ୍ରତିଶ୍ରୁତି ।

ଠାକୁରଙ୍କ ଘରବାହୁଡାର ମଧୁର ମହୋତ୍ସବରେ ଲକ୍ଷ୍ମୀଦେବୀଙ୍କ ଉଆସ ପୁଲକିତ ହେଉଛି । ଶ୍ରୀମନ୍ଦିର ଶ୍ରୀମଣ୍ଡିତ ହୋଇ ଅପେକ୍ଷା କରୁଛି ରାଜାଧିରାଜଙ୍କ ପ୍ରତ୍ୟାବର୍ତ୍ତନକୁ । ହେଲେ ହଟ କରିଛନ୍ତି ଗୃହଲକ୍ଷ୍ମୀ ! ମୁହୁସୁଲିକୁ ପାଖକୁ ହକାରି ଲୋକତାତା ଆଡ଼ରୁଷା ଭଙ୍ଗୀରେ କହୁଛନ୍ତି,- ''ଉଆସ ବାହାରେ କିଏ ଏଡ଼େକ ସାହସରେ ଗହଳି କରୁଛି ଦେଖିବୁ ଗଲୁ ! ପାଇକ ଜଗୁଆଳାଙ୍କୁ କହିବୁ କବାଟ କିଳି ମୁଦ ମାରିଦେବେ । ମାଛି ପଡ଼ିଲେ ବେନିଖଣ୍ଡ ହୋଇ ଯିବ ଯେମିତି !'' (୩୪)

ଏଣେ ଭିତର ବେଢ଼ାରେ ନିକଟତମା ପରିଚାରିକାକୁ ଡାକି ଠାକୁରାଣୀ ଗୋପନରେ କହୁଛନ୍ତି, '' ବନ୍ଦାପନା ଥାଳିରେ ଚମ୍ପାଫୁଲ ସଜାଡ଼ି ରଖିଛୁତ ? ବଉଳମାଳାରେ ନାଗେଶ୍ୱର ଖଞ୍ଜିଛୁତ ! ଆଜି ପରା ଦୀର୍ଘ ନଅ ଯୁଗ ପରେ ସେ ଫେରୁଛନ୍ତି । ଏତେକାଳେ ଉଆସ ମନେପଡିଲା, ମୁଁ ମନେପଡିଲି ପରା ! (୩୫)

କବାଟ ଫାଙ୍କରୁ ବିଦ୍ୟୁତ୍‌ର ସ୍ଫୁରଣ ପରି ଲକ୍ଷ୍ମୀ ଠାକୁରାଣୀଙ୍କ ପ୍ରକାଶ ହେଲା । ସେହିପରି ଶୁଭିଲା, ''ଏମିତି ଧୂଳି ଧୂସର ହୋଇ ଆସିଲେ କେଉଁଠୁ ? ଗଲେ କେମିତି ? ରୋଗରୁ ଉଠି ଦେହ ଟିକିଏ ବାଟକୁ ଆସିଛି ନା ନାହିଁ, ଚୋରଙ୍କ ପରି କାହିଁକି ଏଠାରୁ କାହାକୁ ନ କହି ଚାଲିଗଲେ ? ନଅଦିନ କାଳ ଖାଇଲେ କ'ଣ ? ଭଉଣୀଙ୍କୁ ନେଇ ରହିଲେ କେଉଁଠି ?

ଏଇମିତି ମାନ ଅଭିମାନ ପରେ ବଜ୍ରକବାଟ ଝୀନ କନାଟି ବାଡ଼ ପରି ଅପସରିଗଲା । ଭକ୍ତ ଜଣେ ବୋଲିଲେ, ''ପ୍ରିୟେ ଚାରୁଶୀଳେ, ମୁଞ୍ଚମୟି ମାନମ ନିଦାନମ୍‌'' । ଉଲ୍ଲସିତ ସିନ୍ଧୁମାନେ ମଧୁକ୍ଷରଣ କଲେ । ମଧୁବାହୀ ପବନ ଚାମରଚାଳନା କଲେ । ଦଶମୀ ଚନ୍ଦ୍ରର ପୀନାଗ୍ରରୁ ଚିପୁଡ଼ି ହୋଇ ଅଖଣ୍ଡ ସୋମରସ ଶୀକର ପରି ଆକାଶକୁ ପରିପୂର୍ଣ୍ଣ କଲେ । ମହାଲକ୍ଷ୍ମୀ ସମନ୍ୱିତ ଠାକୁରେ ପାବଚ୍ଚ ମଣ୍ଡନ କଲାବେଳେ ଏକାନ୍ତ ଘନରସସିକ୍ତ ହୋଇ କୃତାର୍ଥ ହେଲେ ଆବ୍ରହ୍ମକୀଟ ପର୍ଯ୍ୟନ୍ତ ଚରାଚର ବିଶ୍ୱ !'' (୩୯)

---

୩୧- 'ରଥ ସପ୍ତକ' - ପୃ ୨୯
୩୨ - 'ରଥ ସପ୍ତକ' ପୃ ୪୦
୩୩- 'ରଥ ସପ୍ତକ' ପୃ ୪୫

କୃତାର୍ଥ ହେଲେ ଚନ୍ଦ୍ରଶେଖର । କୃତାର୍ଥ ହେଲା ଓଡ଼ିଆ ଜାତି ।

ଦୀର୍ଘାୟୁ ହୁଅନ୍ତୁ ଏହି ଦିବ୍ୟ ଚିତ୍ରକର ।

ହେଲେ, ଜୀବଯାତନାର ଅନ୍ତ ନାହିଁ; ଦୁଃଖର ଅନ୍ତ ନାହିଁ । ସେଥିପାଇଁ କୃତାର୍ଥ ଚନ୍ଦ୍ରଶେଖର ଦାର୍ଶନିକ ଭଂଗୀରେ କହନ୍ତି, '' ଅନ୍ତର୍ଯ୍ୟାମୀ ପୁରୁଷ ପାଖରେ ଦୁଃଖ ବଖାଣିବାର ବାହୁଲ୍ୟ କରନାହିଁ । ଅପ୍ରାଧ କର ନାହିଁ । ପ୍ରଭୁ ତାଙ୍କ ନିଜ ପ୍ରଭୁପଣରେ ବିରାଜିତ ହେବା ହିଁ ଯଥେଷ୍ଟ । ରତ୍ନସିଂହାସନରେ ଏମନ୍ତ ଠାକୁର ଶ୍ରୀମନ୍ତ ହୋଇ ଉଭାରି ରହିବା ହିଁ ଆମର ମହାଭାଗ୍ୟ । ଆତ୍ମାପରି ସୁକୁମାର, ସୁଢ଼ଳ, ନିର୍ଲିପ୍ତ, ସଦାତୁଷ୍ଟ ହୋଇଥାଅ ଠାକୁରେ; ଅଗଣିତ ଭକ୍ତଙ୍କ ନୟନାଭିରାମ ହୋଇ ରହିଥାଅ ।'' (୩୭)

ଏଭଳି ସେ କହନ୍ତି କାରଣ ସେ ଜାଣନ୍ତି, '' ଏ ଅଧମର ଜୀବନ-ଯାତ୍ରା ହିଁ ଘୋଷଯାତ୍ରା । ଯାତ୍ରା-ବିମୂଢ଼ ମୁଁ ଅନୁଭବି ପାରୁନାହିଁ, ଯେଉଁଦିନ ଇନ୍ଦ୍ରିୟମାନେ ପରିତ୍ୟକ୍ତ ରଥ ପରି ନିଶ୍ଚଳ ହୋଇଯିବେ, ନିରନ୍ଧ୍ର ମେଘମାଳାରେ ଆଷାଢ଼ ଆକାଶ ଆଚ୍ଛନ୍ନ ହୋଇ ଆସୁଥିବ,ବୁଜି ହୋଇ ଆସୁଥିବ ଜୀବନର ପ୍ରସ୍ଫୁଟିତ ପଦ୍ମ, ମୋ ଶ୍ରୀମନ୍ଦିର ଗମ୍ଭୀରାଭିତରେ ଏପରି ଅଚଞ୍ଚଳ ପ୍ରଣବ ରୂପରେ ବିଜେ ହୁଅ ଜଗନ୍ନାଥ; ପରିପୂର୍ଣ୍ଣ ହେଉ ଘୋଷଯାତ୍ରା, ଶ୍ରୀମଣ୍ଡିତ ହେଉ ଶ୍ରୀମନ୍ଦିର ।''

ଘୋଷଯାତ୍ରା ପରିପୂର୍ଣ୍ଣ ହେଲା, ରଥ ସପ୍ତକ ପରିପୂର୍ଣ୍ଣ ହେଲା । ହେଲେ ରଥ ସପ୍ତକର କବି ଯେଭଳି ଭାବରେ ଉନ୍ମଥିତ ସଂସାରର ସ୍ଥିର କେନ୍ଦ୍ରରେ ପ୍ରଭୁଙ୍କୁ ବିରାଜମାନ କରାଇ ଜଗତର ଅନ୍ଧାର ଘରକୁ ଆଲୋକିତ କରିବାର ଅପୂର୍ବ, ଦିବ୍ୟ ପ୍ରାର୍ଥନାରେ ଆମକୁ ମୂହ୍ୟମାନ କରିଦେଲେ, ସେଇ ଅନାହତ ଅନୁଭବ ପରେ ଆମେ ନିଶ୍ଚିନ୍ତ ହୋଇରହିପାରିବା କିପରି ?

କୋଟି କୋଟି ଭକ୍ତଙ୍କର ମେଳାଭୂମି ଏ ସିଂହଦ୍ୱାର । ସତେଇଶି ପୁରୁଷଙ୍କ ତୀର୍ଥଭୂମି ଏ ବାଇଶି ପାବଚ୍ଛରେ, ବଡ଼ ଦାଣ୍ଡରେ ଯେଉଁ ଭକ୍ତ ମହାପୁରୁଷ, ତୃଷିତ ସାଧକ ଆତ୍ମା, ଆମ ପୂର୍ବପୁରୁଷମାନଙ୍କୁ, ପ୍ରତିଟି ଅପରବ୍ୟକ୍ତିକୁ ମହାପୁରୁଷ ରୂପେ ଦର୍ଶନ କରାଇ ଆମ ହଜାର ବର୍ଷର ସଂସ୍କୃତି  ଗଢ଼ି ଉଠିଛି ବୋଲି ଶୁଣିଥିଲୁ । ହେଲେ ପାଟଣାରୁ ବାଦଶା ଭୋଗ ଚାଉଳ, କାଶ୍ମୀରରୁ ପେସ୍ତାବାଦମ, କାବୁଲ୍‌ରୁ କଦଳୀ, କେରଳରୁ ନାରିକେଳ, ପଞ୍ଜାବରୁ ବୁଟଚଣା, କୋରାପୁଟରୁ କାନ୍ଦୁଲ, ସୋନପୁରରୁ ମୁଗ, ବରଗଡ଼ରୁ ବିରି, ଖଡ଼ିଆଳରୁ ଖରମରା ଘିଅ, ମାଣିକପାଟଣାରୁ ଗୁଙ୍ଗଡ଼ା ଦହି, ମହେନ୍ଦ୍ରରୁ ମହୁ, ଗୋପରୁ

୩୪-'ରଥସପ୍ତକ' ପୃଷ୍ଠା ୨

ଦୁଧସର, ବ୍ରହ୍ମପୁରୀ ନବାତ, ନେପାଳ କେଶର, ମାଥୁରୀ ଲଡୁ, ବୃନ୍ଦାବନୀ ଖୁଆ ଆଣି, ସୁସଜ୍ଜ ପ୍ରସ୍ତୁତ କରି ଏଭଳି ଶ୍ରଦ୍ଧାରେ କିଏ ବାଢ଼ି ଦେଇଥିଲା ? କିଏ ଏମିତି ସାରା ବିଶ୍ୱକୁ ପ୍ରେମ-ଭ୍ରାତୃତ୍ୱର ପାଟଡୋରରେ ବାନ୍ଧିଦେଇ ଉତ୍କଳୀୟ ସଂସ୍କୃତିର ପ୍ରାଣପିଣ୍ଡକୁ ଚିହ୍ନାଇଥିଲା ?

ମଣିଷ ସ୍ୱରରେ ସ୍ଫୁଟ-ଅସ୍ଫୁଟ, ପ୍ରକଟ-ଅପ୍ରକଟ ଭାଷାରେ ଅସଂଖ୍ୟ ପ୍ରାଣର ଆକୃତି କିଏ ଶୁଣି ଶୁଣାଇଥିଲା ? ହିମାଳୟର ଶୁଭ୍ର ଚୂଡ଼ା ଉପରୁ ଅଗଣିତ ଭାସ୍ୱର ପୁରୁଷ ନୀଳାଚଳକୁ ଓହ୍ଲାଇ ଆସିବାର, ପିତୃଲୋକେ ଆଲୁଏ ଆସି ଆଲୁଏ ଯିବାର, ପୃଥିବୀକୁ ଆଲୋକିତ କରିବାର ଆଉ ଏମାନଙ୍କ ଆଲୁଅରେ ସ୍ନାହାନ କରି ଧୋଇ ହୋଇଯିବାର ଆକୁଳ ଆହ୍ୱାନ କେହି ଦେଇଥିଲା ?

ଚନ୍ଦ୍ରଶେଖରଙ୍କୁ ଆମେ ଗଦ୍ୟ ଲେଖକ ବୋଲି ଜାଣିଥିଲୁ । ହେଲେ 'ରଥସପ୍ତକ'ର ଏ ମହାତମା ତ ଜଣେ କବି, ଜଣେ ଚିତ୍ରକର, ଜଣେ ପଣ୍ଡିତ, ଜଣେ ବିଦ୍ୱାନ । ଆମକୁ ସେ ଯେଉଁ କଥାମାନ କଥକ ଶୈଳୀରେ କହି ଯେଭଳି ଆମ ଆତ୍ମାକୁ ଚିହ୍ନାଇ ଦେଲେ ସେପରିତ ଆଗରୁ କେହି କହି ନଥିଲେ ! ଏହା କେବଳ ଗୋଟିଏ ମୌଳିକ ସ୍ରଷ୍ଟାର ସର୍ଜନା ନୁହେଁ ; ଗୋଟିଏ ଚିନ୍ତକ, ଦାର୍ଶନିକର ଦିବ୍ୟ ଅନୁଭବ ଯେପରି ଜଗତକୁ ଉଦ୍ଧାର କରିବା ପାଇଁ ଉଦ୍‌ଗ୍ରୀବ ହୋଇ ଉତ୍‌ଥିତ ହୋଇ ଆସୁଛି ।

ଓଡ଼ିଆ ଭାଷା ସାହିତ୍ୟ ଆଜି ଜଣେ ଯୁଗ ପୁରୁଷର ସଂଧାନ ପାଇଛି । ଚନ୍ଦ୍ରଶେଖର ନିଜେ ଧନ୍ୟ ହୋଇଛନ୍ତି, ଆମକୁ ଧନ୍ୟ କରିଛନ୍ତି । ତାଙ୍କର ଏଇ ଶ୍ୱେତ, ଶୁଭ୍ର, ଶାଣିତ, ଶକ୍ତିଶାଳୀ ସୃଜନ-ପ୍ରକ୍ରିୟା ଚିରନ୍ତନ ହେଉ ।

'ରଥସପ୍ତକ'ର କଥକ ପ୍ରକୃତରେ ମହାବିଶ୍ୱର କବି । ତାହାଙ୍କ ଅନନ୍ୟକୃତି 'ରଥସପ୍ତକ'ର ଗବାକ୍ଷ ଦେଇ ତାହାଙ୍କ ରଚନା-ବିଶ୍ୱକୁ ଦେଖିବାର, ଚିହ୍ନିବାର ଶୁଭ ଅବକାଶ ଆଜି ।

ଦୀର୍ଘଜୀବୀ ହୁଅନ୍ତୁ କବି, ନିରାମୟ ହୁଅନ୍ତୁ ।
ଅଧିକ ସିଦ୍ଧ ହେଉ ଆପଣଙ୍କ ବିଶୁଦ୍ଧ ଭକ୍ତି,
ଦୃପ୍ତ ହେଉ ଆପଣଙ୍କ ଦର୍ଶନ ।

***

---

୩୫-ତତ୍ରୈବ ପୃ ୫୩
୩୬- ତତ୍ରୈବ ପୃ ୫୯

# ଶୈଳୀର ଆଲୋକ ଓ ଚନ୍ଦ୍ର କିରଣ

*ଆଲୋକ ବରାଳ*

(୧)

ଗଳ୍ପ ଏକ ଭାଷିକ କଳା ଯାହା ଭାଷା ଦ୍ୱାରା ଅଭିବ୍ୟକ୍ତିଲାଭ କରେ । ଯେତେବେଳେ 'ଗଳ୍ପର ଶୈଳୀ' କଥାଟି ଉତ୍‌ଥାପିତ ହୁଏ ସେତେବେଳେ ସ୍ୱତଃ ତେଣୁ ଭାଷା ପ୍ରସଂଗଟି ଆପେ ଆପେ ଗ୍ରଳିଆସେ । ଭାଷାର ବିଭବକୁ ଶୈଳୀହିଁ ଆଧାର କରିରହିଥାଏ । ଧ୍ୱନି, ଶବ୍ଦ, ପ୍ରତ୍ୟୟ, ବାକ୍ୟାଂଶ ଆଦି ଶୈଳୀର ମୂଳସୂତ୍ର । ସ୍ରଷ୍ଟାର ସାହିତ୍ୟିକ ଅଭିବ୍ୟକ୍ତିର ମାନଦଣ୍ଡ ହେଉଛି ଶୈଳୀ । ଭାଷା ଯଦି ଭାବର ବାହନ ହୁଏ ତେବେ ସେହି ବାହନର ବହୁବିଧ 'ରୂପ' ବା 'ଢଙ୍ଗ' ହେଉଛି ଶୈଳୀ । ଫଳତଃ ସୃଜନକର୍ମରେ 'ଶୈଳୀ'ର ରହିଚି ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା । ଶୈଳୀ (Style), ସ୍ରଷ୍ଟାକୁ ପରିଚିତ କରାଏ । ଅଲଗା କରି ଚିହ୍ନାଏ, ଯେଉଁଥି ପାଇଁ ଆମେ ଜଣକର 'ଶୈଳୀ' ବା ଷ୍ଟାଇଲ କୁ ଆର ଜଣକଠାରୁ ଅଲଗା ବୋଲି ଜାଣୁ ।

ଶୈଳୀ (Style), ସାହିତ୍ୟକୃତିର ବିବେଚନାର ଏକ ମାନଦଣ୍ଡ । ଯେଉଁ ମାନଦଣ୍ଡ ସାହିତ୍ୟକୁ ତାର ପରିଚିତି କାଳେ କାଳେ ଦେଇ ଆସିଛି । ଶୈଳୀକୁ ସେଥିପାଇଁ Croce, Style is the man କହିଥିବା ବେଳେ Buffon, Style is the man himself ବୋଲି କହନ୍ତି ପୁଣି Pope କହନ୍ତି Style is the dress of thought । ଏ ସମସ୍ତ ମନ୍ତବ୍ୟର ମୂଳଟି କିନ୍ତୁ ସେହି ଢଙ୍ଗ ପ୍ରସଙ୍ଗକୁ ଅଭିବ୍ୟଂଜିତ କରେ, - ଯାହା ଜଣେ ସ୍ରଷ୍ଟାର ଶୈଳୀ ବା ଷ୍ଟାଇଲ । ମୋଟା ମୋଟି "Style ଟି କଣ ବୁଝାପଡୁଥିଲେ ହେଁ, ବହୁ ଦ୍ୱଂଦ୍ୱାତ୍ମକ-ବିରୋଧାତ୍ମକ ତର୍କବିତର୍କ ଦେଇ ଏଯାବତ୍ ସେ ତା'ର ସ୍ୱତନ୍ତ୍ର ସଂଜ୍ଞାଟିଏ ପାଇ ପାରିନାହିଁ । ମାତ୍ର ଶୈଳୀର ଚର୍ଚ୍ଚା ଗ୍ରଲୁ ରହିଛି ।

(୨)

ଆଲୋଚ୍ୟ ଗାଳ୍ପିକ ଶ୍ରୀ ଚନ୍ଦ୍ରଶେଖର ରଥ (୧୯୨୯)ଙ୍କ ଗଳ୍ପରେ ଶୈଳୀ ନିର୍ଦ୍ଧାରଣ ଏହି ପ୍ରବଂଧର ମୂଳ ଉଦ୍ଦେଶ୍ୟ । ଯେଉଁ ସବୁ ଉପାଦାନ ପାଇଁ ଗାଳ୍ପିକ ରଥ ଆମ ଆଗରେ ସ୍ୱତନ୍ତ୍ର ପରିଚିତି ନେଇ ଦଣ୍ଡାୟମାନ, ତାର ଆଲୋଚନା ଏବଂ ବ୍ୟାଖ୍ୟା ଏହାର ମୂଳ ଧ୍ୟେୟ ବସ୍ତୁ ।

ଗାଳ୍ପିକ ଚନ୍ଦ୍ରଶେଖର ରଥଙ୍କ ପ୍ରଥମ ଗଳ୍ପ 'କେଢ଼ା' (୧୯୬୭-୬୮) ଠାରୁ ଆଜି ଛତିଶ ବର୍ଷର ଦୀର୍ଘ ଅତିକ୍ରମିତ ପଥ । ୧୯୭୮ ମସିହାରେ ପ୍ରଥମ ଗଳ୍ପଗୁଚ୍ଛ

'ଅନେକ ବନ୍ୟାପରେ' ପ୍ରକାଶିତ ହୁଏ । 'ଅନେକ ବନ୍ୟାପରେ'ଠାରୁ ପ୍ରଲଂବିତ ଦୀର୍ଘତା ଭିତରେ ଗାଳ୍ପିକ ରଚନା କରିଛନ୍ତି ଅନେକ ଗଳ୍ପ । ପ୍ରକାଶ ପାଇଚି ତେରଟିରୁ ଉର୍ଦ୍ଧ୍ୱ ସଂକଳନ । ସେଗୁଡ଼ିକ ହେଲା : ଅନେକବନ୍ୟାପରେ (୧୯୭୮, ଗ୍ରନ୍ଥ ମନ୍ଦିର, କଟକ), ଅଶ୍ୱାରୋହୀର ଗଳ୍ପ (୧୯୭୯, ଗ୍ରନ୍ଥମନ୍ଦିର), 'ସମ୍ରାଟ ଓ ଅନ୍ୟମାନେ' (୧୯୮୦, ଗ୍ରନ୍ଥମନ୍ଦିର), ଅନ୍ୟ ଏକ ସକାଳ (୧୯୮୧, ଗ୍ରନ୍ଥ ମନ୍ଦିର), ସବୁଜାକସ୍ୱପ୍ନ (୧୯୮୪, ଗ୍ରନ୍ଥ ମନ୍ଦିର), ଏତେ ପାଖରେ ସମୁଦ୍ର (୧୯୮୮, ଇଷ୍ଟର୍ଣ୍ଣ ମିଡ଼ିଆ ଲିମିଟେଡ୍, ଭୁବନେଶ୍ୱର) ବାଘ ସବାର (୧୯୯୦, ଇଷ୍ଟର୍ଣ୍ଣ ମିଡ଼ିଆ ଲିମିଟେଡ), ସବୁଠାରୁ ଦୀର୍ଘରାତି (୧୯୯୫, ଗ୍ରନ୍ଥ ମନ୍ଦିର), ଅଂତିମା (୧୯୯୬, ଆର୍ଯ୍ୟପ୍ରକାଶନ, କଟକ), ସହଯାତ୍ରିକ, 'ସ୍ୱପ୍ନବାହକ' (ଗ୍ରନ୍ଥ ମନ୍ଦିର) ବିକ୍ରିପାଇଁ ଫୁଲମାଳ (ଗ୍ରନ୍ଥ ମନ୍ଦିର), 'କ୍ରମଶଃ ଗଭୀର ନଈ' (୧୯୯୯, ଗ୍ରନ୍ଥ ମନ୍ଦିର) ଇତ୍ୟାଦି ।

ସୃଷ୍ଟିର ଶୈଳୀଗତ ଅଧ୍ୟୟନ ପାଇଁ ଯେଉଁ ଦ୍ୱିବିଧ ଅନୁଶୀଳନ କରାଯାଏ ତାହାହେଲା : (୧) ଭାଷାତାତ୍ତ୍ୱିକ ଶୈଳୀ ଅଧ୍ୟୟନ (Linguistic stylistics) ଏବଂ (୨) ସାହିତ୍ୟିକ ଶୈଳୀ ଅଧ୍ୟୟନ (Literary Stylistics) ଉପର୍ଯ୍ୟୁକ୍ତ ଦୁଇ ପ୍ରକ୍ରିୟା ମାଧ୍ୟମରେ ଆମେ ଚନ୍ଦ୍ରଶେଖରଙ୍କ ଗଳ୍ପ-ଶୈଳୀକୁ ବିଶ୍ଳେଷଣ କରିପାରିବା ।

(୩)

ଭାଷାର ସଂରଚନା ସର୍ବଦା ପଂଚବିଧ । ଧ୍ୱନି, ରୂପ ଓ ବାକ୍ୟ ଏହାର ତିନୋଟି ଅଂତର୍ସ୍ତର ହୋଇଥିବା ସ୍ଥଳେ ଶବ୍ଦ ଓ ଅର୍ଥ ଏହାର ପରିପାର୍ଶ୍ୱିକସ୍ତର । ଶୈଳୀଟି ଭାଷା ସଂଶ୍ଳିଷ୍ଟ ହୋଇଥିବାରୁ ଶୈଳୀ ଆଲୋଚନା ବେଳେ ମଧ୍ୟ ଉପର୍ଯ୍ୟୁକ୍ତ ପାଂଚ୍ଗୋଟି ବିଶିଷ୍ଟ ଉପାଦାନ ଦ୍ୱାରା ଆଲୋଚିତ ହୋଇଥାଏ ।

ଶୈଳୀ ଆଲୋଚନା କ୍ଷେତ୍ରରେ ଧ୍ୱନିସ୍ତରୀୟ ରୂପକୁ— 'Stylistic of the Sound ବା Phonostylistics ବୋଲି କୁହାଯାଏ । ଧ୍ୱନି ଆଲୋଚନା ବେଳେ ଅନୁକରଣାତ୍ମକ ବା ଧ୍ୱନ୍ୟାତ୍ମକ ଶବ୍ଦ (onomatopoeic word) ର ବିପୁଳ ସୌନ୍ଦର୍ଯ୍ୟକୁ ଆମେ ଲକ୍ଷ୍ୟ କରୁଁ । ଗାଳ୍ପିକ ଚନ୍ଦ୍ରଶେଖରଙ୍କ ଗଳ୍ପ ନାନା ବିଧ ଧ୍ୱନ୍ୟାତ୍ମକ ବା ଅନୁକରଣାତ୍ମକ ଶବ୍ଦକୁ ଆଧାରକରି ଗଳ୍ପର ଭାଷିକ ଦିଗକୁ ମହତ୍ତ୍ୱପୂର୍ଣ୍ଣ କରିପାରିଛି ।

ଧ୍ୱନ୍ୟାତ୍ମକ ଶବ୍ଦ ତାଂକ ଗଳ୍ପର ଭାବବୋଧକୁ ଆବେଗପୂର୍ଣ୍ଣ, ଚିତ୍ରଧର୍ମୀ ତଥା ପ୍ରଭାବଶାଳୀ କରିଚି । ଗଳ୍ପର ଛତ୍ରେ ଛତ୍ରେ ଏଭଳି ଶବ୍ଦର ପ୍ରୟୋଗ ସର୍ବତ୍ର ଲକ୍ଷ୍ୟଣୀୟ । ଏଠାରେ କେତୋଟି ଉଦାହରଣ ଦେଖାଯାଉ : "ଶାଗ ପୋକ ଆଣି ସେ ବ୍ଲେଡରେ ପଗପଗ କରି କାଟିଲା । ଛୋଟ ଚିମଟାରେ ସେଥିରୁ ଗୋଟିଏ ମୁଗଭଳି ଟେକି ଧରିଲେ ଚିଁ ଚିଁ ଶବ୍ଦକରି ଦୁଇଟି ରଂଗଣି ଫୁଲ ଫୁଟିଯାଏ । ପକେଇ ଦଉ ଦଉ ଟପ୍‌କିନା ଗିଳି

ଦିଏ; ପୁଣି ପାଟି ମେଲେଇ ଚିଁ ଚିଁ କରେ ।'' (ସଂପଦ, ବାଘସବାର) । ପକ୍ଷୀ ଶାବକଙ୍କୁ ଖାଦ୍ୟ ଦେବାର ଉତ୍ସୁକତାରୁ ଏ ପ୍ରସଂଗଟି ଲିଖିତ । ଯେଉଁଠି 'ପଗ ପଗ', 'ଚିଁ ଚିଁ' ଭଳି ଧ୍ୱନି ସୃଷ୍ଟିକାରୀ ଶବ୍ଦ ଏବଂ 'ଦଉଦଉ' ଭଳି ଦ୍ୱିତ ଉଚ୍ଚାରିତ ଶବ୍ଦ ଭାଷାକୁ ପ୍ରଭାବଶାଳୀ କରିବା ସହ ଭାବକୁ ସାଂଦ୍ର କରିଛି । ଅନ୍ୟ ଦୁଇଟି ଉଦାହରଣ ଦେଖାଯାଉ :

(୧) 'ବାହାରେ ଝମ ଝମ୍ ବର୍ଷା ବିଜୁଳି କାଟିଦେଲା । ଦିବସରେ ଘୋଟି ଗଲା ଅଁଧାର । ଏମିତି ରବରବ ବର୍ଷା, ଏମିତି ଘିଡ଼ିଘିଡ଼ି ଗୁମୁଗୁମୁ ବଜ୍ର ବିଜୁଳି ଏବଂ ଓଦାଓଦା ସେ ନୀରବ ପକ୍ଷୀବସାପରି ଛୋଟିଆ ଭଡ଼ାଘରଟିରେ ଏତେ ନିଶ୍ଚଳତା କେହି ଦେଖିବାକୁ ନଥିଲେ ।'' (ରାବଣ, ସମ୍ରାଟ ଓ ଅନ୍ୟମାନେ)

(୨) 'ତା କାନ ଭାଁ ଭାଁ ଡାକୁଥାଏ । ଆଖିରେ ଝାପ୍‌ସା ଝାପ୍‌ସା ଦିଶୁଥାଏ । ଖୁସ୍ ଖୁସ୍ ଗୁଡ଼ିଏ ପାଦଶବ୍ଦ ପାଖେଇ ଆସିଲା । ଫିସ୍ ଫିସ୍ କଥା, ଗୁଣୁଗୁଣୁ ସ୍ୱର । ବିସ୍ମିତ ବିମୂଢ଼ କୋଡ଼ିଏଟି ମଣିଷ ମେଂଗ୍ୱଟିଏ ହୋଇ ପଶି ଆସିଲେ..... ଜଳଜଳ ଅନେଇଲେ ଗ୍ୱରିଆଡ଼କୁ । ପାଟି ହାଁକରି ଗ୍ୱହିଁ ରହିଥାଂତି କାଂଥକୁ, ବାଡ଼କୁ, ତଳକୁ, ଉପରକୁ ।'' (ଭୋଗଦଖଲ, ଓ.ଓ.ଅ)

ଧ୍ୱନ୍ୟାତ୍ମକ ଶବ୍ଦ ସହ ଅନ୍ୟ ଯୋଡ଼ ଶବ୍ଦର ବ୍ୟବହାର (ଓଦା ଓଦା, ଝାପ୍‌ସାଝାପ୍‌ସା) ଦ୍ୱାରା ବକ୍ତବ୍ୟମାନ ଚିତ୍ରପ୍ରତିମ ଦୃଶ୍ୟମୟ ହୋଇ ଉଠିଛି ତତ୍‌ସହିତ ବକ୍ତବ୍ୟଟିର ଗୁରୁତ୍ୱଟି ଉପଲବ୍ଧି ହୋଇପାରୁଚି । ଭାଷାର, ଶବ୍ଦର, ଧ୍ୱନିର ଏହି ଶବ୍ଦମୟତା, ଶ୍ରୁତି-ମାଧୁର୍ଯ୍ୟ ବାକ୍ୟକ ସଂଯୋଜକ ପାଠକୀୟ ଦୃଷ୍ଟିକୁ ଆକର୍ଷିତ କରିପାରିଚି ।

ସାଧାରଣ କଥା ଗୁଡ଼ିକରେ ଚଂଦ୍ରଶେଖର ଯୋଡ଼ି ଦିଅଂତି ଏଭଳି ଶବ୍ଦପୁଂଜ । ଯାହା ଆପେ ଭାବ-ଗଂଭୀରାତ୍ମକ ହେବା ସହ ଚିତ୍ରାତ୍ମକ ହୋଇଉଠେ । ଯେପରି : ''ମୋ ଭିତରେ ହୁତ୍ ହୁତ୍ ହେଇ କଣଟାଏ ଜଳୁଥାଏ'' (ଯା...ତତେ ମାଫ୍ କଲି, ବା.ସ.), ''ମୋ ଦେହ ମୁଂଡ ଗବ୍ ଗବ୍‌ହେଲା'' (ଯା...ତତେ ମାଫ୍‌କଲି), ''ଢ଼ାଇଢ଼ାଇ ବଜେଇ ଦେଲା ।'' (ବାନପ୍ରସ୍ଥ, ବା.ସ.), ''ଘାଇଁ ଘାଇଁ ଡାକଦେଇ ଗାଡ଼ି ବୁଲିଗଲା ଅଁଧାରକୁ'' (ଘାଟ-ମହାସୁଲ, ବା.ସ.), ''ଦୁରୁଦୁରୁ ବର୍ଷା ଛେଚୁଥିବା ବେଳେ ଭାଉଜ ଉପରକୁ ଅନେଇ ବସିଥିବେ । ଉପରୁ ଅଳଂଧୁ ଖସୁଥିବ । ମଟ ମଟ ଡାକୁଥିବ ଗ୍ୱଳ ।'' (ଆମକୁ ବିପନ୍ନ କର, ଏତେ ପାଖରେ ସମୁଦ୍ର) ଇତ୍ୟାଦି ବାକ୍ୟାଂଶକୁ ଲକ୍ଷ୍ୟ କଲେ ଯାହା ପ୍ରତିତ ହୁଏ, ତାହା ହେଲା : ଧ୍ୱନ୍ୟାତ୍ମକ ଶବ୍ଦ ବାକ୍ୟର ଗଂଭୀରତାକୁ ବଢ଼ାଇବା ସହ କାବ୍ୟିକ ଏବଂ ଚିତ୍ରକଳ୍ପ ଧର୍ମୀ ଏକ ଆମେଜ୍ ସୃଷ୍ଟି କରୁଚି । ଖାଲି ଜଳିବା ଏବଂ ହୁତୁହୁତୁ ହେଇ ଜଳିବା, ଦେହ ମୁଂଡ ଗବ୍ ଗବ୍ ହେବା ଭିତରେ ସେହି ଅର୍ଥ-ଗଭୀରତାକୁ ସ୍ପର୍ଶ କରୁଁ । ଏଠାରେ ତାହାର କେତେକ ଉଦାହରଣ ଦିଆଯାଇପାରେ :

(୧) ଧ୍ୱନିଅନୁକରଣ : (ଯେଉଁ ଧ୍ୱନି ଆମକୁ ଯେଉଁଭଳି ଶୁଣାଯାଏ), ଚିଁ ଚିଁ (ପକ୍ଷୀ ଶାବକ), ଟିକ୍ ଟିକ୍ (ଘଂଟା), ଠକ୍ ଠକ୍ (କବାଟ),ଫଡ଼ ଫଡ଼ (ପକ୍ଷୀ/ପତଂଗ), ଝେଁ ଝେଁ, ଗଁ ଗଁ, ଫଁ ଫଁ, ହୁହୁ (ପବନ) ଇତ୍ୟାଦି ।

(୨) କ୍ରିୟା ଓ ତଦ୍‌ଜାତ ମିଳିତ ଅନୁକରଣ : (କୌଣସି କାର୍ଯ୍ୟ ସମୟରେ ଜାତହେଉଥିବା ନିର୍ଦ୍ଧିଷ୍ଟ ଧ୍ୱନି), ଦୁମୁଦୁମୁ (ଦୌଡ଼ିବା/ଗ୍ୱଲିବା), ଢ଼ାଇଢ଼ାଇ (ମାଡ଼) ଠୋ ଠୋ (ହସ/କଥା), ସାଇଁ ସାଇଁ (ଗର୍ଜନ), ସୁକ୍ ସୁକ୍ (କାଂଦ/ବୋବାଇବା), ପାକୁପାକୁ (ପାଟି), ଧଡ଼ଧଡ଼ (ବୁକୁ), ଦୁରୁଦୁରୁ (ବର୍ଷା), ଠିସ୍ ଠିସ୍ (ହସ), ଭଡ଼ ଭଡ଼ (କାଂଦ) ଠୁସ୍ ଠୁସ୍ (ହସ), ଧପଧପ (ଗ୍ୱଲି) ଫିସ୍‌ଫିସ୍ (କଥା) ଇତ୍ୟାଦି । (୩) : କ୍ରିୟାବିଧିର ଅନୁକରଣ : (ନିଶବ୍ଦରେ ଘଟିତ କ୍ରିୟା, ଧ୍ୱନି କାର୍ଯ୍ୟରୀତିର ଅନୁକରଣ କରେ), ହୁତୁହୁତୁ (ନିଆଁ), ଦାଉଦାଉ (ନିଆଁ), ଟୁମାଟୁମା (ଆଖି), ଦୁକ୍ ଦୁକ୍ (ପଂଜୁରି/ଡାଳ), ମିଟିମିଟି (ଅନେଇବା), ବଲବଲ (ଗ୍ୱହିଁବା), ଗାଜୁ ଗାଜୁ (ଜନତା), ମଟମଟ (ଅନେଇବା), ଥମଥମ (ଜହ୍ନ/ଆଖି),ଇତ୍ୟାଦି । (୪) ଶାରୀରିକ ଅନୁଭୂତି ଅନୁକରଣ (ପଂଚ ଇନ୍ଦ୍ରିୟ ଦ୍ୱାରା ଅନୁଭବିତଧ୍ୱନି । ଯାହାର ଶବ୍ଦ ନାହିଁ । ଯାହାର ଭିତ୍ତି ଭାବ କୈନ୍ଦ୍ରିକ), ଧାଉଁ ଧାଉଁ (କାନ), ଗବ୍ ଗବ୍ (ଦେହ), ରାଉ ରାଉ (ଭ୍ରୂଲତା), ଝିମ୍ ଝିମ୍ (ମୁଂଡ), ସିର୍ ସିର୍ (ପାଦ), ଦାଉଁ ଦାଉଁ (ବୁକୁ), ଭାଁ ଭାଁ (କାନ) ଇତ୍ୟାଦି ।

(୫) ମାନସିକ ଅନୁଭୂତି ଅନୁକରଣ : (ମନ ଭିତରେ ଆଲୋଡ଼ନ ସୃଷ୍ଟି କରୁଥିବା ଶବ୍ଦ । ଯାହା ଧ୍ୱନି ସୃଷ୍ଟିକାରୀ ନହେଲେ ହେଁ ହୃଦୟ ସ୍ତରରେ ଅନୁଭବ କରାଯାଇଥାଏ), ଛପ୍ ଛପ୍ (ଭୟ), ଛନ ଛନ (ଦେଖାଯିବା), ଗ୍ୱଇଁ ଗ୍ୱଇଁ (ଟୋକା), ମଚମଚ (କଳା), କଟକଟ (ଶୀତ/କଳା), ଫରଫର (ଧୋବ/ଧଳା) ରଗରଗ ଇତ୍ୟାଦି ।

(୬) ଅବସ୍ଥା ଅନୁକରଣ : (ଏହାର ମଧ୍ୟ ଶ୍ରୁତିଧ୍ୱନି ନାହିଁ । ଏହା କୌଣସି ବସ୍ତୁ, ଶରୀର, ମନ ବା କ୍ରିୟାକୁ ନିର୍ଦ୍ଧେଶ କରେ), ଢ଼ଳଢ଼ଳ (ପାଣି, ଆଖି), ଠାଏ ଠାଏ (ଓଦା), କେରାକେରା (ବାଳ), ଜୁଡ୍ଡୁବୁଡ୍ଡୁ, ଜରଜର, ଝିଲଝିଲ ଆଦି ଏହି ପର୍ଯ୍ୟାୟରେ ଆଲୋଚିତ ।

ଅନୁକରଣାତ୍ମକ ଶବ୍ଦକୁ ନେଇ ଗାଳ୍ପିକ ବହୁଳ ଭାବେ ଏବଂ ବହୁଭାବେ ଗ୍ରହଣ କରିଛନ୍ତି । କେତେକ ଏ ଧରଣ ଶବ୍ଦର ପାରଂପରିକ ପ୍ରୟୋଗରୁ ଓହରିଯାଇ ନୂତନ ଭାବେ ବ୍ୟବହାର କରିଛନ୍ତି । ଯେପରି :

| ପାରଂପାରିକ ପ୍ରୟୋଗ | ନୂତନ ପ୍ରୟୋଗ |
| --- | --- |
| ଥମଥମ ମୁହଁ | ଥମ ଥମ ଜହ୍ନ |
| | ଥମ ଥମ ଆଖି |
| ଫଡ଼୍ ଫଡ଼୍ ପକ୍ଷୀ | ଫଡ଼୍ ଫଡ଼୍ ଗୋଡ଼ ହାତ |
| | ଫଡ଼୍ ଫଡ଼୍ ଆଖି |
| ଟୁକ୍ ଟୁକ୍ ଲାଲ | ଟୁକ୍ ଟୁକ୍ ହୃତପିଂଡ |
| ଠକ୍ ଠକ୍ କବାଟ | ଠକ୍ ଠକ୍ ଦେହ |
| କଟ କଟ କଳା | କଟ କଟ ଶୀତ |

ବହୁ ବୈଚିତ୍ର୍ୟପୂର୍ଣ୍ଣ ଅନୁକରଣାତ୍ମକ ଶବ୍ଦକୁ ଗାଳ୍ପିକ ତାଂକ ଗଳ୍ପରେ ପ୍ରୟୋଗ କରି ସ୍ୱତଂତ୍ର ଧରଣର ପରିଚିତି ପାଇ ପାରିଛଂତି । ଭିନ୍ନ ପରିବେଶ, ପରିସ୍ଥିତି, ସ୍ଥାନ-କାଳ-ପାତ୍ରରେ ଏ ଶବ୍ଦଗୁଡ଼ିକ ବହୁଭାବେ ବହୁତ୍ର ଆସିଛି ଯାହା ଭାଷାର ସୌନ୍ଦର୍ଯ୍ୟକୁ ବହୁଗୁଣିତ କରିଚି । ଗୋଟିଏ ବସ୍ତୁପାଇଁ ବହୁ ଧରଣର ଧ୍ୱନି ସୃଷ୍ଟିକାରୀ ବିଶେଷଣକୁ ଗାଳ୍ପିକ ବ୍ୟବହାର କରିଛନ୍ତି । ଯେପରି :ଠିସ୍ ଠିସ୍ ହସ, ଠୁସ୍ ଠୁସ୍ ହସ, ଟହ ଟହ ହସ, ସେହିଭଳି କାଂଦ ପାଇଁ ସକ୍‌ସକ୍ କାଂଦ, ଝରଝର କାଂଦ, ଭଡ଼ ଭଡ଼୍ କାଂଦ, ସୋରା ସୋରା କାଂଦ ଇତ୍ୟାଦି । ଏ ଶବ୍ଦଗୁଡ଼ିକ କର୍ମର ବିଭିନ୍ନତାକୁ ଚିତ୍ରିତ କରିବା ସହ ଅର୍ଥ ଗମ୍ଭୀର ହୋଇ ପାରିଛନ୍ତି ।

ଚନ୍ଦ୍ରଶେଖର ଗଳ୍ପ ଲେଖାର ପ୍ରାରଂଭକାଳରେ ଏହି ଧ୍ୱନ୍ୟାନୁସାରୀ ଶବ୍ଦର ବ୍ୟବହାର ବହୁଳତା ପରିଲକ୍ଷିତ ହୋଇଥିବା ବେଳେ ଉତ୍ତରକାଳରେ ତାହା ଗୋଟିଏ ସୀମିତତା ଭିତରେ ଲକ୍ଷ୍ୟ କରୁଁ । ଧ୍ୱନ୍ୟାନୁକାରୀ ଶବ୍ଦର ବାକ୍ୟିକ ପ୍ରୟୋଗରେ ଯେଉଁ ଉତ୍‌ଥାନ ପତନ ଦେଇ ଶବ୍ଦ ଗୁଡ଼ିକ ଗତି କରିଛନ୍ତି ତାହା କାବ୍ୟିକତା ସହିତ ଭାବ-ଗଭୀର ହୋଇ ପାରିଛି ।

ଗାଳ୍ପିକ ଆଉ କେତେକ ସ୍ଥଳରେ ପରିବେଶାନୁସାରେ, ପାତ୍ରାନୁସାରେ, ପ୍ରସଂଗ ଭିତ୍ତିରେ ଅନୁନାସିକ ଧ୍ୱନି ସଂଯୁକ୍ତ ସଂଳାପୋକ୍ତିରେ ବ୍ୟବହାର କରି ଚରିତ୍ର ଏବଂ କଥିତ ଭାଷାକୁ ଜୀବଂତ କରିପାରିଛଂତି । ଯେପରି : 'ମହାତ୍ମା' ଗଳ୍ପରେ ମଣିନାହାକର କୋଷ୍ଟିପାଠ ସ୍ବରୂପ ବକ୍ତବ୍ୟ : ଏଁଇଁଟଁଟାଁ ମାହାଁତ୍ମାଁ କୌଁଷ୍ଟାଁ । ବୃଷଁ ଲଁଗ୍ନଁକୁଁ ଲଁଗ୍ନେଁ ଗୁଁରୁଁ ଚଁନ୍ଦ୍ରଁ ଯୋଗଁ, ନାହିଁ ନଥିବାଁ ଯୋଗଁ-ଯେଁ କେଁଶ୍ୱରଁ ମିଶ୍ରେଁ ମାହାଁତ୍ମାଁ ହେଁ ବେଁ ।'' (ବାଘସବାର)

ଏକକ ଉଚ୍ଚାରିତ ଧ୍ୱନ୍ୟାତ୍ମକ ଶବ୍ଦ ପ୍ରୟୋଗ ଯଥା : ଥମ୍, ଲଥ୍, ଠପ୍, ଫିକ୍, ଫାଇଁ ଆଦି ଶବ୍ଦର ବହୁଳ ବ୍ୟବହାର ଗାଳ୍ପିକ ରଥଙ୍କ ଅନ୍ୟଏକ ମହତ୍ତ୍ୱପୂର୍ଣ୍ଣ ଦିଗ । ବସିବାକୁ ଲଥ୍, ଥମ୍ ଭାବେ ଏବଂ ଫାଇଁକୁ ରାଗିବା, ହସିବା ଆଦି ପ୍ରସଂଗରେ ବହୁଳଭାବେ

ବ୍ୟବହାର ଘଟାଇଛନ୍ତି । ଆଉ କେତେକ ସ୍ଥଳରେ ଅନୁକରଣାତ୍ମକ ଶବ୍ଦରେ ପ୍ରତ୍ୟୟ ସଂଯୁକ୍ତକରି ଶବ୍ଦଚୟନରେ ମାପଚୁପ୍ ହେବା ଏବଂ କଥିତଭାଷାର ବ୍ୟବହାର କରିବାର ଅଭିଳାଷ ପୋଷଣ କରଂତି । ଯେପରି : କଟକକଟିଆ (ଶୀତ), ହଜହଜିଆ (ପିଲା), ଭୁରୁଭୁରିଆ (ଦାଢ଼ି), ଚୁଲୁଚୁଲିଆ (କାମ) ସେହି ଭଳି କେତେକ ଶବ୍ଦ ।

(୪)

ଶବ୍ଦ (Word), ଶୈଳୀ-ବିଶ୍ଳେଷଣ କ୍ଷେତ୍ରରେ ଅନ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ବିଭବ । ଶୈଳୀ କ୍ଷେତ୍ରରେ 'Stylistics of the word - ଶବ୍ଦସ୍ତରୀୟ ଏକ ବିଶ୍ଳେଷଣାତ୍ମକ ପଦ୍ଧତି । ଚଂଦ୍ରଶେଖରଙ୍କ ଗଳ୍ପର ଶୈଳୀ କ୍ଷେତ୍ରରେ ଶବ୍ଦର ଯେଉଁ ବୈଚିତ୍ର୍ୟପୂର୍ଣ୍ଣ ଦିଗଟି ଲକ୍ଷ୍ୟ କରୁଁ ତାହ ହେଲା :

(୧) ଧ୍ୱନ୍ୟାନୁକାରୀ ଶବ୍ଦର ବ୍ୟବହାର (୨) ବହୁବିଧ ଓଡ଼ିଆ ଆଂଚଳିକ/ଗ୍ରାମ୍ୟ ଶବ୍ଦର ବ୍ୟବହାର (୩) ମାନକ ଓଡ଼ିଆ ସହ ଅନ୍ୟାନ୍ୟ ଶବ୍ଦର ଅପୂର୍ବ ସମନ୍ୱୟ (୪) ହିନ୍ଦୀ-ଇଂରାଜୀ ଆଦି ଭାଷାରୁ ବହୁ ଶବ୍ଦର ଆହରଣ ଏବଂ ବ୍ୟହବାର (୫) ଅପ୍ରଚଳିତ/ସ୍ୱଳ୍ପପ୍ରଚଳିତ/ନୂତନ ଶବ୍ଦର ବ୍ୟବହାର ।

ଶବ୍ଦସ୍ତରୀୟ ଆଲୋଚନା ବେଳେ ମୂଳକଥାଟି ହେଲା : 'ଶବ୍ଦ'ପ୍ରତି ସ୍ରଷ୍ଟାର ଆତ୍ମସଂପୃକ୍ତି ଏବଂ ଚୟନ କେଉଁଭଳି ? ତଥା ସେହି ଭଳି ଶବ୍ଦ ପ୍ରୟୋଗ ହେବା ପଛରେ କେଉଁଭଳି କାରଣ ଥାଇପାରେ ବା ରହିଛି । ଚଂଦ୍ରଶେଖରଙ୍କ 'ଶବ୍ଦ'ର ଦୁଇଟି ବିଶିଷ୍ଟ ହେଲା : (୧) ଭାବକୁ, ଅର୍ଥ ଗଭୀର କରିବାପାଇଁ ବିଶେଷ ଶବ୍ଦର ଚୟନ (୨) ପରିବେଶ ଅନୁକୂଳ ଶବ୍ଦର ପ୍ରୟୋଗ ।ଏଠାରେ ଶବ୍ଦ ପ୍ରୟୋଗର କେତୋଟି ଉଦାହରଣ ଦେଖାଯାଉ :

(୧) "ପିଲାଗୁଡ଼ାକ ଲଂଗଳା,ଟିମିରି ପେଟିଆ, କାଛୁଆ, ଅସନା ଭୋକିଲା ହିଂଜ ହିଂଜିଆ । ଦୁକ ଦୁକି ଫଂକୁରି, ଗାଡୁଆ ଆଖି ଗ୍ୱରିକଡ଼େ ପୁଜି ପୁଂଜି ଝାଳ । କପାଳ ବେକ ଅଠା ଅଠା ।"

(ହିସାବ ନିକାଶ, ଅଂତିମା)

(୨) "କେମିତି ଖୁଣ୍ ଖୁଣିଆ ମଣିଷଟିଏ ତମେ ହୋ ! ଆଡ଼େ ବଇଲେ ଥାଡ଼େ କାହିଁକି ବୁଝୁଚ ?" (ସଂପଦ, ବାଘସବାର)

(୩) "ସେ ଗାତପଶା, ହାଣମଂଚକ, ଅଳପେଇସା-ମୁଂଡା କାଇଁ ଆଇଥିଲାକି ?" (ମହାତ୍ମା, ବା.ସ.)

ଉକ୍ତ ତିନୋଟି ଯାକ ଉଦାହରଣରେ ଆମେ ଗ୍ରାମ୍ୟ/ଆଂଚଳିକ ଶବ୍ଦର ପ୍ରୟୋଗ ଲକ୍ଷ୍ୟକରୁଁ ।ଯେଉଁ ଶବ୍ଦ, ପ୍ରସଂଗକୁ ଏବଂ ବକ୍ତବ୍ୟକୁ ବିଶିଷ୍ଟତା ପ୍ରଦାନ କରୁଚି ।ପାତ୍ରପତ୍ରା

ଗାଁର ପିଲାଂକ ବର୍ଣନାରେ ବ୍ୟବହୃତ ଶବ୍ଦ ହେଉ ବା ଜିଦ୍‌ବାଜୁଥିବା ବୃଦ୍ଧଂକ ପାଇଁ ବୃଦ୍ଧାଂକ ବକ୍ତବ୍ୟ ହେଉ ଅଥବା - ଚଂପା ଧୋବଣୀର ସ୍ୱତଃସ୍ଫୂର୍ତ୍ତ ବାକ୍ୟାଳାପ ହେଉ ଆମେ ସବୁଠି ଲକ୍ଷ୍ୟ କରିବା ତାହା ଚରିତ୍ର, ପରିବେଶ ତଥା ପରିସ୍ଥିତି ବର୍ଣନା ଦୃଷ୍ଟିରୁ ଅର୍ଥ ଗଭୀର ହୋଇ ପାରିଚି । ଚଂଦ୍ରଶେଖରଂକ ଗଳ୍ପର ଗୋଟିଏ ବିଶେଷ ବୈଶିଷ୍ଟ୍ୟ ହେଉଛି, ଗ୍ରାମ୍ୟ/ଆଂଚଳିକ ଭାଷା ପ୍ରତି ସେ ଅତୀବ ଉତ୍ସାହିତ ଏବଂ ଆକର୍ଷିତ । ତାଂକ ଗଳ୍ପର ପରିମଂଡଳ ବହୁ ଗ୍ରାମୀଣ ଶବ୍ଦର ବୈଚିତ୍ର୍ୟପୂର୍ଣ୍ଣ ଭଂଡାର । ଏଠାରେ ସେଇ ଭଳି କେତେକ ଶବ୍ଦର ଉଲ୍ଲେଖ କରାଗଲା, ଯେଉଁ ଗୁଡ଼ିକୁ ସେ ଗଳ୍ପରେ ବହୁତ୍ର ବ୍ୟବହାର କରିଛଂତି : ଭକୁଆ, ଅର୍ଘା, ଦୁମୁକାଣି, ମାଇପ, ମାଇକିନିଆ, ଅଂଡିରା, ଭେଂଡିଆ, ଆବାକାବା, ମୁଠୁଣିଏ, ତିର୍ଲା, ଅଳଂଭୁଷା, ରୁଢ଼ିଆ, ହିଜଂହିଂଜିଆ, ହଗୁରା, କାଛୁଆ, ତହରା, ଧୋକଡ଼ା, ବୁଡ଼ବକ, ମୁଷ୍ଟୁଁଡେଇ, ଘାଂଟରା, ଖୁରମୁସିଆ, ନିର୍ଘାତ, ଯାଜ୍ଞ, ଅଳପେଇସା, ଋଇଜଳା, ହଟୁଣ୍ଡ୍ର, ବେଧ, ବଜ୍ଜାତ୍, ଚିତମାତ୍, ଭାତୁଆ, ଅମରଦ ଇତ୍ୟାଦି ବହୁଶବ୍ଦ । ଏ ଶବ୍ଦର ମୂଳକୁ ଯିବାପାଇଁ ଅନ୍ୟ ଗବେଷଣା ଆବଶ୍ୟକ । ମାତ୍ର ଏଶବ୍ଦ ଭିତରେ 'ପୁରୀବୋଲି' ଏବଂ 'ପଶ୍ଚିମାଂଚଳୀୟ ଭାଷା'ର ରହିଚି ବିଶେଷ ପ୍ରଭାବ ।

ଚଂଦ୍ରଶେଖରଂକ ଗଳ୍ପରେ ହିନ୍ଦୀ, ଇଂରାଜୀ, ବଂଗଳା ଆଦି ଭାଷାର ପ୍ରୟୋଗକୁ ଲକ୍ଷ୍ୟ କରାଯାଇପାରେ । ଓଡ଼ିଆ ଗଳ୍ପ ଭିତରେ ହିନ୍ଦୀର ବହୁଳ ବ୍ୟବହାର କରିଥିଲେ ହେଁ କେବେବି ତାହା ଅପ୍ରାସଂଗିକ ତଥା ବିରକ୍ତି ପର୍ଯ୍ୟାୟକୁ ଆସିନାହିଁ । ଏହି ସମୟରେ ଅନ୍ୟାନ୍ୟ ଗାଳ୍ପିକଂକ ଗଳ୍ପରେ ଏଭଳି ପ୍ରୟୋଗ ଦୁର୍ଲଭ ନହେଲେ ହେଁ ଚଂଦ୍ରଶେଖରଂକ ଭଳି ବହୁଳ ପ୍ରୟୋଗ ଦୁର୍ଲଭ । ଗାଳ୍ପିକ ସେଇଠି ହିନ୍ଦୀର ପ୍ରୟୋଗ କରିଛଂତି, ଯେଉଁଠି ସେ କଥାଟିକୁ ମହତ୍ତ୍ୱପୂର୍ଣ୍ଣ ତଥା ଓଜନ୍‌ଦାର କରିବାକୁ ଇଚ୍ଛା ରଖଂତି । ତଥା ଯେଉଁଠି ସେ ଅନୁଭବ କରଂତି ତା'ର ଓଡ଼ିଆ ରୂପ ଦ୍ୱାରା ତାହା ସେତିକି ଆକର୍ଷଣୀୟ ହୋଇ ପାରିନଥାଂତା ସେଇଠି ସେ ହିନ୍ଦୀ ଶବ୍ଦର ବିଶେଷ ପ୍ରୟୋଜନିୟତାକୁ ଅନୁଭବ କରିଛଂତି । ଯେପରି : ଅରେ ନହିଁ ଭାଇ, ମୈଁତୋ ୟୁଁହି ପୁଛ୍‌ଦିଆ । ଔର ଶୁନ୍, କିସ୍‌କୋ କହନା ନାହିଁ । ମୈଁ କଲ ଜରା ବାହାର ଜା ରହାହୁଁ । ଦଶ-ବିଶ୍ ଦିନ୍ ଲଗ୍ ଜାଏଗା । ତୁମ ସୁବହ ଆଠବଜେ ଜରୁର୍ ଆନା । ମୁଝେ ସିଅଫ ନହିଁ କରେଗା'' ? — (ଆଜରଜନୀ ମଧ୍ୟଗତେ, ଅଂତିମା) ଏ ବକ୍ତବ୍ୟଟି ଜଣେ ହିଂଦୀ ଭାଷୀ ବ୍ୟକ୍ତିର । ଏଠାରେ ଚ୍ୱରିତ୍ରିକ ପ୍ରୟୋଜନିୟତାରୁ ହୁଏତ ହିଂନ୍ଦୀର ଆବଶ୍ୟକତା ରହିଛି, ମାତ୍ର ଚଂନ୍ଦ୍ରଶେଖରଂକ ଗଳ୍ପର ଛତ୍ରେ ଛତ୍ରେ ଆମେ ଓଡ଼ିଆ ସହ ହିନ୍ଦୀ ଏବଂ ଅନ୍ୟ ସୂତ୍ରରେ ହିନ୍ଦୀକୁ ଆସିଥିବା ଶବ୍ଦ (ଉର୍ଦ୍ଦୁ, ଆରବିକ, ଫାର୍ସି ଆଦି) ଲକ୍ଷ୍ୟ କରୁଁ ଯେପରି : ନୌକର ଟୋକା, ନିମକହରାମ ଶଳା, ଏଇଠି କିମା କରି ଦେବି, ଶାଲା ଦେଖାଯାଏ ଗା, ବଗୁଲିଆ ଛୋକ୍‌ରା, ଶଳାକୁ ଖୁନ୍ କରିଦେବି, ଶାଲା

ବେଇମାନ ମାଇଗୁଲିଆ, ଖତମ୍ କରିଦେବି, ସୁଅର କା ବଗ୍ଗ, ବେକୁବ୍‌କାହାଁକା, ଇତ୍ୟାଦି । ଏତଦ୍ ଭିନ୍ନ ଗାଳ୍ପିକ କେତେକ ବିଶେଷ ଶବ୍ଦକୁ ଗଳ୍ପରେ ପ୍ରୟୋଗ କରଂତି : ଇଜ୍ଜତ, ସରାବ୍, ପରଓ୍ୱାନା, ଲାଓ୍ୱାରିସ୍, କିସ୍‌ମତ୍, ମୁର୍ଦ୍ଦାର, ହାରାମଜାଦା, ଜୁରୁରତ, ଜହନ୍ନୁମ, ମତଲବ, ଖୈର, ମେହେମାନ, ମୋଲାଏମ୍, ସମଝ, ଗଦ୍‌ଦାର, ହାରାମି, ଖାନ୍‌ଦାନ୍, ଖତରନାକ୍ ଇତ୍ୟାଦି । ଏଠାରେ ପ୍ରଶ୍ନ ଉଠିପାରେ : ଏଭଳି ଅନେକ ଶବ୍ଦର ପ୍ରୟୋଗ ସଂପ୍ରତି ଓଡ଼ିଆରେ ବହୁ କଥାକାରଂକ ଗଳ୍ପ-ଭାଷାରେ ବ୍ୟବହୃତ ହେଉଛି । ମାତ୍ର ଏକଥାଟି ଚନ୍ଦ୍ରଶେଖରଙ୍କ ଠାରେ ଲାଗୁ ହୁଏ ନାହିଁ । ଗାଳ୍ପିକଂକ ଏଥିପ୍ରତି ରହିଛି ସ୍ୱତଂତ୍ର ଅଂଗୀକାର । ଯାହା ଭାବ ଏବଂ ଭାଷାକୁ ଗୁରୁଗଂଭୀର କରିଚି । ଆବେଦନଧର୍ମୀ କରିଚି ।

ଇଂରାଜୀ ଶବ୍ଦର ବ୍ୟବହାର ଗଳ୍ପରେ ଏକ ସାଧାରଣ ବ୍ୟାପାର । ପ୍ରାତ୍ୟହିକ ଜୀବନରେ ଆମର ଶିକ୍ଷା-ପରିବେଶ-ପରିସର-ପରିସ୍ଥିତି ଦୃଷ୍ଟିରୁ ମଣିଷ ବହୁ ଇଂରାଜୀ ଶବ୍ଦର ବ୍ୟବହାର କରିଥାଏ । ସେ ଧରଣର ପ୍ରୟୋଗ ଲେଖକର ବୈଶିଷ୍ଟ୍ୟ ନୁହେଁ । ଚଂଦ୍ରଶେଖରଂକ ଗଳ୍ପରେ ବହୁସମୟରେ ଇଂରେଜୀର ପ୍ରୟୋଗ ଦେଖାଯାଏ ତହା ପୂର୍ଣତଃ ପରିବେଶଗତ । ମାତ୍ର ଏହାର ବହୁଳ ବ୍ୟବହାର ତାଙ୍କର ଅନ୍ୟତମ ଶୈଳ୍ପିକ ବୈଶିଷ୍ଟ୍ୟ । ବ୍ୟକ୍ତିର ପେଷା ଦୃଷ୍ଟିରୁ ତାଂକ ଚରିତ୍ରମାନେ ଇଂରେଜୀ କହଂତି । ତଥା ଚରିତ୍ର କାହାକୁ ଗାଳି ଦେଲା ବେଳେ ଇଂରାଜୀ ସହ ହିନ୍ଦୀର ପ୍ରୟୋଗ କରଂତି । (ବର୍ଷକ ଏକ ଋତୁକ ତିନିଦିନ' (ସବୁଠାରୁ ଦୀର୍ଘରାତି), 'ଯଦି ସେ ଈଶ୍ୱର ନୁହେଁ' (ବାଘସବାର), 'ଲୁଚକାଳି-ଏକ ପିଲାଖେଳ' (ଅଂତିମା) ଇତ୍ୟାଦି ଗଳ୍ପରେ ଆମେ ଇଂରାଜୀର ବିଶିଷ୍ଟ ପ୍ରୟୋଗକୁ ଅନୁଧ୍ୟାନ କରିପାରିବା ।

ବହୁ ଗାଳ୍ପିକଂକ ଥାଏ କେତେକ ପ୍ରିୟଶବ୍ଦ । ସେହି ପ୍ରିୟ ଶବ୍ଦ ସେଥିପାଇଁ ସେମାନଙ୍କ ସୃଜନଶିଳତା ଉପରେ ବାରଂବାର ସବାର ହୋଇପଡ଼େ । ବିଶେଷ ଆକର୍ଷଣ ଏବଂ ସେହି ଶବ୍ଦପ୍ରତି ବିଶେଷ ଉତ୍ସୁକତାରୁ ତାହା ବାରବାର ବ୍ୟବହୃତ ହୋଇଯାଏ ସ୍ୱତଃସ୍ଫୁର୍ତ୍ତ ଭାବେ । ଗାଳ୍ପିକ ଚଂଦ୍ରଶେଖରଂକ ଏହିଭଳି କେତୋଟି ଅତିପ୍ରିୟ ଶବ୍ଦହେଲା : 'ବେକୁବ୍', ନାଲାଏକ୍, ସୁଅରକାବଗ୍ଗ, 'ରାଉରାଉ', 'ଶାଲା' ଇତ୍ୟାଦି । ଏପ୍ରସଂଗରେ ଆଉ ଗୋଟିଏ କଥା ଉଲ୍ଲେଖ କରାଯାଇପାରେ, ଗାଳ୍ପିକଂକ ପ୍ରିୟଶବ୍ଦରୁ ବେଶୀ ହେଉଚି ହିନ୍ଦୀ ଶବ୍ଦ । ଯାହା ତାଂକ ଗଳ୍ପରେ ବାରଂବାର ବ୍ୟବହୃତ ହୋଇଛି ।

ଗାଳ୍ପିକ ଉପଯୁକ୍ତ ଶବ୍ଦ ପ୍ରୟୋଗ ପାଇଁ ସଚେତନ । ତାଂକଠାରେ ଆମେ ନିହାତି ଗାଉଁଲିଶବ୍ଦ ସହ ତତ୍‌ସମ ବହୁଳ ଶବ୍ଦ ମଧ୍ୟ ପାଉଁ । ପୁନଶ୍ଚ କେତେକ କ୍ଷେତ୍ରରେ ଅପ୍ରଚଳିତ ତଥା ସ୍ୱଳ୍ପ ପରିଚିତ ଶବ୍ଦର ବ୍ୟବହାର ମଧ୍ୟ ଦେଖୁଁ । ଯେଉଁ ଶବ୍ଦ ଗୁଡ଼ିକର ପ୍ରୟୋଗ ଅନ୍ୟମାନେ କରଂତି ନାହିଁ । ସେ ଶବ୍ଦ ଗୁଡ଼ିକୁ ହୁଏତ 'ନିଭାଷା' ବା ବ୍ୟକ୍ତିବୋଲି

ଅଂତର୍ଗତ ମଧ୍ୟ କରାଯାଇପାରେ । ଯେପରି : ଅଳଂଭୁଷା (ଏଇ ଆତୁତିନିଟା ଘରଛାଡ଼ି ଗୋଟାଏ ଅଳଂଭୁଷା ନଅତାଲା କୋଠା-ସେ ତୁମେ ମା'ପରା,' ସବୁଠାରୁ ଦୀର୍ଘରାତି), 'ଅସ୍କରା' (ସେ ଛୋଟ ଜିନିଷଟି ବର୍ତମାନ ଲେଂବୁଗ୍ରେପା, କୋବିଡାଂଗ, ମାଛକଂଟାର ଅସ୍କରା ଗଦାକୁ ଗ୍ୱଲିଗଲା, (ଯା'..ତତେ ମାପ୍‌କଲି, ବାଘସବାର), ବେଂକେରୋଟ' (ଏତିକି ଟିକିଏ ବେଂକେରୋଟ ରୋଗିଣା ମାଇକିନା, 'ସମର', ବା.ସ.) ହଟୁଣୁ (ଖେଳନା ଦେଲେ, ସେଟୋକୋ ସେ ସବୁକୁ ଖାତିର କରୁନାହିଁ । ସେ ତାକୁ ହିଁ ହଟୁଣୁ ଯାଇ ଭାଂଗୁଚି, ଯା.... ତତେ ମାଫ୍ କଲି, ବା.ସ), କାଉଁକାଉଁଆ (ସବୁ ସେମିତି ସ୍ତବ୍ଧ କାଉଁ କାଉଁଆ, !, 'ମୁଁ ସିନାଚିର ଅପରାଧୀ, ବା.ସ) ଇତ୍ୟାଦି ଶବ୍ଦକୁ ଏହି ପର୍ଯ୍ୟାୟରେ ରଖାଯାଇପାରେ ।

ଗଳ୍ପ ସୃଜନ ଏକ ସ୍ୱତନ୍ତ୍ର କଳା । ଯେଉଁଠି ଅନେକ ସମୟରେ କଥିତ ଭାଷାର ଯଥାଯଥତା ଯୋଗୁଁ ବ୍ୟାକରଣ ସୂତ୍ର ମୂଲ୍ୟହୀନ ହୋଇ ଉଠେ । ଗଳ୍ପ-ସୌନ୍ଦର୍ଯ୍ୟକୁ ଭାବତରଳ ଆବେଗ ପୂର୍ଣ୍ଣ କରିବାପାଇଁ ଗାଳ୍ପିକ ପ୍ରୟାସ କରି ଯେଉଁ ଭାଷାବିନ୍ୟାସ କରେ ତାହା ବେଳେବେଳେ ଅସଂଗତି ସୃଷ୍ଟି କରିଛି । ଗାଳ୍ପିକ ଅନେକତ୍ର 'ଗୁଡ଼ାଏ ଅତର୍କ୍କା', 'ଗୁଡ଼ାଏନିଆଁ', 'ଗୋଛାଏ ବିଜୁଳି', ଅଯୋଗ୍ୟ ନାଲାଏକ, ମାଇରେଳ' ଭଳି ଶବ୍ଦର ପ୍ରୟୋଗ ଘଟାଇ ଛଂତି । ଗୋଟିଏ ଉଦାହରଣ ଏଠାରେ ଦିଆଯାଇପାରେ : "ମାଇରେଳଟିଏ ବହୁଦୂରରୁ ଡାକିଲା ଷ୍ଟେସନ ଆର ପାଖରୁ" (ପାତକ, ବା.ସ.) -ଏହି ବାକ୍ୟାଂଶଟି ଗୋଟିଏ ରୂପକଳ୍ପ ସୃଷ୍ଟି କରିବା ସହ ଦୃଶ୍ୟମାନ ହୋଇ ଯାଉଥିଲେ ହେଁ ଏ ନୂଆ ଶବ୍ଦଗଠନ ଓ ପ୍ରୟୋଗ ମଧ୍ୟରେ ଭାବ-ସଂଗତି ଓ ଅର୍ଥସଂଚରଣ ଯଥାଯଥ ହୋଇ ପାରିନି । ସେହିଭଳି 'ଗୁଡ଼ାଏ' ଯୋଡ଼ି ହୋଇଥିବା ଶବ୍ଦର ଉଦାହରଣ ।

ଗାଳ୍ପିକ କେତେକ କ୍ଷେତ୍ରରେ 'ହଳଂତ୍'( ୍ ) ଲଗାଇ ଦେଇ କେତେକ ଶବ୍ଦର ଉଚ୍ଚାରିତ ଧ୍ୱନିକୁ ଆହୁରି ତୀବ୍ରତର କରି ବ୍ୟବହାର କରିଛଂତି । ତାହା ତାଂକ ଗଳ୍ପର ଶବ୍ଦସ୍ତରୀୟ ଶୈଳୀର ଅନ୍ୟତମ ସ୍ୱାତଂତ୍ର୍ୟ । ଯେପରି : ଆବ୍‌ବେ, ଯାବ୍‌ବେ , ଆଚଛା, ହେମ୍‌ତି ଇତ୍ୟାଦି ଶବ୍ଦ ।

(୫)

କବିତା ଯେମିତି ପଂକ୍ତିବଦ୍ଧ ଗଳ୍ପ ସେମିତି ବାକ୍ୟବଦ୍ଧ । ବକ୍ତବ୍ୟର ପୂର୍ଣ୍ଣାଂଗ ଏକକହିଁ ବାକ୍ୟ । ଅର୍ଥସ୍ତରୀୟ ଆଲୋଚନା ପାଇଁ ବାକ୍ୟର ବିଶ୍ଳେଷଣ କରିବାର ଆବଶ୍ୟକତା ରହିଚି । ଶୈଳୀ ଆଲୋଚନା ବେଳେ ବାକ୍ୟ ସ୍ତରୀୟ ଆଲୋଚନା ଏକ ମହତ୍ୱପୂର୍ଣ୍ଣ ଭାଗ ।

ଶୈଳୀ ସେଇଠାରେ ହିଁ ଆଲୋଚ୍ୟ ବିଷୟ ଯେଉଁଠି କୌଣସି ବୈକଲ୍ୟ ରହିଥାଏ । 'ଯାହା ଯେମିତି' ଶୈଳୀର ଭିତ୍ତି ନୁହେଁ ଅପରଂତୁ 'ଯାହା ଅଲଗା'' ତାହାହିଁ ଶୈଳୀ ତାତ୍ତ୍ୱିକ ଆଲୋଚନାର ମୌଳିକ ଭିତ୍ତି । ଅର୍ଥସ୍ତରୀୟ- ଆଲୋଚନା ବେଳେ ବାକ୍ୟର କର୍ତା-କର୍ମ-କ୍ରିୟା ଆଦିର ବୈକଲ୍ୟ ତଥା ଉପବାକ୍ୟ, ବିଶେଷଣ, ଉପସର୍ଗ ଆଦିର ପ୍ରୟୋଗରେ ଭିନ୍ନତାକୁ ଆଲୋଚନା ଅତଂର୍ଗତ କରାଯାଏ ।

ଗାଳ୍ପିକ ରଥଙ୍କ ବାକ୍ୟବିନ୍ୟାସରେ 'ଅଲଗା' ଭାବଟି ପ୍ରଭାହୀନ । ବହୁବିଧ ଶବ୍ଦ, ଭାଷାଗ୍ରହୁରୀ ତାଂକ ଗଳ୍ପର ମୂଳ ଭାବ-ସୌଂଦର୍ଯ ହୋଇଥିବା ସ୍ଥଳେ ବାକ୍ୟବିନ୍ୟାସଟି ଅନେକତ୍ର ବ୍ୟାକରଣୀୟ ନିୟମାନୁସାରୀ । ସ୍ୱଳ୍ପ ପରିମାଣର ବାକ୍ୟ ତାଂକ ଶୈଳୀ ଆଲୋଚନା ଅଂତର୍ଗତ ହୋଇପାରେ ।

(୧) ''ପଶ୍ଚିମରୁ ଖରାପଡ଼ି ଦିଶୁ ଅନ୍ୟ ପ୍ରକାର ଅଚିହ୍ନା !'' (ସଂପଦ ବା.ସ)

(୨) ''ମାନୁବାବୁ ବେଶ୍ ପ୍ରତିଷ୍ଠିତ ଲୋକ ଧନରେ, ମାନରେ କୁଳମର୍ଯ୍ୟଦାରେ'' (ଯଦି ସେ ଈଶ୍ୱର ନୁହଁ, ବା.ସ.)

ବାକ୍ୟସ୍ତରରେ ଆମେ କର୍ତା-କର୍ମ-କ୍ରିୟାର ଯେଉଁ ସ୍ଥାନାଂତରଣ ଦେଖୁଁ ତାହା ଗଳ୍ପର କଥନ ଶୈଳୀ ଯୋଗୁଁ ଘଟିତ । ବ୍ୟାକରଣ ବିଘ୍ନିତ ହେଲେହେଁ ଆମକୁ ଭାବଟି ଅବୁଝା ରହେ ନାହିଁ । ଅନ୍ୟ ଦିଗରୁ ବାକ୍ୟାଂଶରେ ଗଳ୍ପ ମୟତାର ଆଭାସ ଆସେ ।

ଚନ୍ଦ୍ରଶେଖର ଦୀର୍ଘବାକ୍ୟ ବେଶୀ ଲେଖଂତି ନାହିଁ । ଅନେକତ୍ର 'ବିରାମ ଚିହ୍ନ' (Punctuation) ର ବହୁଳତା ପରିଲକ୍ଷିତ । ନାଟକୀୟ ସଂଳାପଧର୍ମୀ ବାକ୍ୟ ସଂଯୋଜନ ଗଳ୍ପ ଗୁଡ଼ିକର କଥନକୁ ବିକାଶ କରାଇଚି । ପୁନଶ୍ଚ କୌତୂହଳପୂର୍ଣ୍ଣ ଆଉ ଲଘୁ ଚଟୁଳଧର୍ମୀ । ବେଳେବେଳେ ପ୍ରଶ୍ନାତ୍ମକ, ସଂଶୟଗ୍ରସ୍ତ ବାକ୍ୟର ସଂଯୋଜନାକୁ ଉପଲବ୍ଧି କରିହୁଏ । ବ୍ୟଂଜନା ଠାରୁ ସାଧାରଣ ଆକ୍ଷେପୋକ୍ତିଟି ବେଶୀ ତଥା ଅନେକତ୍ର ବାକ୍ୟଗୁଡ଼ିକ ଉତ୍କଂଠାପୂର୍ଣ୍ଣ, କାବ୍ୟାତ୍ମିକ ଆଉ ଆବେଗପ୍ରବଣ ।

(୬)

ଗଳ୍ପ ସୃଜନ ପାଇଁ ଭାଷା ଏକ ଅପରିହାର୍ଯ୍ୟ ଅଂଗହୋଇ ଆସେ । ଶୈଳୀ ଆଲୋଚନା ବେଳେ ଯାହାର ଆଲୋଚନା ଅତ୍ୟଂତ ଗୁରୁତ୍ୱପୂର୍ଣ୍ଣ ବିଷୟ ଅଟେ । ଗାଳ୍ପିକ ଚଂଦ୍ରଶେଖର ରଥଙ୍କ ଭାଷାର ଶୈଳୀ ଆଲୋଚନା ବେଳେ ଆମେ ଯେଉଁ କେତୋଟି ବିଷୟ ଲକ୍ଷ୍ୟ କରୁଁ ତାହା ହେଲା : (୧) କଥିତ ଭାଷାର ବିପୁଳ ବ୍ୟବହାର । (୨) ହିନ୍ଦୀ ଭାଷାର ବହୁଳ ସମାବେଶ । (୩) ଆବଶ୍ୟକତାନୁସାରେ ଇଂରାଜୀ ଏବଂ କେତେକ ସ୍ଥଳରେ ବଂଗଳା, ଭୋଜପୁରୀ ଭାଷା ଆଦିର ପ୍ରୟୋଗ । (୪) ଭାଷାର ଆଗିଂକଟି ଅନେକ କ୍ଷେତ୍ରରେ ସଂଳାପଧର୍ମୀ, ତଥା ଦର୍ଶନାତ୍ମକ ସହ କଥନଧର୍ମୀ ହୋଇଚି ।

କଥିତ ଓଡ଼ିଆ ଭାଷା ଚନ୍ଦ୍ରଶେଖରଙ୍କ ଗଳ୍ପର ମୌଳିକ ପ୍ରାଣ । ଯାହା ତାଙ୍କୁ ଅଲଗାକରି ଚିହ୍ନାଇଚି । ଯେଉଁଠି ଗାଳ୍ପିକଙ୍କ ଭାଷା ନିର୍ବାଚନ (Choice of Language) ଟି ଅତ୍ୟଂତ ଗୁରୁତ୍ୱପୂର୍ଣ୍ଣ । ତାହା କେତେବେଳେ ବର୍ଣନା ଭିତରେତ କେତେବେଳେ ବ୍ୟକ୍ତିର ସଂଳାପର ପରିଧିକୁ ବର୍ଣ୍ଣିଳ ଏବଂ ସୌନ୍ଦର୍ଯ୍ୟମଂଡିତ କରିଚି । ଉଦାହରଣ :

(୧) ''ସେ ବୁଲିପଶା ଜାରଜ ଟୋକାଂକ କଥାରେ ପଡ଼ି ଆମେ କାଇଁ ଆମ ବେଉସା ବୁଡ଼େଇବୁ ବା ? ଯାଉନ ! ଛୁରୀ କାଢ଼ି ଡରାଣ ଦେଖଉଚି ଡହରା; କେଡ଼େ ବହପ । କାଇଁ ଦେଖି, କେମିତି ଛୁରୀ ଚଳେଇବୁ । ଶାବଳା ଶୁଖୁଆପରି ତତେ ଠିଆ ପନିକିରେ ଦିଂଗଡ଼ କରିଦେବି ନାହିଁ ଯଦି, ମୁଁ କି ଚଂପା ? —ଗ୍ୱଲିବଟି, ଉଠ'' । ମହାତ୍ମା, ନାଁ ତା ମୁହଁରେ ନିଆଁ - ପାରିକୁଦ ଥାକରୁ ଚିକ୍‌କଣ ଖଇଂଗାର ପେଟି କାଢ଼ି ଭାଜିଚି । ଖାଇଦେଇ ଶୋଇବ ଗ୍ୱଲ । ରଇଜଲେ କାଲିକି ଆସିଲେ ମୁଁ ତାଂକୁ ଦଉଚି ଭଲ କରି ପାନେ ।'' ('ମହାତ୍ମା', ବା.ସ)

(୨) ''କ୍ୟେ, ବେଂଗ ବାବୁ ! ଆଇଲ କ୍ୟେ ! ଇସ୍, ତେମ୍ନେ ଏକ୍‌କା କପାଳିଆ ହେ ! ପଇସା, ଯ୍ୟାପ କମ୍ନେଇବ, ଯେ କାଇଁରେ କଣ - ଜଂଜାଳ କଇଲେ ଶୂନ୍ୟ ! - ଆମେ, ଦେଖୁନ କେମିତି ଘାଂଟି ହଉଚୁ । ହଉ, ଏବେ କ୍ୟଣ ପେଇଁ ଅଇଲ ହେ ? ଏତେ ଭାବନା-ଫାବନା କିସ୍‌ସ କରୁଚ ନା ?- କହି ପକହେ ।'' ('ଏତେପାଖରେ ସମୁଦ୍ର', ଏତେପାଖରେ ସମୁଦ୍ର)

(୩) ''ଶଳା ଶୁଅରକା ବଚ୍ଚା, ଶଳା ରାସ୍କେଲ ବେହିଆ, ଭାଡୁଆ, ଅମରଦ-ଶଳା-ତୋ ମୁହଁରେ ଲାତ'' । (ବିଯୋଡ଼ପକ୍ଷୀ, ସହଯାତ୍ରିକ) ଗଳ୍ପରେ ଚରିତ୍ର ଗ୍ରାମୀଣ ହେଉ ବା ସହରୀ ହେଉ, ଯେଉଁଠି ଆବଶ୍ୟକତା ଆସିଚି ସେମାନେ କଥିତ ଓଡ଼ିଆ ଭାଷାହିଁ ବ୍ୟବହାର କରଂତି । କଥିତ ଓଡ଼ିଆ ଭିତରେ ଆମେ ପଶ୍ଚିମାଂଚଳୀୟ ଭାଷା, ପୁରୀବୋଲି, ବାଲେଶ୍ୱରୀ, ବ୍ରହ୍ମପୁରୀ ଆଦି ଭାଷାରୂପର ପରିଚୟ ପାଉଁ । ବାଲେଶ୍ୱରୀ, ବ୍ରହ୍ମପୁରୀ ଅପେକ୍ଷା, ଅନ୍ୟଦ୍ୱୟ ଭାଷାର ବ୍ୟବହାର ଅଧିକ ରହିଚି । 'ଚିରକାଳ ଅନ୍ୟଭୂମିକାରେ' (ଏତେପାଖରେ ସମୁଦ୍ର) ଗଳ୍ପରେ ବଇଚନି, ବୁଲୁଚନି ଏବଂ ଏଇନା, ଆଦି ଶବ୍ଦର ପ୍ରୟୋଗରେ ବାଲେଶ୍ୱରୀ ଭାଷାର ଆଭାସ ଆସୁଥିବା ସ୍ଥଳେ ପୂର୍ବ ଉଦାହରଣ (ବିଯୋଡ଼ପକ୍ଷୀ ଗଳ୍ପ)ରେ ଦକ୍ଷିଣୀଓଡ଼ିଆର କଥିତ ରୂପକୁ ସ୍ମରଣ କରାଯାଇପାରେ ।

ଚଂଦ୍ରଶେଖରଂକ ଗଳ୍ପରେ, ମାନକ ଓଡ଼ିଆ ପାଖେ ପାଖେ ଯୋଡ଼ି ହୋଇ ରହିଥାଏ କଥିତ ଶବ୍ଦ । ତାଂକ ଗଳ୍ପର ଭାଷା ଉପରେ ଏହି ଭଳି କୁହାଯାଇପାରେ ଯେ, ଚରିତ୍ରର ଜୀବଂତ ରୋପଣ ପାଇଁ ସେ କଥିତ ଭାଷାକୁ ତାଂକ ଗଳ୍ପର ପ୍ରମୁଖ କଳାଭାବେ ଗ୍ରହଣ କରଂତି ଯାହାତାଂକ ଗଳ୍ପରେ ଭାଷାର ଶୈଳୀ । 'ଏ ଓଲା ଗ୍ୱଲୁଣି ମୁହାଁ କଣା ଶଳା

ହାତରେ ଖଡ଼ା ସିଝିବ ନାହିଁ (ମୁଁ ସିନାଚିର ଅପରାଧୀ, ବା.ସ) 'ଶାଲା, ବେକୁବ୍ କାହାଁକା ! ହସୁଛୁ କ'ଣ ବେ ? ମୋ ସୁକୁଟ ଦେଖି ହସୁଛୁ' (ଏଇବୋଧେ ଶେଷ ଦୁଃଖ, ସବୁଠାରୁ-ଦୀର୍ଘରାତି),'ଏମିତି ମାଇଁକ ଭଳି କ'ଣ ରୁକ୍ଷିବମ ? ଗ୍ରେପ୍‌ବେ,ପରଫେସର ଶଳା, ଛେରୁଆ' (ବିଯୋଡ଼ ପକ୍ଷୀ, ସହଯାତ୍ରିକ), 'ଶଳା ହଗୁରା ଛେରକୁରା' (ସମ୍ରାଟ, ସମ୍ରାଟ ଓ ଅନ୍ୟମାନେ), ଇଲୋବୋପାଲୋ' (ହିସାବ ନିକାଶ, ଅଂତିମା), 'ବାପି ଏବେ ଭାରି ହଜହଜିଆ ଘାଂଟରା ହୋଇଛି' (ଯା... ତତେ ମାଫ କଲି, ବାଘସବାର) 'ବଜାତ ମାଇକିନିଆ'- ଏହି ଭଳି ବାକ୍ୟାଂଶ ଗଳ୍ପର ଛତ୍ରେ ଛତ୍ରେ ଯେଉଁଠି ଆଖିପଡ଼ିଯାଏ ସେଇଠି ମିଳିଯାଏ । ଗ୍ରାମ୍ୟ ଭାଷା ପ୍ରତି ଦୁର୍ବଳତା ଏବଂ ବକ୍ତବ୍ୟକୁ ଅଧିକ ପ୍ରଭାବଶାଳୀ କରିବାରେ ଏହା ସର୍ବଦା କାର୍ଯ୍ୟକାରୀ ହୋଇ ପାରିଛି ।

ମାନକ ଭାଷା ରୂପକୁ କଥିତ ଭାଷାର ରୂପ ଦେବାପାଇଁ ଚଂନ୍ଦ୍ରଶେଖର ତାଂକ ଗଳ୍ପରେ କେତେକ ପରିବର୍ତନ ଅନେକତ୍ର କରିଛଂତି । ଯେପରି 'କରିଛି' ସ୍ଥାନରେ କରିଚି' ଇତ୍ୟାଦି । ଏହିଭଳି ଶବ୍ଦର ତାଲିକା ନିଷ୍ପ୍ରୟୋଜନ କାରଣ ଏହାର ସଂଖ୍ୟା ପ୍ରଚୁର । ତଥାପି - ଏଠାରେ ସେହିଭଳି କେତେକ ଶବ୍ଦର ଉଦାହରଣ ଦିଆଗଲା ।

| ମାନକ ଓଡ଼ିଆ | କଥିତ ଓଡ଼ିଆ (ଗାଳ୍ପିକଂକ ବ୍ୟବହୃତ) |
|---|---|
| ହେବ | ହବ |
| ଠାରେ | ଠେଇଁ |
| ନାହିଁ | ନାଇଁ |
| ଠାରୁ | ଠଉଁ |
| ଉଚ୍ଚ | ଉଂଚ |
| କୋଣ | କୁଣ |
| କାହିଁକି | କାଇଁକି |
| ଦିଶୁଛି | ଦିଶୁଚି |
| ମଂତ୍ରି | ମଁତିରି |

ଏତଦ୍‌ଭିନ୍ନ କଥିତ : କିଓ, ହଇଓ, ହେ୍ୟା, ହଅ, ଧୁତ୍, ଧେତ୍ତେରି ଭଳି ଦୈନଂଦିନ ବ୍ୟବହୃତ ଭାଷାର କଥିତ ରୂପକୁ ତାଂକ ଗଳ୍ପର ଅନ୍ୟ ଏକ ବିଶିଷ୍ଟ ଭାଷିକଦିଗ ଭାବେ ଦେଖୁଁ ।

ସାହିତ୍ୟର ଭାଷିକ ଶୈଳୀ ଆଲୋଚନାବେଳେ ପ୍ରଥମ ଭାଷା—(First Language), ଦ୍ୱିତୀୟଭାଷା (Second Langauge) ଆଦି ପ୍ରସଂଗ ମଧ୍ୟ ଆସିଥାଏ । ସେହି ପରିପ୍ରେକ୍ଷୀରେ ଚଂଦ୍ରଶେଖରଂକ ପ୍ରଥମ ଭାଷା ସ୍ୱାଭାବିକ ଭାବେ ଓଡ଼ିଆ । ଦ୍ୱିତୀୟଭାଷା

ହିନ୍ଦୀ ତଥା ମିଶ୍ରିତ ହିନ୍ଦୀ, ତୃତୀୟ ଭାଷା ଇଂରାଜୀ ଚତୁର୍ଥଭାଷା ପର୍ଯ୍ୟାୟରେ ବଂଗଳା, ଭୋଜପୁରୀ ଆଦି । ଏହି ଭାଷିକ ବର୍ଗୀକରଣଟି ସ୍ରଷ୍ଟାର ଭାଷାର ପ୍ରୟୋଗ ବହୁଳତାରୁ ନିର୍ଦ୍ଧାରିତ ହୁଏ । ତାଂକ ଭାଷାରେ କଥିତ ଓଡ଼ିଆ ଯେମିତି ବାକ୍ୟର ଛତ୍ରେ ଛତ୍ରେ ରହିଛି ଠିକ୍ ସେହିଭଳି ହିନ୍ଦୀର ସ୍ଥିତି । ଚଂଦ୍ରଶେଖରଂକ ଗଳ୍ପରେ ଗ୍ରାମୀଣ ଚରିତ୍ର ନହେଲେ ହେଁ ଯେମିତି ଗ୍ରାମ୍ୟ କଥିତ ଭାଷା କହିଥାଏ ସେହିଭଳି ହିଂଦୀ ଭାଷୀ ନ ହୋଇ ମଧ୍ୟ ସେ ପ୍ରଚୁର ହିନ୍ଦୀ ମିଶ୍ରିତ ଭାଷା କହିଥାଏ । ଗାଳ୍ପିକଂକ ଚରିତ୍ରମାନେ ଯେତେବେଳେ ରାଗଂତି ବା ଚରିତ୍ରଠାରେ ହୀନମନ୍ୟତା ପ୍ରକାଶ କରଂତି ବା ପ୍ରଥମ ପୁରୁଷୀୟ ଗଳ୍ପର ଚରିତ୍ରମାନେ ନିଜର ବ୍ୟର୍ଥତା ପ୍ରକାଶ କରଂତି ସେଇଠି ସର୍ବତ୍ର ହିନ୍ଦୀରେ ନିଜକୁ କିଂବା ଅନ୍ୟକୁ ଗାଳିଦେବା ପସଂଦ କରଂତି । ଆଉ କେତେକ କ୍ଷେତ୍ରରେ ଗାଳ୍ପିକ, ଚରିତ୍ରର ଭଲପଣକୁ ବା ନିଜର ଭଲପାଇବାଭଳି ବିଷୟକୁ ଏହିଭଳି ପ୍ରକାଶ କରଂତି । 'ମାୟାଯୁଦ୍ଧ' (ଅଂତିମା), 'ବର୍ଷକ ଏକଋତୁ : ଋତୁକ ତିନିଦିନ-ସବୁଠାରୁ ଦୀର୍ଘରାତି), 'ଆଜ ରଜନୀ ମଧ୍ୟଗତେ' (ଅଂତିମା) ଆଜି ଗଳ୍ପରେ ହିନ୍ଦୀ ପ୍ରୟୋଗର ବିଶିଷ୍ଟ ରୂପକୁ ଲକ୍ଷ୍ୟ କରାଯାଇପାରେ । ଉଦାହରଣ ଏବଂ ପ୍ରୟୋଗ ଆଦିପାଇଁ ପୂର୍ବ ଆଲୋଚିତ 'ଶବ୍ଦ' ପ୍ରସଂଗ ଦ୍ରଷ୍ଟବ୍ୟ ।

ଇଂରାଜୀ ଭାଷା ବ୍ୟବହାର କ୍ଷେତ୍ରରେ ଚନ୍ଦ୍ର ଶଖରଂକ ଦୃଷ୍ଟିଟି ହେଲା : ସେ ସାଧାରଣ ଶବ୍ଦପାଇଁ ବା ଅଭିବ୍ୟକ୍ତି ପାଇଁ ଇଂରେଜୀ ଶବ୍ଦ-ଭାଷାର ବ୍ୟବହାର କରଂତି ନାହିଁ । ତାହା ସର୍ବଦା ସ୍ଥାନ-କାଳ-ପାତ୍ର ଭେଦରେ ଆସିଚି । ନଚେତ୍- ଗାଳିଦେବା ଭଳି ପ୍ରସଂଗରେ ଇଂରାଜୀ ଭାଷାର ସଂଯୋଗ ଲକ୍ଷ୍ୟଣୀୟ । 'ଯଦି ସେଇଶ୍ୱର ନୁହେଁ' ଗଳ୍ପରେ 'ପାପୁ', 'ସୁରେନ୍ଦ୍ର'ଙ୍କ ଭାଷାର ବେଶୀଭାଗ ଇଂରେଜୀ । ଯେଉଁଠି ଇଂରାଜୀ ଗାଳି ବ୍ୟବହୃତ ହେଇଛି ସେଇଠି ଦେଖିବାର ବିଷୟଟି ହେଉଛି, ତାହା -ଓଡ଼ିଆ, ହିନ୍ଦୀ ଓ ଇଂରାଜୀରେ ଏକ ଅଦ୍‌ଭୁତ ସମନ୍ୱୟ : "କିଏ ସେଇଟା ଇଡ଼ିଅଟ୍ କାହାଁକା ! ଶାଲା ମାଇପବୋଲ କରା, ଅକର୍ମଣ୍ୟ ଭାର୍ଦା" (ବାନପ୍ରସ୍ଥ, ବା.ସ.)

ସେହିଭଳି ବଂଗଳା, ଭୋଜପୁରୀର ପ୍ରୟୋଗ କେଉଁଠି କେଉଁଠି ପ୍ରୟୋଗ ହୋଇଥାଏ । ଯେପରି ଘାଟ-ମହାସୁଲ ଗଳ୍ପରେ ମୂଳବଂଗଭାଷୀ ବଡ଼ ବୋହୂଟି ବିପତ୍ତିଜନକ ପରିସ୍ଥିତି ଦୃଷ୍ଟିରୁ ସ୍ୱାମୀକୁ କହୁଥିବା କଥାଟି :"ଏଟାତ ଲଡ଼ାଲଢ଼ି ବ୍ୟାପାର । ତୁମି ଯାଅନା କେନ ? " ଯେଉଁଠି ଓଡ଼ିଆ ଭିତରେ ପଶି ଆସିଚି ସ୍ୱାଭାବିକ ଭାଷାର ସ୍ପୃହିଦା ସେହିଭଳି 'ପିତୃପୁରୁଷ' ଗଳ୍ପରେ ଭୋଜପୁରୀ ଭାଷାର ବହୁଳ ବ୍ୟହବାର ଦ୍ରଷ୍ଟବ୍ୟ । ଅସ୍ଥିବିସର୍ଜନ ପାଇଁ ଯାଇଥିବା ସିଦ୍ଧନାର୍ଥଂକୁ ନେଇ ଯାଇଥିବା ଗୁମାସ୍ତା ଏବଂ ମୁସାଫିର୍‌ଖାନା ଭଳି ଲାଗୁଥିବା ଘରର ମାଲିକର କଥୋପକଥନ :" ଆରେ ଓ ମିଶରବା କଉନ ମୁଲକ୍ କେ କହିନ୍‌ରେ ?" "ଉରିସା ପଂଡିତ ଜୀ ଜଗଦୀଶ ଧାମକା" ! ପୁନଶ୍ଚ :

ଗୁମାସ୍ତାର ବକ୍ତବ୍ୟ :" ଆରେ ପଂଡିତଜୀ ଆହି ରାଇନ୍ । ପାଓଁଲାଗି ହୋ ବାବୁ ।" ଇତ୍ୟାଦି (ଅଂତିମା) । ଏହିଭଳି ବିଭିନ୍ନ ଭାଷିକ ଦିଗକୁ ଗଳ୍ପରେ ସଫଳକରି ପ୍ରୟୋଗ କରିଛନ୍ତି ଗାଳ୍ପିକ । ମାତ୍ର ଏଭଳି କ୍ଷେତ୍ରରେ କଥାଟି ସ୍ୱୀକାର୍ଯ୍ୟ ଯେ, ଏହା ସେହି ଭାଷା ଭାଷୀ ଚରିତ୍ରଂକ ଦେଇ ପ୍ରକାଶିତ ହୋଇଚି ।

(୭)

ଶୈଳୀ, ବ୍ୟକ୍ତିତ୍ୱର ଭାଷାରୂପ ବକ୍ତବ୍ୟର ବାହନ ହେବାସହ ସ୍ୱୟଂ ଶିଳ୍ପସିଦ୍ଧ ଏକ ପ୍ରକ୍ରିୟା ଅଟେ । ଷ୍ଟାଇଲ ସୃଜନଶୀଳ ସାହିତ୍ୟରେ ଭାଷାଦିଗରେ ଯେତିକି ପରିମାଣରେ ପ୍ରଭାବଶାଳୀ ସେତିକି ତାର ସାହିତ୍ୟିକସ୍ତରରେ । ଶୈଳୀ ବା ଷ୍ଟାଇଲ ଭାଷା ପ୍ରୟୋଗର ଯାବତୀୟ ଲକ୍ଷଣ, କୌଶଳ, ଓ ଧର୍ମର ଅନୁଶୀଳନ । ଭାଷା ବିଶ୍ଳେଷଣଟି ସାହିତ୍ୟିକ ଶୈଳୀ ଅଂତର୍ଗତ । ମାତ୍ର ଭାଷାଟି ସ୍ୱଂତନ୍ତ୍ରଭାବେ ଆଲୋଚିତ ହୋଇ ଥିବାରୁ ଏଠାରେ ଭାଷାର ଅନ୍ୟାନ୍ୟ ଉପାଦାନ ଏବଂ ବକ୍ତବ୍ୟର ମହତ୍ତ୍ୱ ଉପରେ ଗୁରୁତ୍ୱ ଦିଆଯାଇଅଛି ।

ଗାଳ୍ପିକ ଚଂଦ୍ରଶେଖରଂକ ଗଳ୍ପର ଭାଷିକ ପରିଧିଟି ବହୁତ୍ର — 'ପ୍ରଥମ ପୁରୁଷୀୟ ଶୈଳୀ' (First Person narration style) ରେ ଲିଖିତ । ଏହି କୌଶଳଟିହିଁ ତାଂକ ଗଳ୍ପର ପ୍ରମୁଖ ଶୈଳୀ ହୋଇ ଆସିଛି । ତାହା 'ବାଘସବାର' ଗଳ୍ପ ହେଉବା 'ସାପ' ଗଳ୍ପ, 'ଲୁଚକାଳି- ଏକ ପିଲାଖେଳ' ଗଳ୍ପ ହେଉ ବା 'ମାୟାଯୁଦ୍ଧ' ଗଳ୍ପ, 'ଅବାଂତର ଈଶ୍ୱର ଅଥବା 'ସବୁଠାରୁ ଦୀର୍ଘରାତି' ଗଳ୍ପ ସବୁଠି ସେଇ ମୁଁ ହେଇ ଗଳ୍ପ ସୃଜିତ ଭାଷାର ବାକ୍ୟବଂଧ ଦ୍ରଷ୍ଟବ୍ୟ । ତା ଅର୍ଥ ନୁହେଁ ଯେ ସେ ତୃତୀୟ ପୁରୁଷୀୟ ଶୈଳୀରେ ଲେଖଂତି ନାହିଁ ବା ଭଲ ଗଳ୍ପ ନାହିଁ ବୋଲି । 'Third person narrration style ରେ ମଧ୍ୟ ରହିଛି ତାଂକ ପ୍ରସିଦ୍ଧ ଗଳ୍ପମାନ । ଯେପରି : ସମ୍ରାଟ, ବିଯୋଡ଼ ପକ୍ଷୀ, ଉପସଂହାର, ନଈପାରି, ରୁନିପାଇଁ ନୀରବ ପ୍ରାର୍ଥନା ଭଳି ଗଳ୍ପ । ମାତ୍ର ଏବେ ପ୍ରଶ୍ନଉଠେ ଯେଉଁ ଗଳ୍ପ ଗୁଡ଼ିକ 'ପ୍ରଥମପୁରୁଷ'ରେ ଲେଖାଯାଇଚି ତାହା ତୃତୀୟ ପୁରୁଷରେ ଲେଖିଥିଲେ କେମିତି ହୋଇଥାଂତା ? ଏହି କ୍ଷେତ୍ରରେ ଏକଥାଟି କୁହାଯାଇ ପାରେ : ଯେଉଁଠି 'ମୁଁ'ରେ ଗଳ୍ପ ସୃଜିତ ହୋଇଛି ସେଇଠି ଗାଳ୍ପିକଂକ ଆତ୍ମ ସଂପୃକ୍ତି ସହ ବିବେକକୁ ପ୍ରବୋଧିତ କରିବାର ପ୍ରସଂଗଟି ଆସିଚି । ଫଳତଃ ଗଳ୍ପ ଗୁଡ଼ିକସହ ପାଠକଂକ ଅଧିକ ଅଂତସଂପର୍କ ରହୁଛି । ତଥା ଗଳ୍ପର ପରିଧିଟି - ପୂର୍ଣତଃ ମନସ୍ତାତ୍ତ୍ୱିକ ବିଶ୍ଳେଷଣାତ୍ମକ ହୋଇପାରିଚି । ଯାହା ହୁଏତ ତୃତୀୟ ପୁରୁଷରେ ଅସଂଭବ ନହେଲେ ହେଁ ଅବେଦନ ମୁଖୀ ହୋଇ ପାରିନଥାଂତା । ଉଦାହରଣ ଭାବେ 'ବାଘସବାର' ଗଳ୍ପରେ ବ୍ୟକ୍ତିର ରୂପାତଂରଣର ଯେଉଁ ପ୍ରକ୍ରିୟା, ତାହା ହୁଏତ ବିଶେଷ ସ୍ପର୍ଶ କରିନଥାଂତା କାରଣ ସେଠାରେ ବ୍ୟକ୍ତି ନିଜ ଭିତରର 'ଭୀରୁତା'କୁ 'ହୀନପଣ'କୁ ପଦାଘାତରକରି 'ପୁରୁଷପଣିଆ' ଜାହିର୍ କରିବାରେ ସଫଳ

ହୋଇପାରିନଥାଂତା ।

ଗାଳ୍ପିକଂକ ଭାଷା ସର୍ବଦା ବର୍ଣନାତ୍ମକ ଶୈଳୀ (Narative style) କୁ ବିଶେଷ ଗୁରୁତ୍ୱ ଦେଇଚି । ସେଥିରେ ପୁଣି ତା'ର ବିଶିଷ୍ଟ ଆଂଗିକ ହୋଇଚି 'ସଂଳାପଶୈଳୀ' (Dialogue Method) — ଗାଳ୍ପିକଂକ ଅର୍ଦ୍ଧାଧିକ ଗଳ୍ପକୁ ଏହି ସଂଳାପ ଧର୍ମୀ ବାକ୍ୟ ବିନ୍ୟାସହିଁ ଆଧାର କରିଛି । ଯେଉଁଠି ଆମେ ଗୋଟିଏ ଧରଣର ନାଟକୀୟ ଉପସ୍ଥାପନାର ଆନଂଦ ଉପଲବ୍ଧି କରୁଁ ।

ଗାଳ୍ପିକଂକ ଗଳ୍ପର ଆରଂଭ ଓ ବିକାଶଟି ଯେତିକି ଗୁରୁତ୍ୱପୂର୍ଣ୍ଣ ନୁହେଁ । ତାଠାରୁ ବେଶୀ ଗୁରୁତ୍ୱପୂର୍ଣ୍ଣ ତାଂକ ଗଳ୍ପର ପରିସମାପ୍ତିଟି । ଏପରିକି ଗଳ୍ପର ଶେଷ ଧାଡ଼ି ଗୁଡ଼ିକହିଁ ଅନେକତ୍ର ସମଗ୍ର ଗଳ୍ପର ଭାବବସ୍ତୁ (Theme) କୁ ଧାରଣ କରିଥାଏ । ଯେଉଁ ଶୈଳୀଟି ଆମେ 'ଓ' ହେନରୀ, 'ଆର୍.କେ. ନାରାୟଣ' କିଂବା 'ମନୋଜ ଦାସଙ୍କ ଠାରେ ଦେଖି ଥାଉଁ । ଏ ପ୍ରସଂଗରେ ରୁନିପାଇଁ ନୀରବ ପ୍ରାର୍ଥନା, ବନ୍ୟାପରେ, ନିମ୍ନପାହାଚ, ମୁଁ ସିନା ଚିର ଅପରାଧୀ, ମହାତ୍ମା ଆଦି ଗଳ୍ପକୁ ସ୍ମରଣ କରାଯାଇପାରେ । 'ରୁନିପାଇଁ ନୀରବ ପାର୍ଥନାରେ ମୁକ ଏବଂ ବଧିର ସ୍ୱାମୀ-ସ୍ତ୍ରୀଙ୍କ ଅନ୍ୟ ମଣିଷପାଇଁ ରହିଥିବା ପରୋପକାର, ଶ୍ରଦ୍ଧା ଭାବଟିର ପରସମାପ୍ତିଟି ନିଜର ମୃତ୍ୟୁସହ ଲଢ଼ିବା ଯାଏଁ ରହିଚି । ଯେଉଁଠି ଅନ୍ୟକୁ ବଂଚ୍ଚାଇବାର ଇଚ୍ଛାରେ ନିଜେ ଭୋଗ କରିଛି ରୁନି, ନିଶବ୍ଦ ମୃତ୍ୟୁ ସନ୍ନିକଟ ଯଂତ୍ରଣା । ସେହି ରୁନିପାଇଁ ଗାଳ୍ପିକଂକ ଆକସ୍ମିକ ପରିସମାପ୍ତିଟି ପାଠକଙ୍କୁ ସଂବେଦନଶୀଳ କରିଦିଏ । ସେହିଭଳି 'ମହାତ୍ମା' ଗଳ୍ପରେ ଦ୍ୱଂଦ୍ୱାତ୍ମକ ଗଳ୍ପ-ପରିସମାପ୍ତି, ନିମ୍ନପାହାଚରେ ଶେଷଧାଡ଼ିରେ ପୂର୍ଣ୍ଣାଂଗ ଗଳ୍ପର ଭାବକୁ ଧାରଣ କରିବାର ଶକ୍ତି - ଆଦି ଭିତରେ ଆମେ ବିସ୍ମୟସୃଷ୍ଟିକାରୀ ପରିସମାପ୍ତି (Surprise ending) ଆଣିବାରେ ଗାଳ୍ପିକ ଚନ୍ଦ୍ରଶେଖରଙ୍କ ସଫଳତାକୁ ହୃଦୟଂଗମ କରିପାରୁଁ ।

'ରୂପକଳ୍ପ' (Image) ଏବଂ ପ୍ରତୀକ (Symbol) ର ବିଶିଷ୍ଟ ପ୍ରୟୋଗ ଚଂନ୍ଦ୍ରଶେଖରୀୟ ଗଳ୍ପର ଅନ୍ୟ ଏକ ସ୍ୱାତଂତ୍ର୍ୟ । 'ରୂପକଳ୍ପ'ର ବହୁ ସଫଳ ପ୍ରୟୋଗ ଗଳ୍ପର ବର୍ଣନା ଭିତରେ ଅନେକତ୍ର ଛପି ରହିଅଛି । ଚଂଦ୍ରଶେଖରଂକ ରୂପକଳ୍ପ ଅନେକତ୍ର ବ୍ୟକ୍ତି ମଣିଷର ଅସହାୟତାକୁହିଁ ଚିତ୍ରମୟ କରିଚି । ଏଠାରେ କେତୋଟି ଉଦାହରଣ ଦିଅଗଲା :

(୧) ଲଂଠନ : ''ଲଂଠନଟି ଭୀତତ୍ରସ୍ତ ହରିଣ ଛୁଆପରି ଆଁଠୁଏ ଉଚ୍ଚରୁ ଚ୍ୱହିଁ ରହିଲା ନିଛାଟିଆ ଅରଣ୍ୟକୁ'' (ମହାତ୍ମା)

(୨) ଫୋପଡ଼ାଜିନିଷ : 'ମଶାଣି ବାଲିରେ ବୁଢ଼ା ମଣିଷର ହାଡ଼ପରି ଏଣିକି ସେଗୁଡ଼ା ଖଂଡ ଖଂଡ ବସ୍ତୁ'' (ଯା..ତତେ ମାଫ୍ କଲି)

(୩) ଅସହାୟତା : ଶାଗପରି ନିସ୍ତେଜ ମେଁଗ୍ଟିଏ ହୋଇଗଲା ନେଉଳି ।''- (ମହାତ୍ମା)

ଏ ରୂପକଗୁଡ଼ିକର ଭାବାତ୍ମକ ଦିଗଟି ଭାବଗଂଭୀର । ମଣିଷର ଅସହାୟତା, ମଣିଷର ନିସ୍ତେଜତା, ନିଃସଂଗତା ଏବଂ ଅଭାବିତ ଦିଗପ୍ରତି ଏ ସମସ୍ତ ବ୍ୟଂଜିତ ।

'ଇମେଜ୍' ପ୍ରୟୋଗ ଭଳି ସିଂବଲ୍' ପ୍ରୟୋଗରେ ଗାଳ୍ପିକ ସିଦ୍ଧହସ୍ତ । ବାଘ, ସାପ, ଧଂଡ଼ ସାପ୍, ଋଡ଼ନିଆଁ ଆଦି ତାଂକ ବହୁ ବ୍ୟବହୃତ ପ୍ରତୀକ । ମାତ୍ର ତାଂକର 'ବାଘ' ପ୍ରତୀକ ପ୍ରତି ରହିଛି ସ୍ୱତଂତ୍ର ଦୁର୍ବଳତା ତାହା କେବଳ ଗଳ୍ପ ନୁହେଁ । କବିତା, ପ୍ରବଂଧ ଏପରିକି ରମ୍ୟରଚନାରୁ ମଧ୍ୟ ବାଦ୍ ପଡ଼ି ନାହିଁ । ଗଳ୍ପ କ୍ଷେତ୍ରରେ ଗୋଟିଏ କଥା କୁହାଯାଇ ପାରେ- ଗାଳ୍ପିକ ଶ୍ରୀରଥ 'ବାଘ'କୁ ତାଂକ ଗଳ୍ପ-ପରିଧିରେ ସର୍ବାଧିକଥର ବ୍ୟବହାର କରିଥିବା ସିଂବଲ । ଯାହାପ୍ରତି ରହିଚି ତାଂକ ଅପୂର୍ବ ଉତ୍ସୁକତା ଏବଂ ଆଗ୍ରହ । ତାଂକ ଗଳ୍ପଗୁଡ଼ିକରେ ବାଘଟିଏ ହଠାତ୍ ପ୍ରତୀକ ହୋଇ ଖସିପଡ଼େ । ତାହା ଖୁବ୍ ଆକସ୍ମିକ । ତାଂକ ଗଳ୍ପରେ ବାଘ : ହିଂସା, ଭୟ, ସଂତ୍ରାଶ, ରହସ୍ୟମୟତା, ବିବେକ, ଯୌନକ୍ଷୁଧା, ନିଷ୍ଠୁରତା, ମୃତ୍ୟୁ, ନିର୍ଭୟ, ବୀରତ୍ୱ ଆଦିର ପ୍ରତୀକ । ବାଘ, ସିଧାସଳଖ ବାକ୍ୟର ଛତ୍ରେ ଛତ୍ରେ ଖ୍ଲିଆସିଚି, ଯେପରି : ''କଣ ସେ ସଂଭାଳିପାରିବ ପ୍ରବଳ ଯୌବନରେ ଅରଣା ବାଘକୁ'' (ଯା.... ତତେ ମାଫ୍ କଲି, ବାସ),'' ଏ ବାଘ.... ହେ ବାଘ'' ଏବଂ ଡେଇଁଲା କେବଳ ବାଘ ନୁହେଁ ମୃତ୍ୟୁକୁହିଁ ଅସ୍ୱୀକାର କରୁଥିଲା ଦିଲ୍ଲୀପ'' (ବାମମାର୍ଗ, ଏତେପାଖରେ ସମୁଦ୍ର), 'ବାଘପରି ଗର୍ଜି ମାଡ଼ିଗଲା ସର୍ଦ୍ଦାର'' (ବିଯୋଡ଼ ପକ୍ଷୀ, ସହଯାତ୍ରିକ), 'ଟିକିଏ ତଳକୁ ସେମିତି ଇଂରାଜୀରେ ଲେଖାଥିଲା - 'ବାଘକୁ ସାବଧାନ''' (ପ୍ରଶ୍ନବାଚକ, ସବୁଠାରୁ ଦୀର୍ଘରାତି), ''ଏଇଟା ଘୋଡ଼ା ନୁହେଁ ବାଘ । — ରକ୍ତମୁଖା ମହାବଳ'' (ବାଘସବାର), ''ଅଂଧାର ବାଘ ଗୁଂଫା ଭଳି ନୀରବ'' (ପାତକ, ବାସ.) ''ଆଉ ଏମାନେ ପୋଷା ବାଘପରି ମୁଂଡପାତି ସହୁଥାଂତେ'' (ଚିହ୍ନଟ ଏ.ପା.ସ), '' ଉପର ମହଲା ବାଘଗୁଂଫା । ସେଇଠି ରାତିଅଧରେ ବାଜଣା ଶୁଭେ'' । (କୁବୁଜା, ସମ୍ରାଟ ଓ ଅନ୍ୟମାନେ), ''ଏମିତି ବାଘ ମୁହଁରୁ ଉବୁରି ଆସିଚି, ଆପଣ୍ଣା'' (ମୁଁ ସିନାଚରି ଅପରାଧୀ, ବା.ସ), ''ଭୋକିଲା ବାଘପରି ତା ବାପ ଏକ ମୁହାଁ ଘର ଭିତରକୁ ପଶିବାମାତ୍ରେ ଭିତରୁ ପାଟିତୁଂଡ ଶୁଭୁ ଥିଲା '' । (ଅପରିବାର, ଏ.ପା.ସ) ଏହି ଭଳି ଉଦାହରଣ ଅନେକ ରହିଚି । 'ବାଘ' ସବୁଠି ପ୍ରତୀକ ହୋଇ ଆସିଛି । ଚଂଦ୍ରଶେଖରଂକ ଗଳ୍ପରେ 'ବାଘ' ସବୁଠି ଅବଚେତନରେ ରହିଥିବା ଭାବଆଦିକୁ ପୋଷଣ କରିଚି । 'ବାଘ' ପ୍ରତି ଆଗ୍ରହ ଏବଂ ଦୁର୍ବଳତାରୁ ଲିଖିତ ହୋଇଚି— 'ମଲାବାଘ' (ସ୍ୱପ୍ନବାହକ), 'ବାଘସବାର' ଭଳି ଗଳ୍ପ । ଏପରିକି ଗୋଟିଏ ସଂକଳନର ନାମକୁ ଧାରଣ କରିଚି ପ୍ରତିକାତ୍ମକରୂପରେ ।

'ବାଘ' ଭଳି 'ସାପ' ଓ 'ଧଂଡସାପ' ତାଂକ ଗଳ୍ପର ଅନ୍ୟାନ୍ୟ ବହୁ ବ୍ୟବହୃତ ପ୍ରତୀକ । 'ସାପ'-ଯୌନତା, ନିସ୍ତେଜତା, ମୃତ୍ୟୁ ଆଦିର ପ୍ରତୀକ । ଗାଳ୍ପିକ 'ଧଂଡସାପକୁ ଗଳ୍ପରେ ଅନେକତ୍ର ବ୍ୟବହାର କରିଛଂତି । ଯେପରି 'ସବୁ ଥଂଡ଼ା, ନିର୍ଜୀବ ମଲା ଧଂଡସାପ' । (ସଂପଦ, ବାସ.) ''ନେଉଳି କିଂତୁ ମଲା ଧଂଡଟିଏ ପରି ନିସ୍ତେଜ' (ମହାତ୍ମା, ବା.ସ.) ଇତ୍ୟାଦି ପ୍ରୟୋଗକୁ ଅବଲୋକନ କରାଯାଇପାରେ ।

(୮)

ଚଂଦ୍ରଶେଖରଂକ ପ୍ରଥମ ଗଳ୍ପ ସଂକଳନ 'ଅନେକ ବନ୍ୟାପରେ' ପ୍ରକାଶ ପାଇଲାବେଳକୁ ତାଂକୁ ୪୯ ବର୍ଷ । ତା ପରଠାରୁ ସେ ଦୀର୍ଘ ଏକ ଗଳ୍ପ-ଯାତ୍ରା କରିସାରିଛଂତି । ଯା ଭିତରେ ସେ ତାଂକର ସ୍ୱତଂତ୍ର ପରିଚୟ ଏବଂ ନିଜସ୍ୱ ଧାରାଟିଏ ପାଇ ସାରିଛଂତି । ଗଳ୍ପଲେଖା ଆରଂଭ କଲାବେଳକୁ ସେ ଚିଂତା-ଚେତନାରେ ପରିପକ୍ୱ । ଅପରପକ୍ଷରେ ସେ ଜଣେ ସଫଳ ପ୍ରାବଂଧିକ ଏବଂ ଔପନ୍ୟାସିକର ପରିଚୟ ପାଇ ସାରିଲେଣି । ଫଳତଃ ଗଳ୍ପ ଲେଖିବା ବେଳକୁ ତାଂକ ଲେଖନୀ ଟାଣ ହୋଇ ସାରିଥିଲାଣି । ସେଥିପାଇଁ ନିଜସ୍ୱ ଧାରାଟିଏ ଖୋଜିବାପାଇଁ ତାଂକୁ ଅପେକ୍ଷା କରିବାକୁ ପଡ଼ିନଥିଲା । ତାଂକ ଗଳ୍ପ-ଶୈଳୀରେ ପ୍ରାଥମିକ ପର୍ଯ୍ୟାୟରେ ଶୈଳୀର ପରବର୍ତ୍ତୀ କାଳରେ ବିଶେଷ ପରିବର୍ତ୍ତନକୁ ଲକ୍ଷ୍ୟ କରାଯାଏ ନାହିଁ । ତାଂକ ଶୈଳୀ ସଂପର୍କରେ ଶେଷକୁ ଏହା କୁହାଯାଇପାରେ : 'ତାଂକ ଶୈଳୀ ରହିଚି ଅପରିବର୍ତ୍ତିତ ଯଦିଓ ଭାବଧାରା ହୋଇଚି ଭିନ୍ନ' । ଚନ୍ଦ୍ରଶେଖରଂକ ଗଳ୍ପରେ ବିଚ୍ଛୁରିତ ହୋଇଥିବା ବହୁବର୍ଣ୍ଣୀ-କିରଣକୁ ଶୈଳୀର ଆଲୋକରେ ଦେଖିବାର ଏହେଉଛି ଏକ ପ୍ରୟାସ ମାତ୍ର ।

ଗବେଷକ, ଓଡ଼ିଆ ବିଭାଗ
ବିଶ୍ୱଭାରତୀ, ଶାଂତିନିକେତନ

***

୩

# ଜଣେ ସାଂସ୍କୃତିକ ପହିଲ୍‌ମାନଙ୍କ ସଂପର୍କରେ

*ଶରତ୍ ଚନ୍ଦ୍ର ପୂଜାରୀ*

## ଦୃଷ୍ଟି ଓ ଦର୍ଶନ

୧୯୬୦ ମସିହାରେ ପଶ୍ଚିମାଞ୍ଚଳର ଏକ ବ୍ୟବସାୟିକ ସହରରେ ସବୁ ଅନିଶ୍ଚିତତା ଓ ଅଭାବବୋଧ ଭିତରେ ମୋର ଅଧ୍ୟାପକ ଜୀବନ ଆରମ୍ଭ ହୋଇଥିଲା । ନିଜ ଇଚ୍ଛାରେ ଭବିଷ୍ୟତ ଗଢ଼ି ନପାରିଥିବା ଲୋକଟିଏ ବେସରକାରୀ କଲେଜର ଅଧ୍ୟାପକ ହୋଇଗଲେ କଣ ବା କରିପାରେ ? ପାଠ ପଢ଼ିଲେ ସିନା ପାଠ ପଢ଼େଇବ ! ନୂତନ ପ୍ରତିଷ୍ଠିତ ମହାବିଦ୍ୟାଳୟରେ କଳା, ବିଜ୍ଞାନ ଓ ବାଣିଜ୍ୟ ବିଭାଗର ଯୁବ ଅଧ୍ୟାପକ ଅଧ୍ୟାପିକାମାନଙ୍କ ମଧ୍ୟରେ ଯୋଗାଯୋଗ ଥିଲା ଖୁବ୍ ଅନ୍ତରଂଗ ଓ ଶିକ୍ଷଣୀୟ । ବହୁ ଆକାଂକ୍ଷା ଓ ଉନ୍ମାଦନା ମଧ୍ୟରେ ଗ୍ୱରିପାଞ୍ଚ ବର୍ଷ ବିତିଥିଲା । ସେତେବେଳର ହାତଗଣତି ପତ୍ରପତ୍ରିକାରେ ପ୍ରକାଶିତ ଲଳିତ ନିବନ୍ଧ, ଗଳ୍ପ, କବିତା ଓ ଉପନ୍ୟାସ ଇତ୍ୟାଦି ପଢ଼ିବାର ଆକର୍ଷଣ ଥିଲା ଅନେକ ବେଶୀ । ଖେଳ ଓ ନାଟକ ପ୍ରତି ମଧ୍ୟ ଆକର୍ଷଣ ଥିଲା । କିନ୍ତୁ ପିଲାବେଳୁ ପହିଲମାନଟିଏ ଅତି ନିକଟରୁ ଦେଖି ନଥିଲି । ଅବଶ୍ୟ ସର୍କସରେ, ସାହି ଆଖଡ଼ାଘରେ, ଭାର ଉତ୍ତୋଳନ ପ୍ରତିଯୋଗିତାରେ ପହିଲମାନ୍ ମାନଙ୍କୁ ଦେଖିବାର ସୁଯୋଗ ମିଳିଥିଲା । ଏବେତ ଟେଲିଭିଜନ୍‌ରେ ସବୁଦିନେ ଶହ ଶହ ପ୍ରକାରର ପହିଲମାନମାନଙ୍କୁ ଦେଖୁଛି !

୧୯୬୮ ମସିହାରେ ମୋତେ ଜଣେ ସାଂସ୍କୃତିକ ପହିଲମାନଙ୍କୁ ଦେଖିବାର ସୁଯୋଗ ମିଳିଲା । ୧୯୬୩ ମସିହାରୁ ମୁଁ ତାଙ୍କୁ ଜାଣିଥିଲି ଜଣେ ପ୍ରାବନ୍ଧିକ ଭାବରେ । ପରେ ଜଣେ ଗଳ୍ପ ଓ ଉପନ୍ୟାସ ଲେଖକ ଭାବରେ । ଶୁଣାଶୁଣିରେ, ସେ ଲକ୍ଷ୍ନୌ ବିଶ୍ୱବିଦ୍ୟାଳୟର ଜଣେ ଇଂରାଜି ସାହିତ୍ୟର ଏମ.ଏ. ଡିଗ୍ରୀ ଧାରୀ ସରକାରୀ କଲେଜର ଅଧ୍ୟାପକ । ଏ ସବୁ ଜାଣିବା ପରେ ତାଙ୍କର ଲେଖାର ପ୍ରଭାବ ଯେ ମୂଳକାରଣ ଏହା କହିବା ବାହୁଲ୍ୟ ମାତ୍ର ।

ବ୍ୟକ୍ତିଗତ ଭାବରେ ସେ ପହିଲମାନ୍ ଲେଖକଙ୍କ ଚେହେରା ଦେଖିବା ସୁଯୋଗ ମିଳିଲା ୧୯୬୭ ମସିହାର ବିଷୁବ ମିଳନ ଅବସରରେ । ସେତେଦିନ ଯାଏ ଓଡ଼ିଶାର ଏତେବଡ଼ ବପୁଶାଳୀ ସାହିତ୍ୟିକଙ୍କୁ ମୁଁ ଦେଖିନଥିଲି । ସେ ଥିଲେ ପାଞ୍ଚହାତିଆ ମଣିଷଟିଏ । ଛାତିଟା ବୋଧହୁଏ ୫୬ ଇଞ୍ଚ । ଉଚ୍ଚତାଛ'ପୁଟ ପାଖାପାଖି । ଧୋତି ଓ ଶିଲ୍କ ପଞ୍ଜାବି ପିନ୍ଧା ଏ ଲୋକଟିକୁ ଦେଖି ମେର ପ୍ରଥମ ଧାରଣା ହୋଇଥିଲା ପୁରୀର ଜେଗାଘର ମାଲଟିଏ କି ଆଉ ! ସେଇଠି ଜାଣିଲି ସେ ହେଉଛନ୍ତି ସାହିତ୍ୟିକ ଅଧ୍ୟାପକ ଚନ୍ଦ୍ରଶେଖର ରଥ ।

ମୋତେ ତାଙ୍କ ସହିତ କେହି ପରିଚୟ କରାଇ ନଥିଲେ । ସେତେବେଳେ ସେ ଜଣେ ପ୍ରତିଷ୍ଠିତ ଲେଖକ ଓ ମୁଁ ଜଣେ ଅର୍ବାଚୀନ ବେସରକାରୀ କଲେଜର ନିଷ୍ଣାନ୍ତ ଅଧ୍ୟାପକ । ସେ ସମୟରେ କିନ୍ତୁ ମୋର ଅନ୍ୟ ପରିଚୟଟି ଉଦ୍‌ଭାସିତ ହୋଇଥିଲ । ତାଙ୍କ ଅଭିବ୍ୟକ୍ତିରେ । ଆଖିର ଭୂଲତାକୁ ଉଠେଇ, ଆଖି ଦୁଇଟି ବିସ୍ତାରିତ କରି, ତାଙ୍କର ଦକ୍ଷିଣ ହସ୍ତଟି ମୋ ଆଡ଼କୁ ପ୍ରସାରିତ ହୋଇ ଯାଇଥିଲା । ପାଟିରେ ଥିଲା ଗୋଟିଏ ଶିଶୁର ଅନାବିଳ ଖୋଲା ହସ । ମଜ୍‌ବୁତିଆ - ପାପୁଲିରେ ସେ ମୋ ସହିତ କରମର୍ଦ୍ଦନ କରିଥିଲେ । ମୁଁ କୃତାର୍ଥ ହୋଇଥିଲି । ସେ ମୋତେ ଜଣେ କଳାକାର ଭାବରେ ଚିହ୍ନିଥିଲେ ବୋଲି ।

**ଏ ଯେଉଁ ପୃଥିବୀ—**

୧୯୨୯ ମସିହାର କୁମାର ପୂର୍ଣ୍ଣିମା ତିଥିର ଚନ୍ଦ୍ରଉଦୟ ସମୟରେ, ଓଡ଼ିଶାର ବଲାଙ୍ଗୀର ସହରରେ ତାଙ୍କର ଜନ୍ମ । ସେହି ସହରର ସ୍କୁଲ ଓ କଲେଜରେ ସେ ତାଙ୍କର ସ୍ନାତକ ଉପାଧି ପାଇବା ପର୍ଯ୍ୟନ୍ତ ଛାତ୍ରଥିଲେ । ତେଣୁ ପଶ୍ଚିମ ଓଡ଼ିଶାର ଭାଷା, ଭାବ ଚଳଣୀ ଓ ସଂସ୍କୃତି ସହିତ ସେ ଓତପ୍ରୋତ ଭାବରେ ଜଡ଼ିତ । ସେଠିକା ମାଟି, ପାଣି, ପବନ ଓ ଜୀବଜନ୍ତୁଙ୍କ କଥା ସେ ଭଲଭାବରେ ବୁଝିପାରନ୍ତି । ସ୍ନାତକୋତ୍ତର ଶିକ୍ଷାପାଇଁ ଲକ୍ଷ୍ନୌର କ୍ୟାନିଂ କଲେଜର ଛାତ୍ର ଥିବା ସମୟରେ ସେ ତାଙ୍କର ନିଜ ବିଷୟ ଇଂରାଜୀ ଭାଷା ସାହିତ୍ୟ ବ୍ୟତୀତ କଳା, ସ୍ଥାପତ୍ୟ ଓ ଶରୀର ଚର୍ଚ୍ଚା ବିଷୟରେ ଯଥେଷ୍ଟ ରୁଚି ଦେଖାଇଥିଲେ । ସେହି ସମୟରୁ ତାଙ୍କର ସୃଜନଶୀଳ ବ୍ୟକ୍ତିତ୍ୱର ପରିସ୍ଫୁଟନ ହୋଇଥିଲା ।

୧୯୫୨ ମସିହାରେ ବ୍ରହ୍ମପୁର ଖଲିକୋଟ କଲେଜ, ୧୯୫୯ରେ ବାରିପଦା ମହାରାଜା ପୂର୍ଣ୍ଣଚନ୍ଦ୍ର କଲେଜ, ୧୯୬୩ରେ ଜୟପୁରର ବିକ୍ରମ ଦେବ କଲେଜରେ ସଫଳତାର ସହିତ ଅଧ୍ୟାପନା କରିସାରିବା ପରେ ପୁରୀର ସାମନ୍ତ ଚନ୍ଦ୍ରଶେଖର କଲେଜରେ ଅବସ୍ଥାପିତ ହେବା ସମୟରେ ମୁ ତାଙ୍କୁ ପ୍ରଥମେ ଦେଖିଲି । ଯୁବକ ଅବସ୍ଥାରେ ଓଡ଼ିଶାର

ଏ ମୁଣ୍ଡରୁ ସେ ମୁଣ୍ଡ ଯାଏ ବୁଲିବା ଯୋଗୁ ସବୁ ଅଞ୍ଚଳର ଭାଷା ଓ ଚଳଣୀର ପ୍ରଭାବ ପଡ଼ିଛି ତାଙ୍କ ଲେଖାରେ । ସବୁ ଅଞ୍ଚଳର ଚରିତ୍ର ଓ ଚଳଣୀ ସହିତ ଅଧ୍ୟାପକ ଚନ୍ଦ୍ରଶେଖର ରଥ ପ୍ରତ୍ୟକ୍ଷ ସଂପର୍କ ରଖିଥିବାରୁ ତାଙ୍କ ଲେଖାଗୁଡ଼ିକର ଭାଷାରେ ବହୁ ବୈଚିତ୍ର୍ୟ ଦେଖାଯାଏ । ବେଳେ ବେଳେ ସଂପୂର୍ଣ୍ଣ ନୂଆଶବ୍ଦଟିଏ ପାଠକକୁ ଚକିତ କରିଦିଏ । ଗଳ୍ପ ମାନଙ୍କର ଚରିତ୍ର ଚିତ୍ରଣ, ଘଟାଣା ବିନ୍ୟାସ ଓ ଶୈଳୀରେ ଅନେକ ବିବିଧତା ମୋତେ ତାଙ୍କ ଲେଖାପ୍ରତି ଆକର୍ଷିତ କରୁଥିଲା । ଲଳିତ ନିବନ୍ଧର ଭାବ ଓ ସାରମର୍ମକୁ ଆଶ୍ରାକରି ସେ ଯେଉଁ ଭାଷା ବ୍ୟବହାର କରୁଥିଲେ ତାହା ସବୁବେଳେ ସରଳ ଓ ମାର୍ଜିତ ଜଣାପଡୁଥିଲା । ସେଥିପାଇଁ ସୁଖପାଠ୍ୟ ହେଉଥିଲା ।

ଗଳ୍ପ ଲେଖାର ଗ୍ୱତୁରୀ ତାଙ୍କର ଅନବଦ୍ୟ । ଗଭୀର ମାନବବାଦୀ ଚିନ୍ତା ଓ ଚେତନାରୁ ତାଁଙ୍କ କଳ୍ପାନାରେ ଚରିତ୍ରଟିଏ ସୃଷ୍ଟି ହେଲେ ସେ ତାହାକୁ ଏପରି ଚିତ୍ରରୂପ ଦିଅନ୍ତି ଯେ ପାଠକର ଆଖିରେ ଦାଉଦାଉ ହୋଇ ତାହା ଦେଖାଯାଏ । ଚରିତ୍ରଟିର ଗ୍ୱଲିଚଳଣ, ବେଶଭୂଷା ପାଠକ ଯେମିତି ଅନୁଭବ କରିପାରେ,ତାହା ତାଙ୍କ ଲେଖାର ମୂଳଆଧାର ହୋଇ ରହେ । ମୋ ପାଇଁ, ତାଙ୍କର ଅଧିକାଂଶ ଗଳ୍ପରେ ଗୋଟିଏ ଚଳଚିତ୍ରର ଚିତ୍ରନାଟ୍ୟ ସବୁବେଳେ ଝଲସି ଉଠେ ।

**ମୁଁ ସତ୍ୟଧର୍ମ କହୁଛି :-**

ଅଧ୍ୟାପକ ଚନ୍ଦ୍ରଶେଖର ରଥଙ୍କୁ ଦେଖିଲେ ଜଣାପଡ଼େ ସେ ସ୍ୱାସ୍ଥ୍ୟ ସଚେତନ । ବଂଶଗତ ଲକ୍ଷଣରୁ ଜଣେ ଖେଳପ୍ରିୟ ଓ କସରତ୍ ପ୍ରିୟ ବ୍ୟକ୍ତି । ସେ ଜଣେ ଭଲ ଡିସ୍‌କସ୍, ସଟ୍‌ଫୁଟ୍ ଓ ଜେଭେଲିନ୍‌ଆଥେଲେଟ୍ । ବିଶ୍ୱବିଦ୍ୟାଳୟ ଶିକ୍ଷା ପର୍ଯ୍ୟନ୍ତ ଟେନିସ୍ ଓ ଭଲିବଲ ପରି ଖେଳରେ ବିଶେଷ ରୁଚି ରଖୁଥିଲେ । ପୂର୍ବ ପୁରୁଷଙ୍କ କୃପାରୁ ଶାସ୍ତ୍ର ଓ ପୁରାଣ ସାହିତ୍ୟ ସହିତ ବାଲ୍ୟକାଳରୁ ଓତପ୍ରୋତ ଭାବରେ ଜଡ଼ିତଥିଲେ । ଯୋଗାସନ ଓ ପ୍ରାଣାୟାମ କରି ଶରୀରକୁ ନିର୍ମଳ ଓ ଅନ୍ତରକୁ ପବିତ୍ର କରି ରଖିବା ତାହାଙ୍କୁ ତାଙ୍କ ସଂସ୍କାର ଶିଖାଇଛି ।

ଯୁବ ଅବସ୍ଥାରେ ସେ ଖାଦ୍ୟପ୍ରିୟ ଥିଲେ । ଧୀରେ ଧୀରେ ତାଙ୍କର ପାରିବାରିକ ସଂସ୍କାର ଓ ସଂସ୍କୃତି ଭାଷା ତାଙ୍କୁ ଆଧ୍ୟାତ୍ମିକ ଭାବନାରେ ପ୍ରଭାବିତ କରିଛି । ଏ ସବୁରେ ସାଧାରଣ ଭାବରେ, ତାଙ୍କ ବ୍ୟବହାରରେ ଜଣା ପଡ଼େ ନାହିଁ । କିନ୍ତୁ ଥରେ କଥାକହିବା ଆରମ୍ଭ କଲେ ପ୍ରତ୍ୟେକ କଥାରେ ଭାରତୀୟ ସଂସ୍କୃତି, ପରଂପରା ଓ ଶାସ୍ତ୍ରୀୟତା ଉପରେ ଯେପରି ଉଦାହରଣ ଦେବାର ଆରମ୍ଭ କରନ୍ତି, ସେତେବେଳେ ଜଣାପଡ଼େ ସେ ଜଣେ

ଇଂରାଜୀ ଅଧ୍ୟାପକ ନୁହଁନ୍ତି; ଭାରତୀୟ ଦର୍ଶନ ଶାସ୍ତ୍ରର ଜଣେ ଓଡ଼ିଆ ଅଧ୍ୟାପକ । ତାଙ୍କର ଜ୍ଞାନ କେବଳ ପାଣ୍ଡୁଲିପି ଆଧାରିତ ଓ କଣ୍ଠସ୍ଥ ନୁହେଁ; ସେ ଯେମିତି ତାଙ୍କ ଶରୀରର ପରୀକ୍ଷାଗାରରେ ପରିକ୍ଷିତ ସତ୍ୟଟିକୁ ଆମ ଆଗରେ ଉପସ୍ଥାପିତ କରୁଛନ୍ତି ।

୧୯୭୦ ମସିହାରେ ସେ ଭୁବନେଶ୍ୱରର ବକ୍ସି ଜଗବନ୍ଧୁ କଲେଜର ଉପାଧ୍ୟକ୍ଷଭାବରେ ଅବସ୍ଥାପିତ ହେଲେ । ସେତେବେଳେ ପ୍ରଫେସର ବିଧୁଭୂଷଣ ଦାସ ଓଡ଼ିଶାର ଉଚ୍ଚ ଶିକ୍ଷା ବିଭାଗର ନିର୍ଦ୍ଦେଶକ ଭାବରେ କେତୋଟି ନୂତନ ଧାରାର ପ୍ରୟୋଗ କରିଥିଲେ । ତାହା ଫଳରେ ପ୍ରାୟ ଶହେଟି ସରକାରୀ ଓ ବେସରକାରୀ କଲେଜ ଅଧ୍ୟକ୍ଷମାନଙ୍କ ସହିତ ସିଧାସଳଖ ଯୋଗାଯୋଗ କରିବାର ଉପାୟମାନ ଅବଲମ୍ବନ କରିଥିଲେ । ଲେସନ୍‌ପ୍ଲାନ, ପ୍ରୋକ୍ଟରିଏଲ ସିଷ୍ଟମ, ଆର୍ଥିକ ବ୍ୟବସ୍ଥା, ଛାତ୍ର ଶୃଙ୍ଖଳା ବିଷୟରେ ତାଙ୍କ ସହିତ ଯୋଗାଯୋଗ କରିବା ପାଇଁ ସେ ପାକ୍ଷିକ ଓ ମାସିକ ଅଧ୍ୟକ୍ଷମାନଙ୍କର ଗୋପନୀୟ ରିପୋର୍ଟ ପଠାଇବାର ଏକ ବ୍ୟବସ୍ଥା ପ୍ରଚଳନ କରିଥିଲେ । ବେଳେବେଳେ ଏଥିପାଇଁ ଭୁବନେଶ୍ୱର ଉଚ୍ଚଶିକ୍ଷା ନିର୍ଦ୍ଦେଶାଳୟକୁ ଆସି କଲେଜର ସମସ୍ୟା ସମାଧାନ କରିବାକୁ ସବୁ ଅଧ୍ୟକ୍ଷ ବାଧ୍ୟ ହେଉଥିଲେ । ଏ ସୁଯୋଗରେ ନିର୍ଦ୍ଦେଶାଳୟ ବହୁ ଅଭିଜ୍ଞତା ସଂପନ୍ନ ଉପନିର୍ଦ୍ଦେଶକ ମାନଙ୍କ ସହିତ ବ୍ୟକ୍ତିଗତ ସଂପର୍କ ରଖିବାକୁ ମୋତେ ସୁଯୋଗ ମିଳିଥିଲା । ମେଜର ଗୁରୁପ୍ରସାଦ ମହାନ୍ତି, ପ୍ରଫେସର ରାଜେନ୍ଦ୍ର ପ୍ରସାଦ ଦାସ, ମେଜର ଧୀରେନ୍ଦ୍ର ସାମନ୍ତରାୟ ଓ ପ୍ରଫେସର ଚନ୍ଦ୍ରଶେଖର ରଥପରି ଶିକ୍ଷାବିତ୍ ପ୍ରଶାସକ ମାନେ ମୋତେ ବହୁଭାବରେ ପ୍ରଭାବିତ କରିଥିଲେ ।

୧୯୭୧ ରୁ ୧୯୭୫ ମସିହା ପର୍ଯ୍ୟନ୍ତ ଟିଟିଲାଗଡ଼ ଡି.ଏ.ଭି. କଲେଜର ଅଧ୍ୟକ୍ଷ ଓ ତାପରେ ଭୁବନେଶ୍ୱର ବକ୍ସି ଜଗବନ୍ଧୁ କଲେଜର ଉପାଧ୍ୟକ୍ଷ, ଟେକ୍ସଟ୍ ବୁକ୍ ବୋର୍ଡ଼ରେ ସଂପାଦକ ଓ ଉଚ୍ଚଶିକ୍ଷା ବିଭାଗର ଉପନିର୍ଦ୍ଦେଶକ ଭାବରେ ତାଙ୍କର ଭୁବନେଶ୍ୱର ରହଣି ମୋତେ ତାଙ୍କର ନିକଟତର କରିଥିଲା ।

**ମଧୁ ସନ୍ଧାନ :-**

ମେର ଏକମାତ୍ର ବଡ଼ଭଉଣୀଙ୍କ ସ୍ୱାମୀ ଶ୍ରୀ ଧନଞ୍ଜୟ ହୋତା ଓଡ଼ିଶା ସରକାରଙ୍କ ପରିସଂଖ୍ୟାନ ବିଭାଗର ଉପନିର୍ଦ୍ଦେଶକ ଭାବରେ ବହୁଦିନ ଯାଏ ଭୁବନେଶ୍ୱରରେ ଅବସ୍ଥାପିତ ଥିଲେ । ସେ ୟୁନିଟ୍ ନଅର ଗ୍ୱରିଟିକିଆ ଫ୍ଲାଟ ଘରେ ରହୁଥିଲେ । ପ୍ରଫେସର ଚନ୍ଦ୍ରଶେଖର ରଥ ମୋ ଭିଣେଇ ଘର ଠିକ ପଛପଟ କ୍ୱାଟର୍ସରେ ରହୁଥିଲେ । ଲରମ୍ବା କଲେଜର ଅଧ୍ୟକ୍ଷ ଓ ପରିଗ୍ୱଳନା ସମିତିର ସଂପାଦକ ଭାବରେ ଭୁବନେଶ୍ୱରକୁ ମାସରେ

ଥରେ ଦୁଇଥର କଲେଜ କାମରେ ମୋତେ ଆସିବାକୁ ପଡୁଥିଲା । ତେଣୁ ପ୍ରତ୍ୟେକ ଥର ପ୍ରଫେସର ଚନ୍ଦ୍ରଶେଖର ରଥଙ୍କ ସହିତ ଅନ୍ତରଙ୍ଗ ଆଳାପ କରିବାକୁ ମୋତେ ସୁଯୋଗ ମିଳୁଥିଲା ।

ଏ ସମୟ ମଧ୍ୟରେ ପ୍ରଫେସର ଚନ୍ଦ୍ରଶେଖର ରଥଙ୍କ ଶାରୀରିକ ସ୍ତରର ପହିଲମାନଟି ମୋ ଆଖିରେ ଗୋଟିଏ ବାର୍ଡ଼ ଅଫ୍ ପାରାଡ଼ାଇଜ'ରେ ପରିଣତ ହୋଇଗଲେ । ସାହିତ୍ୟ, ଜୀବନ ଜିଜ୍ଞାସା, ସାମାଜିକ ଦ୍ୱନ୍ଦ, କଳା, ସ୍ଥାପତ୍ୟ, ସଂସ୍କୃତି, ଦର୍ଶନ ଓ ଆଧ୍ୟାତ୍ମବାଦ ଉପରେ ଖୋଲାଖୋଲି ଆଲୋଚନା କରିବାକୁମୋତେ ବହୁ ସୁଯୋଗ ମିଳିଲା । ସେତେବେଳେ ଜାଣିଲି, ପ୍ରଫେସର ରଥ ତାଙ୍କର ନିକଟତର ବ୍ୟକ୍ତିଟି ପାଖରେ ଉଦ୍‌ଘାଟିତ ହୁଅନ୍ତି ମନ୍ଥର ଗତିରେ । ସେ ଜଣେ ପ୍ରଗ୍ରର ବିମୁଖ ବ୍ୟକ୍ତି । ସ୍ଥାନ, କାଳ, ପାତ୍ରକୁ ଆଧାରକରି ସେ ଆକାଶପରି ବହୁବର୍ଣ୍ଣୀ ହୋଇ ଯାଆନ୍ତି । ସ୍ୱର୍ଗୀୟ ପକ୍ଷୀଟିର ବହୁବର୍ଣ୍ଣୀ ପକ୍ଷ ପରି ଝଲସି ଯାଏ ତାଙ୍କର ବୌଦ୍ଧିକତା ଓ ମାନବ ବାଦୀ ଆତ୍ମୀୟତା ।

**ଉତ୍ତର ଅରଣ୍ୟ :—**

ଶିକ୍ଷାବିଭାଗର କାର୍ଯ୍ୟରତ ଲୋକମାନଙ୍କୁ ଆମ ପ୍ରଦେଶରେ ଏକ ଭିନ୍ନ ନିକିତିରେ ତଉଲାଯାଏ । ଉକ୍ତ ଶିକ୍ଷା ବିଭାଗରେ ଯଦିଓ ଅଧ୍ୟାପକମାନେ ରେଡକ୍ରସ, ରୋଭର୍ସ, ଏନ୍.ଏସ.ଏସ୍. ପରି ସଂସ୍ଥାରେ ଇଚ୍ଛାଧୀନ ଭାବରେ ଯୋଗ ଦିଅନ୍ତି, ସେମାନଙ୍କର ଆନ୍ତରିକତା ବିଷୟରେ ମୋର ସେତେ ଆସ୍ଥା ଜନ୍ମିନାହିଁ । ଗୋଟିଏ ବ୍ୟତିକ୍ରମ ହେଉଛନ୍ତି ପ୍ରଫେସର ରଥ ।

ସେମିତି ଆଉ ଏକ ସଂସ୍ଥା ହେଉଛି ଜାତୀୟ ସମର ଶିକ୍ଷାର୍ଥୀ ବାହିନୀ । ଅଧ୍ୟାପକ ଚନ୍ଦ୍ରଶେଖର ରଥ ୧୯୫୭ରୁ ୧୯୬୧ ପର୍ଯ୍ୟନ୍ତ ସମର ଶିକ୍ଷାର୍ଥୀ ବାହିନୀର ଜଣେ ନୌବିଭାଗ ଅଫିସର ଭାବରେ କୋଚିନ୍‌ଠାରେ ଶିକ୍ଷାପାଇ ଅଧିଷ୍ଠିତ ଥିଲେ । ତା'ପରେ ନାଗପୁର ଠାରେ ସମର ଶିକ୍ଷାର୍ଥୀ ବାହିନୀର ପଦାତିକ ବିଭାଗର ଅଫିସର ଭାବରେ ୧୯୬୧ ମସିହାରେ ଶିକ୍ଷାନେଇ ୧୯୬୮ ମସିହା ପର୍ଯ୍ୟନ୍ତ କାର୍ଯ୍ୟରତ ଥିଲେ । ୧୯୬୯ ମସିହାରେ ଦିଲ୍ଲୀର ଗଣତନ୍ତ୍ର ଦିବସ ପ୍ୟାରେଡ୍ ପାଇଁ ସର୍ବଭାରତୀୟ ଶିବିରରେ ଜଣେ ଅଫିସର ଭାବରେ ଯୋଗ ଦେବାର ସୌଭାଗ୍ୟ ତାଙ୍କର ହୋଇଥିଲା । ଦେଶାତ୍ମବୋଧ ଓ ଶୃଙ୍ଖଳା ପ୍ରତି ଆସକ୍ତ ନହେଲେ ଯେକୌଣସି ଅଧ୍ୟାପକ, ଜାତୀୟ ସମର ଶିକ୍ଷାର୍ଥୀ ବାହିନୀରେ ଯୋଗଦେଇ ସାହିତ୍ୟ ସେବା ଓ ଅଧ୍ୟାପନା ନିଷ୍ଠାପର ଭାବରେ କରିବା ସମ୍ଭବ ନୁହେଁ । ଏ ଶୃଙ୍ଖଳା ଜ୍ଞାନ ତାଙ୍କ କ୍ଷେତ୍ରରେ କେତେଦୂରର ତାଙ୍କର ଗଳ୍ପ, ଲଳିତ

ନିବନ୍ଧ ଓ ଉପନ୍ୟାସକୁ ପ୍ରଭାବିତ କରିଛି, ତାହା ତାଙ୍କର ଲେଖାରୁ ଜଣାପଡ଼େ । ୧୯୭୮ ମସିହାରୁ ୧୯୯୨ ମସିହା ପର୍ଯ୍ୟନ୍ତ ପ୍ରକାଶ ପାଇଥିବା ତେରଟି ଗଳ୍ପ ସଂକଳନର ଗଳ୍ପମାନଙ୍କୁ ଅନୁଧ୍ୟାନ କଲେ ପ୍ରଫେସର ରଥଙ୍କର ଭାଷା ବିନ୍ୟାସ, ଚରିତ୍ର ଚିତ୍ରଣ,ଭାବଗତ ଆବେଗ, ଆଙ୍ଗିକ ପ୍ରସାଧନ ଓ ଉପସ୍ଥାପନରୁ; ପାରିବାରିକ ଓ ସାମାଜିକ ଜୀବନରେ ସେ କେତେ ଶୃଙ୍ଖଳିତ ତାହାର ଆଭାସ  ବିଦଗ୍ଧ ପାଠକଟିଏ ଉପଲବ୍ଧି କରିପାରେ । ଅର୍ଦ୍ଧ ଶତାବ୍ଦୀ ଯାଏ ସେ ସେମିତି ଜଣେ ଅପରିବର୍ତ୍ତିତ ଶୃଙ୍ଖଳିତ ସାଂସ୍କୃତିକ ପହିଲମାନ ଭାବରେ ତାଙ୍କର ଗୁଣଗ୍ରାହୀ ଛାତ୍ରଛାତ୍ରୀ ଓ ସ୍ତାବକମାନଙ୍କ ପାଖରେ ପରିଚୟ ପାଉଛନ୍ତି ।

**ଅଶ୍ରୁତ ସ୍ୱର :—**

ଦୁର୍ଭାଗ୍ୟକୁ ଓଡ଼ିଶାର ଚଳଚିତ୍ର ଓ ନାଟକ କ୍ଷେତ୍ରରେ ଓଡ଼ିଆ ଗଳ୍ପ ଉପନ୍ୟାସଓ ନାଟକ କ୍ଷେତ୍ରରେ ସୃଜନଶୀଳତା ଦେଖା ଯାଉ ନାହିଁ । ଓଡ଼ିଆ ପାଣିପବନରେ ଗଢ଼ିଉଠୁଥିବା ଜୀବନର ଚରିତ୍ର ଚିତ୍ରଣକୁ ନେଇ ଚଳଚିତ୍ର ବା ଟେଲିଭିଜନ ଧାରାବାହିକ ପ୍ରଯୋଜିତ ହେଉନାହିଁ । ପ୍ରଫେସର ରଥଙ୍କର ଅସୂର୍ଯ୍ୟ ଉପନିବେଶ ଓଡ଼ିଆ ସାହିତ୍ୟ ଏକାଡେମୀ ଦ୍ୱାରା ପୁରସ୍କୃତ ହେବାପରେ ତାହାକୁ ଚଳଚିତ୍ର ରୂପଦେବା ପାଇଁ ତାଙ୍କର ଓ ମୋର ଏକ ଯୋଜନା ପୃଷ୍ଟପୋଷକ ଓ ପ୍ରଯୋଜକ ଅଭାବରୁ ଆଗେଇ ପାରିନାହିଁ । ସେହିପରି ପିତୃମେଧ ଗଳ୍ପଟିକୁ ଟେଲି ସିରିଏଲ୍ କରିବାର ଏକ ପ୍ରସ୍ତାବ ଚଞ୍ଚକତା ଯୋଗୁଁ ବାଧାପ୍ରାପ୍ତ ହୋଇଛି । ପ୍ରଫେସର ରଥଙ୍କର ବହୁଲେଖା ଭାରତୀୟ ଅନ୍ୟାନ୍ୟ ଭାଷାରେ ଅନୁବାଦିତ ହେଲେ ମଧ୍ୟ ଆଜିଯାଏ ଓଡ଼ିଶାର ଓଡ଼ିଆ ପ୍ରଯୋଜକ ନିଜ ଭାଷା ଓ ସାହିତ୍ୟ ପ୍ରତି ଅନୁରକ୍ତି ଓ ଆସ୍ଥା ଦେଖାଇ ନାହାଁନ୍ତି । ଖୁବ୍ ନିକଟରେ ତାଙ୍କର କେତୋଟି ସାହିତ୍ୟ କୃତିକୁ ଟେଲି ସିରିଏଲ ଭାବରେ ପ୍ରଯୋଜିତ କରାଯାଉଛି । ତଥାପି ପ୍ରତିଷ୍ଠିତ ପ୍ରଯୋଜକ ତାଙ୍କର କୃତିକୁ ଚଳଚିତ୍ରରେ ରୂପାନ୍ତରିତ କରିବାର ସାହାସ କରିନାହାନ୍ତି । ଉତ୍କୃଷ୍ଟ କଳାର ଦେଶରେ ଦାରିଦ୍ର୍ୟର ପ୍ରକୃତ ସ୍ୱରୂପ ଏହିଠାରେହିଁ ପ୍ରକାଶ ପାଏ ।

**କ୍ରୀତଦାସର ସ୍ୱପ୍ନ :—**

ମୋର ଚବିଶବର୍ଷର ଲମ୍ବା କଲେଜର ଅଧ୍ୟକ୍ଷତା ପରେ ୧୯୯୨ ମସିହାରେ ସରକାର ମୋତେ ଭୁବନେଶ୍ୱର ସ୍ଥିତ ସଂଗୀତ ମହାବିଦ୍ୟାଳୟର ଅଧ୍ୟକ୍ଷତା ଦେଲେ । ଗ୍ଧକିରୀ ଜୀବନର ଶେଷ ଦୁଇବର୍ଷ ମୋତେ ସରକାରଙ୍କ ଦୟାରୁ ଭୁବନେଶ୍ୱରରେ ଅସ୍ଥାୟୀ ଭାବରେ ସ୍ଥାୟୀ ହୋଇ ରହିବାକୁ ବାଧ୍ୟ କରିଛି । ବିଗତ ଦଶବର୍ଷ ମଧ୍ୟରେ, କଳା ଓ ସଂସ୍କୃତିର ଏପରି କୌଣସି ବିଭାଗ ନାହିଁ ଯେଉଁ ବିଷୟରେ ପ୍ରଫେସର ରଥ ମୋତେ

ପ୍ରଭାବିତ କରିନାହାଁନ୍ତି । ଏ ସମୟ ମଧ୍ୟରେ ବହୁ ସଭା, ସମିତି, ସମ୍ମାନ ଓ ଆଲୋଚନାରେ ଭାଗ ନେବାର ସୌଭାଗ୍ୟ ମୋତେ ମିଳିଛି । ଜୟଦେବଙ୍କ ଲଳିତ କୋମଳ ଆଦି ରସଧର୍ମୀ କାବ୍ୟ ସୃଷ୍ଟିଠାରୁ ବିବେକାନନ୍ଦଙ୍କ ପ୍ରଗାଢ଼ ଭାରତୀୟ ଆତ୍ମ ଦର୍ଶନ, ଉତ୍କଳୀୟ ଓଡ଼ିଶୀ ନୃତ୍ୟର ବୈଶିଷ୍ଟ୍ୟଠାରୁ ଦେବୀପ୍ରସାଦ, କାଳୀକିଙ୍କର ଓ ରୋଦାଁଙ୍କର ଆଧୁନିକ ସ୍ଥାପତ୍ୟ କଳାଚର୍ଚ୍ଚା; ପାଶ୍ଚାତ୍ୟ ଜଗତର ସୁବିଖ୍ୟାତ ଗଳ୍ପ ଲେଖକଙ୍କ ଠାରୁ ଶ୍ରୀ ଅରବିନ୍ଦ ଓ ଶ୍ରୀମାଙ୍କ ଦର୍ଶନର ଗୂଢ଼ ରହସ୍ୟ ପର୍ଯ୍ୟନ୍ତ; ଭାରତୀୟ ଶାସ୍ତ୍ରରେ ବର୍ଣ୍ଣିତ ମର୍ଯ୍ୟାଦା ପୁରୁଷ ଶ୍ରୀରାମଚନ୍ଦ୍ରଙ୍କ ଠାରୁ ମାଧୁର୍ଯ୍ୟ ପୁରୁଷ ଶ୍ରୀକୃଷ୍ଣଚନ୍ଦ୍ରଙ୍କ ବିବିଧତା ଓ ଜଗନ୍ନାଥ ସଂସ୍କୃତିରେ ତାହାର ପ୍ରଭାବ ଆଦି ବିସ୍ତୃତ ଭୂମିରେ ତାଙ୍କର ସାରଗର୍ଭକ ଭାଷଣ ମୋତେ ଅଭିଭୂତ କରି ରଖିଛି । ଆଧୁନିକ ଅପସଂସ୍କୃତିର ପ୍ରଗ୍ରର ଯୋଗୁଁ ଉତ୍କଳୀୟ ପରଂପରାରେ ଅଭାବନୀୟ ଓଡ଼ିଶୀ ପଲ୍ଲୀ ସଂସ୍କୃତିର ଅବକ୍ଷୟ ବିଷୟରେ ସମଭାବାପନ୍ନ ବିତର୍କରେ ଭାଗନେଉଥିବା ତାଙ୍କର ଜଣେ ଅନ୍ତରଙ୍ଗ ବନ୍ଧୁ ଭାବରେ ମୁଁ ନିଜକୁ ମୂଲ୍ୟାୟନ କରୁଛି ।

**ରଥ ସପ୍ତକ** :— ୧୯୭୧ ମସିହାର ଏକ ଘଟଣା । ଏକ ମହାର୍ଘ ମୁହୂର୍ତ୍ତ । ଏକ ଯୋଗ । ଆମ ଦୁଇଜଣଙ୍କ ମଧ୍ୟରେ ଏକ ଭାବାବେଶ ସୃଷ୍ଟି କରିଥିଲା । ତାହା ଘଟିଥିଲା ଲରମ୍ବା ମହାବିଦ୍ୟାଳୟର ବାର୍ଷିକ ଉତ୍ସବର ସାଂସ୍କୃତିକ ସମାବେଶରେ । ଲରମ୍ବା ମହାବିଦ୍ୟାଳୟ ଛାତ୍ର ସଂସଦର ବାର୍ଷିକ ଉତ୍ସବରେ ପ୍ରଫେସର ରଥ ଟିଟିଲାଗଡ଼ ଡି.ଏ.ଭି. ମହାବିଦ୍ୟାଳୟ ଅଧ୍ୟକ୍ଷ ଭାବରେ ମୁଖ୍ୟ ଅତିଥି ଓ ବକ୍ତା ରୂପରେ ନିମନ୍ତ୍ରିତ ହୋଇ ଆସିଥିଲେ । ସେହି ଉତ୍ସବରେ ସାଂସ୍କୃତିକ କାର୍ଯ୍ୟକ୍ରମରେ ମୁଖ୍ୟ ଆକର୍ଷଣ ଥିଲେ ସ୍ୱନାମଧନ୍ୟ ଗାୟକ ଓ ସଂଗୀତ ନିର୍ଦ୍ଦେଶକ ଶ୍ରୀ ପ୍ରଫୁଲ୍ଲ କର ।

ଅଧ୍ୟକ୍ଷ ରଥଙ୍କ ଶ୍ରୀ ଜଗନ୍ନାଥଙ୍କ ପ୍ରତି ପ୍ରଗାଢ଼ ଭକ୍ତି ଓ ଅନୁରକ୍ତି ସେ ସନ୍ଧ୍ୟାରେ ଆମ ଦୁଇଜଣଙ୍କ ମଧ୍ୟରେ ସମଭାବରେ ଭାବାବେଶ ସୃଷ୍ଟି କରିଥିଲା; ସଂଗୀତଜ୍ଞ କର ନିବିଷ୍ଟ ଚିତ୍ତରେ ଯେତେବେଳେ 'ମୁଁ କ୍ଷେତ୍ର ଯିବି' ଜଗନ୍ନାଥ ଜଣାଣଟି ସେ ଭରପୁର ସଭାଗୃହରେ ବୋଲିଥିଲେ । ପ୍ରଫେସର ରଥଏ ପୁରାତନ ରଚନା ବିଷୟରେ ଅବଗତ ଥିଲେ ମଧ୍ୟ ଶ୍ରୀକରଙ୍କ ଗାୟନ ପଦ୍ଧତି ମଧ୍ୟରେ ଭୂମିରୁ ଭୂମା ପର୍ଯ୍ୟନ୍ତ, ଅଣୁରୁ ଅନ୍ତରୀକ୍ଷ ପର୍ଯ୍ୟନ୍ତ ଭକ୍ତିରସର ପ୍ରାବଲ୍ୟରେ ସେ ଅଭିଭୂତ ହୋଇଯାଇଥିଲେ । ଏହା ଆମ ଦୁଇଜଣଙ୍କୁ ସମଭାବରେ ଆକ୍ରାନ୍ତ କରିଥିଲା । ସେ ଥିଲେ ବାଙ୍ମୟ ଓ ମୁଁ ଥିଲି ମୁକ । ତା'ପରଦିନ ଟିଟିଲାଗଡ଼ ଫେରିଯାଇ ସେ "ରଥସପ୍ତକ" ର ପ୍ରଥମ ସନ୍ଦର୍ଭଟି ରଚନା କରିଥିଲେ ।

ତେରବର୍ଷ ଯାଏ ଏ ଭକ୍ତିରସାତ୍ମକ ସଂଗୀତଟି ପ୍ରଫେସର ରଥଙ୍କୁ ଭକ୍ତିରସରେ ରସାପ୍ଳୁତ କରି ରଖିଥିଲା । ସୃଷ୍ଟି ହୋଇଥିଲା ଏକ ଅନବଦ୍ୟ ଓ ଅମୂଲ୍ୟ ଓଡ଼ିଆ ଗଦ୍ୟ ସାହିତ୍ୟର କୃତି । ପ୍ରଫେସର ରଥ, ରଥସପ୍ତକ ପାଇଁ ଓଡ଼ିଆ ସାହିତ୍ୟରେ ଅମର ହୋଇ ରହିଗଲେ ।

ମୋର ସମସ୍ତ ମାନସିକ ଚିନ୍ତା ଓ ସମସ୍ୟା ଦୂରକରିବାରେ ଏକମାତ୍ର ମହୌଷଧି ଭାବରେ 'ରଥସପ୍ତକ'' ମୋ ପାଖରେ ସବୁବେଳେ ଥାଏ । ଗଦ୍ୟ ରଚନା ମଧ୍ୟରେ ଭକ୍ତିରସକୁ ଏପରି ପ୍ରଭାବଶାଳୀ ଭାବରେ ପରିବେଷଣ କରିବାର ନିଦର୍ଶନ ପ୍ରଫେସର ରଥଙ୍କ ବ୍ୟତୀତ ଆଉ କେହି କରିଥିବେ ତାହା ବିଶ୍ୱାସ କରି ହେଉ ନାହିଁ ।

**ହୁକୁମ୍ ନାମା** :- ସହଜ, ସରଳ, ଖୁସିବାସିଆ, ନିତ୍ୟାନନ୍ଦରେ ବଞ୍ଚିଥିବା ଲୋକଟି ଭିତରେ ଏବେ ଆଉ ମାଷ୍ଟିଆ ଗୁଣ କିଛି ନାହିଁ । ବିରାଟ ବପୁର ଗୋଟିଏ ହାତରେ ଗଣ୍ଡେପାଞ୍ଚଟା ବେଆଡ଼ା ଟୋକାଙ୍କୁ ସାବାଡ଼ କରିବା କାର୍ଯ୍ୟ ଆଉ କରିବାକୁ ପଡୁନାହିଁ । ଅଥବା ପ୍ରତିଦିନ ଅସମୟରେ କେତେଜଣ ବୌଦ୍ଧିକ ଅନ୍ୱେଷଣ କରୁଥିବା ଛାତ୍ରଛାତ୍ରୀଙ୍କୁ ଆନ୍ତରିକ ସ୍ତରରେ ଶିକ୍ଷାଦାନ କରିବାର ଗୁରୁଦାୟିତ୍ୱଟି ସମାପନ କରିବାକୁ ପଡୁନାହିଁ । ତଥାପି, ବହୁପୁରାତନ ଛାତ୍ରଛାତ୍ରୀ ଓ ହଜାର ହଜାର ପ୍ରଶଂସକ ଓ ସ୍ତାବକଙ୍କ ଶ୍ରଦ୍ଧା ଓ ସ୍ନେହର ନିମନ୍ତ୍ରଣରେ ସେ କଲିକତା, ଋଷିକେଷ, ପାଟଣା, ଲକ୍ଷ୍ନୌ, ଏପରିକି ଆମେରିକା ଓ କାନାଡ଼ାର ବହୁ ନଗରୀର ସାଂସ୍କୃତିକ ଓ ଆଧ୍ୟାତ୍ମିକ ସମାବେଶର ଦିଗଦର୍ଶନ ଦେବାପାଇଁ ନିମନ୍ତ୍ରିତ ହେଉଛନ୍ତି । ଏବେବି ସେ ଅତ୍ୟନ୍ତ ବ୍ୟସ୍ତ ଓ କର୍ମଠ । ସାହିତ୍ୟ କ୍ଷେତ୍ରରେ ଏ ପହିଲମାନଟି ଏବେ ମଧ୍ୟ ଓଡ଼ିଆ ସଂସ୍କୃତି ଓ ଶାସ୍ତ୍ରୀୟତା ଉପରେ ନିଜର ସ୍ୱାଭିମାନକୁ ବଜାୟ ରଖିଛନ୍ତି । ତାଙ୍କର ପଞ୍ଚସ୍ତରୀତମ ଜୟନ୍ତୀ ଅବସରରେ ଓଡ଼ିଶାର ସାଂସ୍କୃତିକ ଆକାଶର ଏ ଧ୍ରୁବତାରାଟିର ମୂଲ୍ୟାୟନ ସରକାରୀ ସ୍ତରରେ ଯେ ଅବହେଳିତ ତାହାହିଁ ପରିଲକ୍ଷିତ ହୁଏ । ଯେତେବେଳେ ତାମିଲନାଡୁର ନୃତ୍ୟାଙ୍ଗନା, ଚଳଚିତ୍ର ଅଭିନେତ୍ରୀ ଓ ପଞ୍ଜାବର ପେଷାଦାର ପହିଲିମାନ ଚଳଛିତ୍ର ଅଭିନେତା ସର୍ବ ଭାରତୀୟ ସ୍ତରରେ ରାଜ୍ୟସଭାର ଆସନ ଅଳଙ୍କୃତ କରନ୍ତି । ଅଥଚ ଓଡ଼ିଶାର ଏ ସାଂସ୍କୃତିକ ପହିଲମାନଙ୍କର ନାମ ଉଚ୍ଚାରଣ ମଧ୍ୟ କେହି କରନ୍ତି ନାହିଁ । ହେ ପ୍ରଭୁ, ଦୃଷ୍ଟି ଓ ଦର୍ଶନର ପରିବର୍ତ୍ତନ ହେଉ । ପ୍ରଫେସର ରଥ ଦୀର୍ଘାୟୁ ହୁଅନ୍ତୁ ।

ଏଚ.ଆଇ.ଜି. - ୨୭,

ଚନ୍ଦ୍ରଶେଖରପୁର ଭୁବନେଶ୍ୱର

***

# ଓଡ଼ିଆ ପ୍ରବନ୍ଧ ସାହିତ୍ୟର 'ସତ୍ୟଧର୍ମୀ'

**ଡକ୍ଟର ବେଣୁଧର ପାଢ଼ୀ**

ସାହିତ୍ୟ ଏକ ସୂକ୍ଷ୍ମ 'କଳାକର୍ମ' ବୋଲି ଯାହା କୁହାଯାଇଛି, ତାହାକୁ ଯଥାର୍ଥ ବୋଲି ସମାଲୋଚକମାନେ ସ୍ୱୀକାର କରିଛନ୍ତି । ମାତ୍ର ସୁନାରେ ତିଆରି ଅଳଙ୍କାର ପରି ଅବିକଳ ଏହା । ସୂକ୍ଷ୍ମ କୁଟିକମ ଖଚିତ ଗହଣାରେ ସୁନା ଯେତିକି ଲାଗେ; ତା'ଠୁ କମ୍ ଲାଗେ ଖାଦ । ଏଇ ଖାଦ ଟିକକ ନ ଥିଲେ ଗହଣା ଗଢ଼ି ହୁଏ ନାହିଁ... ଅଳଙ୍କାର ବି ସୁନ୍ଦର ହୁଏ ନାହିଁ । ସୂକ୍ଷ୍ମତା ପାଇଁ ଅନିବାର୍ଯ୍ୟ କୋମଳତା ଓ ଲାଳିତ୍ୟ । ନହେଲେ ଗହଣା ହୁଏ ସ୍ଥୂଳ ଗଠନର ଶ୍ରମ ମାତ୍ର । ସେଇଥିପାଇଁ ବିନ୍ଧାଣୀ ଜାଣେ କେଉଁଠି କେତେ ସୁନା ରହିବ, କେତେବେଳେ କେତେ ଖାଦ ମିଶିବ । ଗହଣାର ରୂପ ଓ ସୌକୁମାର୍ଯ୍ୟକୁ ଗ୍ରହିଁ ଯେମିତି ଖାଦ ଓ ସୁନାର ଆନୁପାତିକ ସମନ୍ୱୟ; ଠିକ୍ ସେମିତି ସାହିତ୍ୟ ଓ ତାର କଳାରୂପ ।

ସୂକ୍ଷ୍ମ ଅଳଙ୍କାରକୁ ମନୋମତ ରୂପରେ କଳାତ୍ମକ କରିବାକୁ ହେଲେ ଲୋଡ଼ାହୁଏ ସୁନାର ନମନୀୟତା ! ଖାଦର କଠିନତା ତେଣୁ ସୂକ୍ଷ୍ମତାର ପରିପନ୍ଥୀ ! ସୂକ୍ଷ୍ମତା ପୁଣି, ସମ୍ବେଦନଶୀଳ ଓ ନଶ୍ୱର । କଠୋରତା ଯେଣୁ ବାସ୍ତବତା.... ଏହା ସତ୍ୟର ଅତି ନିକଟବର୍ତ୍ତୀ । ସାହିତ୍ୟର କର୍ମଟି ଠିକ୍ ଏହି ଗହଣା ଗଢ଼ିଲା ଭଳି; ସାହିତ୍ୟ-କଳାକୁ କରେ ଭିନ୍ନ ରୂପ । କବିତା... ସୂକ୍ଷ୍ମାତିସୂକ୍ଷ୍ମ ଆବେଗର ଭାବଭୂମିକୁ କଳାରୂପ ପ୍ରଦାନ କରେ । 'ଭାବ'ର କଙ୍କାଳ ହୁଏ କଳାର କମନୀୟତାରେ ଲଳିତ ! ଏଇଠି ଖାଦ୍ ଲୋଡ଼ା ହୁଏ ସତ; ମାତ୍ର ତାହାର ନଗଣ୍ୟତା ହିଁ ବାସ୍ତବତାକୁ ଆଡ଼କରି ଭୁଆସୁଣୀ ଭଳି ଅବଗୁଣ୍ଠନର ଆବରଣ ତୋଳେ । ସତ୍ୟ ଓଢ଼ଣା ତଳେ ହୁଏ ରହସ୍ୟାଚ୍ଛନ୍ନ । କାବ୍ୟ ମୋଦୀ ଓଢ଼ଣା ତଳର ଅବଗୁଣ୍ଠିତ ରହସ୍ୟକୁ ଖୋଜେ ନାହିଁ; ଓଢ଼ଣାର ଲାସ୍ୟମୟ ଚମତ୍କାରିତାରେ ହଜେ... କମନୀୟ କଳା-ମାଧୁରୀରେ ବିମୋହିତ ହୁଏ । କବିତା 'ସତ୍ୟ'ର ଦୀପଦଣ୍ଡୀ ଆଡ଼କୁ ଆକର୍ଷିତ କରେ ନାହିଁ । ସେଇଠି ଦୀପଦଣ୍ଡୀ...ବେଣ୍ଟପୋଖରୀର ମାୟା...କାଚକେନ୍ଦୁ ପାଣି ଓ ଶଁଖମର୍ମର ପାହୁଚର ରହସ୍ୟ ଘେରା ମୂଳକଟା ଭିତରେ ରାଜାପୁଅକୁ ବାନ୍ଧିରଖେ ।

ବେଣ୍ଟପୋଖରୀର କଳାଘୁମର ପାଣିତଳେ ଯେଉଁ ନିଭୃତ ଦୁନିଆଁ... । ଅକାତକାତ ପାଣି... ସାତତାଳ ପଙ୍କ... ଓ ତା 'ତଳେ ଲୁକ୍‌କାୟିତ ଚଉରା...ପୁଣି ଚଉରା ଭିତରେ ସଂଗୁପ୍ତ ଫରୁଆ...ଆଉ ତା ଭିତରେ ତକେଇ ଥିବା ଅସୁରୁଣୀ ବୁଢ଼ୀର ଆୟୁଷ ଯାଏ ପହଞ୍ଚିବାର 'ଆକୁଳତା' ଯାହାର ଥାଏ ସେ; ବ୍ୟର୍ଥ ପ୍ରଣୟର ହତାଶ ନାୟକ ନୁହେଁ !

ଜହ୍ନ ରାତିର ଗଜଲ ଭିତରେ ସେ 'ରାଜଜେମା'ର ଶଂଖମର୍ମର 'ପ୍ରତିମା'କୁ ପାଇ ହୁଏ ନା ସନ୍ତୁଷ୍ଟ । ବାରହାତ ଖଣ୍ଡା ଲୋଡ଼ାହୁଏ ସେଇଠି,,,,, ସେଇଠି ଉଭାହୁଏ ଆସି ପକ୍ଷୀରାଜ ଘୋଡ଼ା । କବିତାର କାମ ଶେଷ ହୁଏ ସେଇଠି ! କଳ୍ପନାର ରାଗରଂଗରେ ଅଭିଷିକ୍ତ ଦୁନିଆଁଟି ପାଣିଚିଆ ପଣରେ ଅଳୀକ ମନେହୁଏ ଓ ସେଇଠୁ ଅନ୍ୱେଷଣର ଦୀର୍ଘମାତ୍ରା ପାଇଁ ଆରମ୍ଭ ହୁଏ ପ୍ରସ୍ତୁତି !!

ସତ୍ୟ ସନ୍ଧାନର ପ୍ରସ୍ତୁତି ଥିଲେ; ତାହା କବିତାର ପରବର୍ତ୍ତି ଦୁନିଆଁରେ ପହଞ୍ଚାଇଦିଏ । କବିତା କଳ୍ପନାର ମୂଳକରେ ଓ ରହସ୍ୟ କୁହେଳି ଘେରା ରୋମାଞ୍ଚକ ଭୂଇଁରେ ହୁଏ ଦିଶାହରା.... ! ଖୋଜିବାର କାର୍ନାମା ଯେଉଁଠି ସୁରୁ ହୁଏ; ସେଇଠି ଆଉ ଗୋଟାଏ ନିଆରା ଜଗତର ମୂଳଦୂଆ ପଡ଼େ; 'ଗଳ୍ପ'ର ବୁନିୟାଦ ଟିଏ ଠିଆହୁଏ ଏଇଠି ଖାସ୍ ! ଏଇଠି ସୁନା ଯେତିକି...ଖାଦ୍ ବି ସେତିକି ଥାଏ ! କଳା ଓ କଳ୍ପନାର ଗୋଟାଏ ଦୋସମାଲି ଇଲାକା ହେଉଛି ଗଳ୍ପ ! ଗଳ୍ପ କବିତା ନୁହେଁ...କବିତା ଭଳି କଳାଭାରରେ ନମନୀୟ ବି ନୁହଁ ! ତେବେ ତ୍ରିଶଙ୍କୁର ମଧ୍ୟ ସ୍ୱର୍ଗ ଭଳି.... ବାମନର ତୃତୀୟ ପାଦକୁ ତିପ୍ରାଦ ଭୂଇଁର ପ୍ରତ୍ୟାଶା ଭଳି ଗଳ୍ପର ଦୁନିଆଁ ! ଗଳ୍ପ 'କଳ୍ପନା'ର କୁହୁଳିଆ ମାୟାଲୋକ ଭିତରୁ ନାୟକକୁ ବାସ୍ତବତା ଆଡ଼କୁ ଘେନିଯିବାର ଆକୁଳତା ଦିଏ.... ଆଶ୍ୱାସନା ମଧ୍ୟ ଦିଏ । ହେଲେ 'କଳା-କାଳସୀ' ର ଦାଉରୁ ମୁକ୍ତ ହୋଇ ପାରେ ନା' ବୋଲି; ମଧ୍ୟ ସ୍ୱର୍ଗରେ ହିଁ ଅଟକିଯିବାକୁ ହୁଏ । ତ୍ରିପାଦ ଭୂଇଁ ପାଇଁ ପୁଣି ଖୋଜାପଡ଼େ ସତ୍ୟର । ସତ୍‌ସାହସର !!

ବାସ୍ତବତାର ମୁହାଁସ ଥିଲେ କ'ଣ ହେଲା; ସତ୍ୟ ପାଇଁ ସାହସ କୁଳାଉ ନଥବାରୁ ରାତି ପାହିଗଲା...ସ୍ୱପ୍ନ ଭାଙ୍ଗିଗଲା ..ଅଥଚ ଅବଶୋଷର ଦହନରୁ କିଛୁ ମିଳିଲା ନାହିଁ ନିସ୍ତାର । ଗପ ତେଣୁ ଗୋଟାଏ ସେତୁ; କଳ୍ପନା ଓ ବାସ୍ତବତାର ଗୋଟାଏ ଦୋସମାଲି ଭୂଇଁ... ସତ୍ୟ ଓ ସନ୍ଦୀପନର ଗୋଟାଏ ମଧ୍ୟ-ବିନ୍ଦୁ । ଜୀବନର ଗୁଳା ଛୁଇଁବାକୁ 'ସରାଗ' ସଜାଏ ଗଳ୍ପ; ମାତ୍ର କଳାର ଉପ୍ରୋଧ ଭାଙ୍ଗି ପାରେ ନାହିଁ । କଳାର 'ରାଣଖିଆ' ଦୁନିଆଟା ଭିତରୁ ବାସ୍ତବତାର ଦୋଛକି ଉପରକୁ ଡିଆଟିଏ ମାରିବାର ଯେଉଁ ଦୃଢ଼ପଣ ଲୋଡ଼ା; ସେଇତକ ନ ଥିବାରୁ ଆଉ ପାଦୁଟିଏ ବି ଆଗକୁ ଯାଇ ନ ପାରେ ଗଳ୍ପ ! ସତ୍ୟ ଓ ବାସ୍ତବତାର ଏରୁଣ୍ଡି ଏପଟେ ଠିଆ ହୁଏ ତେଣୁ ବିଷ୍ଣୁଶର୍ମା.... ପଞ୍ଚତନ୍ତ୍ର ଓ ଆରବ୍ୟରଜନୀର କଥନିକା !

ସାହିତ୍ୟ ବି ଏକ ସୋପାନ ! ସତ୍ୟର 'ଦଧିନଭତି', ଛୁଇଁବାକୁ ହେଲେ...ବାଇଶି ପାହାଚର ଶୀର୍ଷରେ ପହଞ୍ଚିବା ଲୋଡ଼ା । ବୟସ ସେଇଠି ବଡ଼ ହୁଏ ନା, ବଡ଼ କଥା ହେଲା ନିର୍ଭୀକତା.... ବଡ଼କଥା ହେଲା -'ଧରମା'ର ସାହାସ ଓ ଉଦାରତା ! 'ଧରମା'

ମାନଙ୍କ ପାଇଁ ଖାସ୍ ବାକିଥାଏ । ତେଣୁ 'ଦଧିନଭତି' ବସାଣର ଦାୟିତ୍ବ ! ବିପନ୍ନ ଜୀବନର କଣ୍ଟକିତ ଯାତ୍ରା ପାଇଁ ଦିଗର ନ ଥିଲେ.... ମୃତ୍ୟୁ ସହ ମୁକାବିଲାର ସାହାସ ନଥିଲେ.... ଜୀବନ ଓ ସତ୍ୟର ମୂଳସୂତ୍ରଟାକୁ ଜାଣି ନପାରିଲେ ତେଣୁ ଦଧିନଉତି ବସାଣର କ୍ରିୟା ସଂପାଦିତ ହୁଏ ନାହିଁ । ପ୍ରବନ୍ଧ ଲେଖି ହୁଏ ନାହିଁ.... ହେଇ ହୁଏ ନାହିଁ ଜଣେ ନିରୁତା ପ୍ରାବନ୍ଧିକ । ବାରଶହ ବଢ଼େଇକୁ ତେଣୁ ଏକଇ ଧରମା...! ପଣ ପଣ ଡାହାଣୀକୁ ଗୋଟିଏ ଗୁଣିଆ-ହେଉଛି ପ୍ରବନ୍ଧ ଓ ପ୍ରାବନ୍ଧିକର ଦାୟିତ୍ବ ।

ସାହିତ୍ୟର ଶେଷ ପାହଚ୍ଛ ଓ ଜୀବନର ତୃତୀୟ ପ୍ରସ୍ଥରେ ତେଣୁ ଉଭା ହୁଏ ପ୍ରବନ୍ଧ ! ପ୍ରବନ୍ଧ ଏକ ବିରଳ ସାହିତ୍ୟ-କର୍ମ । ତେଣୁ ଏଥିରେ 'କଳା' କମ୍..... ସତ୍ୟ ବେଶି.... କଳ୍ପନା ତ ନାହିଁ ଖାସ୍ ସ୍ବତ୍ତୁର୍ଯ୍ୟର ଟିକିଏ ରଂଗରେ ଦାଉଦାଉଜଳେ ଜୀବନର ଅସଲ ରଂଗରାଗ ! ଓଡ଼ିଆ କାହିଁକି....ବିଶ୍ବର ସକଳ ସାହିତ୍ୟର ଇତିହାସରେ ତେଣୁ ଏଇ ଦିଗଟି ଅତି କଠିନ.....କଠୋର ଓ ଜଟିଲ ! ପ୍ରବନ୍ଧର ଗାଣ୍ଡିବ ଉଠାଇବାକୁ କେବେ ବି କେଉଁଠି ସହଜଲବ୍ଧ ହୁଅନ୍ତି ନାହିଁ ସବ୍ୟସାଚୀମାନେ ... ! ସଭିଏଁ ତା ସହଜ ପଥର ଯାତ୍ରୀ ! ଦୁର୍ଗମ ପଥ ଟି ହେଉଛି ପ୍ରବନ୍ଧ ତେଣୁ ସଦାକାଳ !!

ଖାଲି ଜୀବନକୁ ବୁଝିଲେ ହିଁ... ବୁଝିବାକୁ ସକ୍ଷମ ହେଲେ ହିଁ ହେଇ ହୁଏ ନା ପ୍ରାବନ୍ଧିକ । ସାହିତ୍ୟକୁ ବୁଝିଲେ ଜଣେ ସମୀକ୍ଷକ ହୁଏ... ହୁଏ ଓ ହୋଇପାରେ ଦକ୍ଷ ସମାଲୋଚକ; ମାତ୍ର ପ୍ରାବନ୍ଧିକ ହେଇ ହୁଏନା ! ସାହିତ୍ୟ ଓ ଜୀବନ ଭିତରେ ଯେତିକି ଫରକ୍ ସମାଲୋଚକ ଓ ପ୍ରାବନ୍ଧିକ ଭିତରେ ଠିକ୍ ସେତିକି ବ୍ୟବଧାନ । ସାହିତ୍ୟ ଜୀବନ ନୁହଁ । ଜୀବନର ଏକ ଛାୟା..ଏକ ସଦୃଶ ପ୍ରତିବିମ୍ବନ । 'ସାହିତ୍ୟ' ସୂର୍ଯ୍ୟାଲୋକ ନୁହଁ; ସୂର୍ଯ୍ୟାଲୋକ ପ୍ରତିଫଳିତ ଜ୍ୟୋତ୍ସ୍ନାର ମୁଲାଏମ ଆଂଜୁଳାଏ ଛାୟାଲୋକ ! ସୂର୍ଯ୍ୟାଲୋକର ତାତି ନ ଥାଏ ଚନ୍ଦ୍ରିକା ରାତିରେ... ନଥାଏ ଏଥିରେ ଦାହିକା ଶକ୍ତି ବି ଟିକିଏ ! ଯଦିଓ ଏହାବି , ଆଲୋକ ଦିଏ.... ଅଧାରକୁ ଅଳ୍ପ ହେଲେ ବି ତଡ଼ିବାକୁ ହୁଏ ସକ୍ଷମ !

ଜୀବନ ଯାହା ସୂର୍ଯ୍ୟ ତାହା ! ଏଥିରେ ଜ୍ବଳନ ଅଛି.... ସୃଷ୍ଟି ଶୀଳତା ଅଛି.... କ୍ରିୟା ଶୀଳତା ବି ଅଛି । ସାହିତ୍ୟ 'ଜହ୍ନ' ଭଳି ଜୀବନର ପ୍ରତିବମ୍ବନକୁ ତୋଳିଧରେ ବୋଲି ଚନ୍ଦର ମାୟା ଥାଏ ଏଥିରେ; ଜହ୍ନମାମୁଁର ମାଦକତା ଆଉ ରହସ୍ୟ ବି ଭରା ଥାଏ ଏଇଠି...ଦୂରନ୍ତ ପୃଥିବୀର ଅପହଞ୍ଚ ଇଲାକାରେ । ସେଇଥିପାଇଁ ଜହ୍ନ ରାଇଜରୁ ଯେଉଁମାନେ ସୂର୍ଯର ଦୁନିଆଁକୁ ହାତ ବଢ଼ାନ୍ତି; ସେଇମାନେ ହିଁ ଜୀବନକୁ ବୁଝନ୍ତି.... ବୁଝିବାକୁ ସମର୍ଥ ହୁଅନ୍ତି । ଜୀବନର ଭିଡ଼ ଭିତରେ ରହୁଥିବା ସବୁ ମଣିଷ ଛଡ଼ା ଯେମିତି ଜୀବନକୁ ବୁଝିପାରନ୍ତି ନାହିଁ । ପାଣିରେ ରହୁଥିବା ସତ୍ତ୍ୱେ ବି ସେମିତି ସବୁ ମାଛ ମାନେ ସମୁଦାୟ ପାଣି...ପାଣି

ତଳର ମାଟିକୁ ଛୁଇଁପାରନ୍ତି ନାହିଁ କି, ବୁଝିପାରନ୍ତି ନାହିଁ କଣ୍ଠା ! ମାଛଭିତରେ ସେଥିପାଇଁ ତିନିଜାତି : ତିନି ଭିନ୍ନ କିସମ ! ପାଣି ଉପରେ ଉପରେ ରହେ 'କାଦ୍‌ଲା'..ଭାକୁଡ଼ ଓ ଅନ୍ୟ ସାଧାରଣ ମାଛ ପାଣିର ଉପର ଦୁନିଆଁଟା ସମ୍ପର୍କରେ ଜାଣନ୍ତି ଏମାନେ ଯାହା । ଭିତରର କଥା ଜାଣିବେ ବା କାହୁଁ ? 'ରୋହୁ' ରୋହୀ ଓ କଳାବଇଁଶୀ ଉପରର ମାୟା କାଟି ଭିତରକୁ ଯାଏ । ଭିତରମାନେ ପୁରା ଭିତରେ ନୁହଁ । ଏମାନେ ମଝାମଝି ଯାଏ ପହଞ୍ଚିପାରନ୍ତି ନାହିଁ । ଅଥଚ ତଳ ଛୁଇଁ ପାରନ୍ତି ନାହିଁ । ସେଥିପାଇଁ କେରାଣ୍ଡି ଭାକୁଡ଼ ଠାରୁ ଟିକେ ବେଶିମିଠା ରୋହୀ, ମିରକାଳି ଓ କାଳି ବାଇଁଶୀ ମାଛ । ତେବେ ମାଗୁର ଓ କଉମାଛ ମାଟିଯାଏ ଯାଇପାରନ୍ତି ବୋଲି ସେ ମାଛ ଆଉରି ମିଠା !!!

ଜୀବନର ସ୍ତର ବି ଠିକ୍ ସେମିତି ! ୭୫ ଭାଗ ମଣିଷ ସମାଜର ଉପରେ ଉପରେ ବଞ୍ଚନ୍ତି । Superficial ଜୀବନ ବିତାନ୍ତି ସେମାନେ । ଜୀବନର ଗଣ୍ଠି ଗୁଡ଼ାକ ସେମାନେ ଚିହ୍ନିପାରନ୍ତି ନାହିଁ କି ଭେଦି ପାରନ୍ତି ନାହିଁ । ସେମାନେ ନିରୋଳା ମଣିଷ । ବଞ୍ଚିବା ପାଇଁ ବଞ୍ଚନ୍ତି ଆଉ ଜୀବନ ଜୀବିକାର ତଅଁର ଭିତରେ ସେମାନେ ହଜିଯାନ୍ତି ଓ ଆତ୍ମସତ୍ତା (Identity) ହରାଇ ବସନ୍ତି । ଦ୍ୱିତୀୟ ସ୍ତରରେ ଯେଉଁମାନେ ପହଞ୍ଚିପାନ୍ତି...ଜୀବନକୁ ଦୂରରୁ ଦୂରରୁ ଦେଖନ୍ତି ଆଉ ବୁଝନ୍ତି - ସେମାନେ ହୁଏତ ହୁଅନ୍ତି ...କବି ଓ ସାହିତ୍ୟିକ । ଯେଉଁମାନେ ଉପରର ମାୟାରେ ଅଟକି ଗଲେ ନାହିଁ । ମଝି ଦୁନିଆଁର ମାୟାରେ ହେଲେ ନାହିଁ ମୋହିତ ଆଉ ଭିତରର ମାଟି ଛୁଇଁବାକୁ ହେଲେ ପାଗଳ; ସେଇମାନେ ହେଲେ ଦାର୍ଶନିକ....ବିଜ୍ଞାନୀ ଆଉ ପ୍ରାବନ୍ଧିକ ।

ହାଡ଼େ ହାଡ଼େ ଜୀବନକୁ ବୁଝିଲେ ଆଉ ତାର ସଂକଟ ଗୁଡ଼ାକୁ...ତା'ର କାରଣ ଗୁଡ଼ାକୁ ଖୋଜୁ ଖୋଜୁ ସତ୍ୟର ସନ୍ଧାନ ପାଇଲେ; ସେଇମାନେ 'ଧରମା' ସାଜିଲେ...ସାଜିଲେ ସତ୍ୟଧର୍ମା ପୁରୁଷ; ସକ୍ରେଟିସ୍ ! ପ୍ରବନ୍ଧ ସେହି ଅତଳ ତଳ ପାଣି ଅଭ୍ୟନ୍ତରର ସତ୍ୟ ! ସେଇ ତ୍ରିପାଦ ଭୂଇଁର ଠିକଣା ! ଆଉ ପ୍ରାବନ୍ଧିକ ହେଉଛି ମୁଣ୍ଡିଆଳ ଧରମା ଓ ସତ୍ୟଧର୍ମାର ଉତ୍ତର ଦାୟାଦ । ଓଡ଼ିଆ ପ୍ରବନ୍ଧ ସାହିତ୍ୟର ସେଇଭଳି ଜଣେ ସତ୍ୟଧର୍ମା ପୁରୁଷ ହେଉଛନ୍ତି ଚନ୍ଦ୍ରଶେଖର...ଚନ୍ଦ୍ରଶେଖର ରଥ ।

ଜଳନ୍ଧରଦେବ.... ଗୋପବନ୍ଧୁ ନିଳକଣ୍ଠ, ଗୌରୀଶଙ୍କର.... ଗୋପାଳଚନ୍ଦ୍ର ପ୍ରହରାଜ.... ଶଶିଭୂଷଣ ରାୟଙ୍କ ପରେ ଅନେକ ଆସିଛନ୍ତି ଓ ଆସୁଛନ୍ତି ଓଡ଼ିଆ ସାହିତ୍ୟକୁ । ତେବେ ଆଧୁନିକ ଓଡ଼ିଆ ପ୍ରବନ୍ଧ ସାହିତ୍ୟରେ ଦୁଇ ଧର୍ମପଦ ହେଉଛନ୍ତି - ଚିତ୍ତରଂଜନ ଦାସ ଓ ଚନ୍ଦ୍ରଶେଖର ରଥ ! ପ୍ରବନ୍ଧର ମୂଳଧର୍ମ ଓ ଆଦର୍ଶକୁ ଟେକି ଧରିବାରେ ସମର୍ଥ ପୁରୁଷ ଜଣେ ଚନ୍ଦ୍ରଶେଖର ! ଭାତ ହାଣ୍ଡିରୁ ଗୋଟିଏ ଭଳି ମୁଁ ସତ୍ୟଧର୍ମା କହୁଛି, ଖାସ୍ ଗୋଟିଏ ପ୍ରବନ୍ଧ ଶ୍ରୀ ରଥଙ୍କର । ସେ ନିଜକୁ ପରିଚୟ କରିଛନ୍ତି - ସେଇଠି ସକ୍ରେଟିସ୍‌ଙ୍କ

ଭିତରେ । ଆଉ ସକ୍ରେଟିସ୍ ହେଉଛନ୍ତି ସେହି ମହାନ୍ ଦାର୍ଶନିକ : ଯିଏ 'ସତ୍ୟ' ପାଇଁ ଜୀବନ ଦେଲେ.... 'ସତ୍ୟ'ର ଗାରିମା ଜୀବନ ଠାରୁ ମଧ୍ୟ ଗରୀୟାନ୍ ବୋଲି ଯିଏ ମଣିଷ ଓ ସଭ୍ୟତାର ଆଖିରେ ଆଙ୍ଗୁଳି ଗେଞ୍ଜି ଦେଖାଇଦେଲେ ।

'ସତ୍ୟ' ହିଁ ଲକ୍ଷ୍ୟ ...ଜୀବନର ମହତ୍ତ୍ୱ ଓ ସଭ୍ୟତା ବିକାଶର ଗୁବିକାଠି ! ଏଇ କଥାଟାକୁ ଯିଏ ବୁଝିନାହିଁ; ସିଏ ଆଉଯାହା ଜାଣୁନା କାହିଁକି; ସେ ସମସ୍ତ ଜାଣିବା ଜୀବନ ପାଇଁ ଏକାନ୍ତ ନିରର୍ଥକ । ସତ୍ୟଧର୍ମା ପୁରୁଷ ଚନ୍ଦ୍ରଶେଖର ଏଇ କଥାଟାକୁ ଯେ ଜାଣିଛନ୍ତି ଆଉ ଜୀବନର ମୂଳସୂତ୍ରଟି ଖୋଜି ପାଇଛନ୍ତି- ତାର ବଡ଼ ପ୍ରମାଣ ହେଉଛି; ମୁଁ ସତ୍ୟଧର୍ମା କହୁଛି, ପ୍ରବନ୍ଧ ! ସତ୍ୟ ନିଶ୍ଚିତ ଓ ଅନିବାର୍ଯ୍ୟ । ଏହାର ଅନ୍ୱେଷା ହିଁ ଜୀବନର ସର୍ବଶ୍ରେଷ୍ଠ ସଫଳତା ! ସେ ସତ୍ୟ ସନ୍ଧାନୀମାନେ ଦୀର୍ଘଜୀବୀ ହୁଅନ୍ତୁ.... ସତ୍ୟର ଜୟ ହେଉ... ବାସ୍ !!

ଏଥର ହିସାବ ନିକାଶ କରନ୍ତୁ; ପ୍ରାବନ୍ଧିକର ଯଦି ଗୋଟିଏ ଆଦର୍ଶ ଅଛି....ଅଛି ଗୋଟାଏ ମିଶନ୍ : ଆଉ ଆଦର୍ଶ ପ୍ରତି ତା'ର କେତେ ଆନୁଗତ୍ୟ ଅଛି..... ଅଛି କେତେଟା ଦାୟବୋଧ.... କମିଟ୍‌ମେଣ୍ଟ...ସେଇଟା ଗୋଟିଏ ବି ପ୍ରବନ୍ଧରେ ହେଉନା କାହିଁକି.... ସ୍ରଷ୍ଟାର ଜୀବନ ଶୈଳୀରେ ବି ହେଉନା କାହିଁକି; କେତେଦୂର ମେଳ ଖାଉଛି.... ପ୍ରତିଫଳିତ ହେଉଛି ଓ ସେ ସତକୁ ସତ ଗୋଟିଏ ସତ୍ୟଧର୍ମା କି ନୁହଁ । ସେ ଦାୟିତ୍ୱ ତ ଓଡ଼ିଆଜାତିର ଓଡ଼ିଆ ସାହିତ୍ୟର.....ନୁହଁ ??? ନୁହଁ କି ???

ୟୁ.ଏନ୍. କଲେଜ,
ଅଡ଼ଶପୁର କଟକ - ୭୫୪୦୧୧

***

# ମୋ ଇଂରାଜୀ ସାର୍ - ଶ୍ରୀ ଚନ୍ଦ୍ରଶେଖର ରଥ : କେତୋଟି ଅଭୁଲା ସ୍ମୃତି

*ପ୍ରଫେସର ଗୁରୁଚରଣ ପାତ୍ର*

୧୯୬୫ ମସିହାର 'ଜୟପୁର ସହର',ଲୋକେ କହନ୍ତି 'ଯମପୁର' । ମ୍ୟାଲେରିଆର ପ୍ରାଦୁର୍ଭାବ ବେଶୀ । ବଣ, ଜଙ୍ଗଲ ଘେରା ସହରଟିଏ । ପହଞ୍ଚିବାକୁ ହେଲେ କେତେ ବନ, ପାହାଡ଼, ନଦୀ ଓ ଘାଟି ରାସ୍ତା ଡେଇଁ ଯିବାକୁ ହୁଏ । ସେତେବେଳେ କୌଣସି ଅଧ୍ୟାପକଙ୍କୁ ଜୟପୁର ବିକ୍ରମଦେବ କଲେଜକୁ ବଦଳି ହେଲେ, ଲୋକେ କହନ୍ତି ପନିସ୍‌ମେଣ୍ଟ ପାଇଲା । କିନ୍ତୁ ମୋ ଛାତ୍ର ଜୀବନର ବହୁତ ଭଲ ଅଧ୍ୟାପକଙ୍କ ସାନିଧ୍ୟ ଏଇଠି ହିଁ ମୁଁ ପାଇଛି । ସେମାନଙ୍କ ମଧ୍ୟରୁ ମୋ ଇଂରାଜୀ ସାର ଶ୍ରୀ ଚନ୍ଦ୍ରଶେଖର ରଥ ଅନ୍ୟତମ । ସାର୍ ଏନ.ସି.ସି. ଦାୟିତ୍ବରେ ଥାଆନ୍ତି । ବଳିଷ୍ଠ ଚେହେରା । ସଦା ହସ ହସ ମୁହଁ ଭିତରେ ଏକ ପ୍ରଚ୍ଛନ୍ନ ଗାମ୍ଭୀର୍ଯ୍ୟ ଥାଏ । ଦେଖିଲେ ବହୁତ ଡର ଲାଗୁଥାଏ । ଲାଗିବା କଥା । ସେତେବେଳେ ମୁଁ ପ୍ରି-ୟୁନିଭରସିଟି ଛାତ୍ର । ଏନ୍.ସି.ସି. ରେ ମିଶିଲେ ଜଳଖିଆ ମିଳେ ବୋଲି ସିନା ମିଶିଗଲି, ହେଲେ ୩୩ କେ.ଜି. ଓଜନର ଦେହରେ ନା ଏନ୍.ସି.ସି. ଡ୍ରେସ୍ ଖାପ ଖାଉଥିଲା ନା ଏନ୍. ସି.ସି. ବୁଟର ଭାର ବୋହି ହେଉଥିଲା । ସାରଙ୍କର ବୋଧହୁଏ ମୋର ପତଳା ଦୁର୍ବଳ ଚେହେରା ପ୍ରତି ଦୟା ଆସୁଥିଲା- ସେ ମୋତେ ଅନେକ ସମୟରେ ଏନ୍.ସି.ସି. ପ୍ୟାରେଡ୍‌ରୁ ଅବ୍ୟାହତି ଦିଅନ୍ତି । କିନ୍ତୁ ଦିନେ ଜାଣିଲି ମୁଁ ଭଲ ଗୀତ ଗାଇପାରେ ବୋଲି ଏବଂ ତାହାବି ଜୟଦେବଙ୍କ ଗୀତଗୋବିନ୍ଦ ଗାଇପାରେ ବୋଲି ସାର୍ ମୋତେ ବହୁତ ଶ୍ରଦ୍ଧା କରୁଥିଲେ ଏବଂ ସେହି କାରଣରୁ ମୋତେ କଷ୍ଟକର ପ୍ୟାରେଡରୁ ମୁକ୍ତି ଦିଆ ଯାଉଥିଲା ।

୧୯୬୬ରେ ପ୍ରି-ପ୍ରଫେସନାଲ ଆର୍ଟସ୍‌ଠାରୁ ୧୯୬୮ ବି.ଏ. ପାସ୍ କରିବା ପର୍ଯ୍ୟନ୍ତ ସାର୍ ମୋତେ ଇଂରାଜୀ ପଢ଼ାଉଥାନ୍ତି । ଡ୍ରାମା, ଏସେ, ପୟେଟ୍ରି ପଢ଼େଇଲା ବେଳେ ହାତରେ ବହିଟା ଧରିଥିବେ । ବଡ଼ ବଡ଼ ହାତ ପାପୁଲିରେ ସତେ ଯେମିତି ବହିଟା ଲାଖି ଯାଇଛି । ସାରା ଶରୀର ତାଙ୍କର କଥା କହୁଥିବ । ମୋର ମନେ ଅଛି ଚାର୍ଲସ୍ ଲାମ୍ବଙ୍କ "The Dream children - A Reverie" ପାଠ ସାର୍ ପଢ଼ଉଥାନ୍ତି । ଆମେ ସବୁ କ୍ଲାସରେ ଏତେ ଭାବ ବିହ୍ୱଳ ହୋଇ ଯାଇଥିଲୁ ଯେ ପାଠ ସରିଲା ବେଳକୁ ଆମ ଆଖିରେ ଲୁହ । ସେ କି ଅଭାବ ବୋଧ ଦୁଃଖର ଅନୁଭୂତି କେଜାଣି ଏତେଟା Soul ful Lecture ମୁଁ ଆଉ କେବେ ଶୁଣି ନାହିଁ । ସେମିତି Oliver Goldsmith ଙ୍କର 'The

Deserted Village" ପଢ଼େଇଲା ବେଳେ ଶିଳ୍ପୀକରଣର କୁ-ପ୍ରଭାବମାନଙ୍କର ଏତେ ବିଶଦ ବିବରଣୀ ଦେଇଥିଲେ ଯେ, ଅନେକ ବର୍ଷ ପରେ ମୁଁ ନିଜେ ଅଧ୍ୟାପନା କରିବାବେଳେ ସେଗୁଡ଼ିକୁ ମୁଁ ମୋ ଛାତ୍ରମାନଙ୍କୁ କହୁଥିଲି କାରଣ, ମୁଁ Industrial Relations ପଢ଼ାଏ । 'Othello' ନାଟକ ପଢ଼ଉଥାନ୍ତି —Iago ର soliloquy ର Concept ପଢ଼େଇବାକୁ Othello ର 'Put off the light ର ତାତ୍ପର୍ଯ୍ୟ ବୁଝେଇବା ପର୍ଯ୍ୟନ୍ତ ସାରଙ୍କର ସାରା ଶରୀର ସେଇ ସମୟ ମଧ୍ୟରେ ନାଟକର ପାତ୍ର ମଧ୍ୟରେ ହଜିଯାଏ । ଷଡ଼ରସର ଅବତାରଣା ଏତେ ଚମତ୍କାର ଲାଗେ, ଆଜିକି ଦୀର୍ଘ ପଞ୍ଚତିରିଶ ବର୍ଷ ପରେ ମଧ୍ୟ ଭୁଲି ହୁଏନା ।

ଥରେ ବିକ୍ରମଦେବ କଲେଜରେ କବିତା ପାଠୋତ୍ସବ ହେଉଥାଏ । ମୁଁ ଯଦିଓ କଣ୍ଠ ଶିଳ୍ପୀ ହିସାବରେ କିଛିଟା ନା' କରିଥିଲି, ହେଲେ ସାହିତ୍ୟ ଚର୍ଚ୍ଚାରେ ମୋର ପ୍ରବୃତ୍ତି ନଥିଲା । ତଥାପି ହଂସମାନଙ୍କ ମଧ୍ୟରେ ରହି ହଂସ ଚ୍ଛଲି ଶିଖିବା ଭଳି, ମୋର କବିବଂଧୁ ନଳିନୀ ରଂଜନ ମିଶ୍ର, ଶ୍ରୀକାଳୀକିଙ୍କର ମିଶ୍ର, ଶ୍ରୀରବି ମହାନ୍ତିଙ୍କର ସଂସର୍ଗରେ ଆସି ଗୋଟିଏ କବିତା ଲେଖିଲି । Spontaneity ଜମାରୁ ନଥାଏ । ଜୋର ଜବରଦସ୍ତ ଶବ୍ଦ ବାହାର କରି ଗୋଟିଏ ପ୍ରେମ କବିତା ଲେଖିଲି ଏବଂ ସାଙ୍ଗମାନଙ୍କୁ ଦେଖେଇଲି । କବିତାଟି ଭଲ ହୋଇଛି ବୋଲି ସେମାନେ କହିଲେ କିନ୍ତୁ ସେଥିରେ ଆନ୍ତରିକତାର ଅଭାବ ଥିବା ଜାଣି ପାରିଲି । ଏ ସତ୍ତ୍ୱେ ଆଗରୁ ଯେହେତୁ ନାଁ ଦେଇଥିଲି ଭାଗନେବା ପାଇଁ, ସେଇ ସୂତ୍ରରେ କବିତାଟି ପଢ଼ିଲି । ମୋର ସଙ୍ଗୀତ ସୁଲଭ କଣ୍ଠରେ ସେଠାରେ କବିତା ପଢ଼ିବାପରେ ହଠାତ୍ ଅନୁଭବ କଲି ମୋତେ ଜଣେ କିଏ ଶୂନ୍ୟକୁ ଉଠେଇ ନେଉଛି । ସାର୍ କହିଲେ ସାବାସ୍ ! ବଢ଼ିଆ ହୋଇଛି । ସେ Impression ସାରଙ୍କର ଏମିତି ରହିଗଲା ଯେ ୧୯୭୬ ମସିହା ଡିସେମ୍ବର ଶୀତ ଛୁଟିରେ ଏଇ ରଂଗେଇଲୁଣ୍ଡା ଗ୍ରାମରେ (ଯେଉଁଠି ଆଜିର ଭଂଜବିହାର ଅବସ୍ଥିତ) ଏନ୍.ସି.ସି. କ୍ୟାମ୍ପରେ ମୋତେ ପ୍ୟାରେଡ୍ ରୁ ଛୁଟି ମିଳିଲା । ମୋତେ 'ଲଂଗର' ଦାୟିତ୍ୱରେ ରଖାଗଲା । ସାର୍ କହିଲେ - କବିତା ଲେଖିବ, ଗୀତ ଗାଇବ ।

ଜୟପୁରରେ ଥିଲାବେଳେ ସାର୍ ମୋତେ ଓ ମୋର ବନ୍ଧୁମାନଙ୍କୁ (ଯାହାଙ୍କର ନାମ ଆଗରୁ ଦେଇଛି) ପରଶୁ ଡାକନ୍ତି । ଭଲ ଖାଇବାକୁ ଦିଅନ୍ତି ଆଉ ମୋତେ କହନ୍ତି ବ୍ୟାୟାମ କର ଆଉ କଂଚ୍ଚ ମୂଳା, ଗାଜର ଆଦି ଖାଅ । ଶରୀର ସୁସ୍ଥ ଥିଲେ ମନ ଓ ଚିନ୍ତନ ସୁସ୍ଥ ରହିବ । ସେତେବେଳେ ତାଙ୍କର କିଛି ପାଣ୍ଡୁଲିପି ମୋର ବନ୍ଧୁମାନଙ୍କୁ ସାର୍ ଦେଖାନ୍ତି । ଯଦିଚ ସେମାନେ ସାରଙ୍କର ଛାତ୍ର । ପଚ୍ଚରନ୍ତି - କେମିତି ଲାଗିଲା ? ଯେ କୌଣସି ପ୍ରତିଭାଶାଳ ବ୍ୟକ୍ତି-ସ୍ଥିତି ଯାହା ଥାଉ ପଛେ ଯେ ଆମର ମୂଲ୍ୟାୟନ କରିପାରିବ- ଏକଥା ମୁଁ ନୀରବରେ ସାରଙ୍କଠୁ ଶିଖିଲି ଯେତେବେଳେ ତାଙ୍କର ଲେଖାଉପରେ ମୋର

ବ଼ନ୍ଧୁମାନଙ୍କର ମତାମତକୁ ସାର୍ ଗୁରୁତ୍ୱ ଦିଅନ୍ତି । ମୁଁ ଏମ୍.ଏ. ପଢ଼ିବାବେଳେ ସାରଙ୍କର 'ଅସୂର୍ଯ ଉପନିବେଶ' ଓ 'ଯନ୍ତ୍ରାରୂଢ଼' ପଢ଼ିବାର ସୌଭାଗ୍ୟ ପାଇଲି । ସାର୍‌ଙ୍କର ପ୍ରବନ୍ଧ ଗୁଡ଼ିକୁ ମଧ୍ୟ ପଢ଼ିଥିଲି । ସେ ଯେଉଁ ଅତିମାନସ ସ୍ତରକୁ ଯାଇ ଚିନ୍ତା କରନ୍ତି ତାହା ତାଙ୍କର ଲେଖାରୁ ସହଜେ ଅନୁମେୟ ।

ସେଦିନ ଦିଲ୍ଲୀ ଯିବା ପାଇଁ ଫ୍ଲାଇଟ୍ ଅପେକ୍ଷାରେ ଭୁବନେଶ୍ୱର ବିମାନ ବନ୍ଦରରେ ଥିଲୁ । ଫ୍ଲାଇଟ୍ ଡେରି ଥିଲା । ମୁଁ ଓ ଆମ ବିଶ୍ୱବିଦ୍ୟାଳୟର ପ୍ରାକ୍ତନ କୁଳପତି ମହୋଦୟ ଶ୍ରୀ ରେବତୀ ଚରଣ ଦାସ କଥାବାର୍ତ୍ତା କରୁଛୁ ସାର୍ ଆସିଲେ । ସଂଭ୍ରମରେ ଉଠି ମୁଣ୍ଡିଆ ମାରିଲି । ସସ୍ନେହ କାଂଧ ଉପରେ ହାତରଖି କହିଲେ : କଣ ଗୁରୁଚରଣ, ଗୀତ ଗାଉଛୁ ?- କେତେ ମନେ ରଖନ୍ତି ସେ ।

ବ୍ରହ୍ମପୁର ବିଶ୍ୱିବିଦ୍ୟାଳୟ ଓଡ଼ିଆ ବିଭାଗର Refreshers Course ର resource person ଭାବେ ଆସିଥାନ୍ତି ସାର୍ । ଶୁଣିଲି ଯେତେବେଳେ ମନ ମାନିଲାନି । ଗଲି ସାରଙ୍କୁ ଶୁଣିବି ବୋଲି । ସାର୍ କହିଲେ— 'ଯିଏ ଦେଖେନାହିଁ, ସିଏ ଲେଖେନାହିଁ । ଦେଖିବାର ଅର୍ଥ କ'ଣ, କିପରି ଦେଖା ଯାଇପାରେ ଉପରେ ଏକ ଚିନ୍ତନଶୀଳ ବକ୍ତବ୍ୟ । ମନ୍ତ୍ରମୁଗ୍ଧ ଶ୍ରୋତା ।

ସାର୍, ଆଜି ବି ଗାଉଛି । ହେଲେ ଲେଖି ପାରୁନି । ବୋଧହୁଏ ଠିକ୍ ଦେଖିପାରୁନି ବୋଲି ଲେଖିପାରୁନି । ମୋତେ ଅନେକ ଅବ୍ୟାହତି ଦେଇଛନ୍ତି ଏନ୍.ସି.ସି. ପ୍ୟାରେଡ୍‌ରୁ । ଅଯୋଗ୍ୟକୁ ସମସ୍ତଙ୍କ ସାମନାରେ ପ୍ରଶଂସା କରିଛନ୍ତି - ବୋଧହୁଏ ଭାବି ଯେ ଏ କିଛି ଲେଖିବ । ହେଲେ ସାର୍ !ଲେଖିନି - ଲେଖିବିନି ବୋଲି କହିପାରୁନି ।

ସାର୍‌ଙ୍କ ବିଷୟରେ ମୋ'ଭଳି ଛାର ଅଧମ ବା କ'ଣ କହିବ ବା କହିପାରିବ ? Motivate କରିବାର ଶୈଳୀ, ଅନ୍ତରର ସହ କହିବାର ଶୈଳୀ ଯଦିବା କାଣିଚାଏ ମୋ' ପାଖେ ଥାଏ, ତାହାହେଲେ ତାହା ସାରଙ୍କର ପ୍ରସାଦ ଓ ଆଶୀର୍ବାଦ ମାତ୍ର । ଭାଗ୍ୟ କରିଥିଲେ ଏମିତିକା ଗୁରୁମାନଙ୍କ ଚରଣରେ ପ୍ରଣିପାତ କରିବାର ସୁଯୋଗ ମିଳେ ମୋ ଭଳି ଅଯୋଗ୍ୟ ଗୁରୁଚରଣକୁ ।

ଭଗବାନ ସାରଙ୍କୁ ଦୀର୍ଘାୟୁ ଦିଅନ୍ତୁ । ତାଙ୍କର ଲେଖନୀର ସଂଜୀବିତ ଉଦ୍‌ଜୀବିତ ରହୁ ।

ପ୍ରଫେସର, ଆଇ.ଆର.ପି.ଏମ. ଡିପାର୍ଟମେଣ୍ଟ
ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ

***

# ଅନ୍ତରଙ୍ଗ ଲାଗୁଥିବା ଲେଖକ

*ଅଧ୍ୟାପକ ଡକ୍ଟର ରଶ୍ମି ରଂଜନ ମହାନ୍ତି*

ବହିରେ ପଢୁଥିବା ଲେଖକଙ୍କୁ ସଦାବେଳେ ଦେଖିବାକୁ ମନ ବ୍ୟାକୁଳ ହୁଏ । ଲେଖାର ଅନ୍ତରଙ୍ଗତା ଲେଖକ ପାଖକୁ ନେଇଯିବାପାଇଁ ସେପାନଟିଏ ପ୍ରସ୍ତୁତ କରେ । ବହୁବାର ପଢ଼ିଛି ସାରଙ୍କୁ । ସାରଙ୍କ ଲେଖା କ୍ଲାସରେ ପଢ଼ାଉଛି । ଦୂରଦର୍ଶନରେ ଦେଖିଛି । ଖୁବ୍ ଖୁସି ହୋଇଛି 'ଜଣେ ଅନ୍ତରଙ୍ଗ ଲେଖକଙ୍କୁ ଜାଣିବା ଦ୍ୱାରା । ପାଖରେ ପାଇ କଥା ହେବାର ସୌଭାଗ୍ୟ ଅବଶ୍ୟ ଯୁଟିନଥିଲା କେବେ । ପାଠକ-ଲେଖକ, ଛାତ୍ର-ଶିକ୍ଷକ ଏ ଯେମିତି ଖୁବ୍ ନିଜର ନିଜର, ଆପଣାର-ଆପଣାର ଠିକ୍ ସେମିତି ଏକ ନିଆରା ଅନୁଭବକୁ ସାଇତିବାପାଇଁ ମୁଁ ବହୁବାର ସାରଙ୍କ ସହ ଦିପଦ କଥା ହେବାର ସ୍ୱପ୍ନରେ ବିଭୋର ହୋଇଛି । ଅବଶ୍ୟ ସୁଯୋଗ ପାଇପାରିନଥିଲି । ସାରଳା ସାହିତ୍ୟ ସଂସଦ ସମାବର୍ତ୍ତନ ଉତ୍ସବରେ ଥରେ ସାରଙ୍କ ଭାଷଣ ଶୁଣିବାର ସୌଭାଗ୍ୟ କଟକ ସହୀଦ ଭବନରେ ପାଇଥିଲି । ତାପରେ ଭୁବନେଶ୍ୱରକୁ ମୋର ଜଣେ ଛାତ୍ର ସହ କବିତା ରଚନା କର୍ମଶାଳାରେ ଯୋଗଦେବାପାଇଁ ଯିବା ସମୟରେ ସାରଙ୍କ କବିତା ସଂପର୍କିତ ତାଲିମ ଶୁଣିବାର ସୌଭାଗ୍ୟ ମିଳିଥିଲା । ଦୂରଦର୍ଶନ ଚ୍ୟାନେଲରେ ଏକ ଅନ୍ତରଙ୍ଗ ସାକ୍ଷାତକାରକୁ ବହୁବାର ଦେଖିବାର ସୌଭାଗ୍ୟ ପାଇଛି କିନ୍ତୁ ସେଇ ଅବଶୋଷଭାବକୁ ପୂର୍ଣ୍ଣ କରିବାର ସୌଭାଗ୍ୟ ମିଳିଥିଲା ଗତ ଜୁଲାଇ ମାସ ୨୮ ତାରିଖ ୨୦୦୩ ମସିହା ସଂବଲପୁର ବିଶ୍ୱବିଦ୍ୟାଳୟଠାରେ । ୟୁ.ଜି.ସି. ଏକାଡେମିକ୍ ଷ୍ଟାଫ୍ କଲେଜ ଦ୍ୱାରା ପରିଚାଳିତ ସପ୍ତମ ଓ୍ୱେରିଏଣ୍ଟସନ କାର୍ଯ୍ୟକ୍ରମରେ ସାରଙ୍କ ପାଇଁ 'ଚରିତ୍ର ବିକାଶ ଓ ଭଲପାଇବା' ସଂପର୍କରେ ସାମୁହିକ କ୍ଲାସ୍ ନେବାର ବ୍ୟବସ୍ଥା କରାଯାଇଥାଏ । ବ୍ୟକ୍ତି ଜୀବନର ପୂର୍ଣ୍ଣାଙ୍ଗ ବିକାଶ କ୍ଷେତ୍ରରେ କିଭଳି ପ୍ରୟାସ ଆବଶ୍ୟକ ଓ କାର୍ଯ୍ୟକାରୀ କରିବାର ପ୍ରବଣତା ସଂପର୍କରେ ସାର୍ ଯେଉଁ ମାର୍ମିକ ଶିକ୍ଷା ପ୍ରଦାନ କଲେ ଆମେ ଅଧ୍ୟାପକମାନେ ସଂପୂର୍ଣ୍ଣ ମୁଗ୍ଧ ହୋଇଗଲୁ । ସାରଙ୍କ ସହ କଥା ହେବାର ଓ ସେ ଦମ୍ଭିଲା ଭାଷାର ସମ୍ମୁଖୀନ ହେବାର ସୁଯୋଗ ପାଇଲି । କ୍ଲାସ୍‌ରେ ପଢ଼ାଉଥିବା ସେହି ବରେଣ୍ୟ ଗାଳ୍ପିକ, ପ୍ରାବନ୍ଧିକ ଔପନ୍ୟାସିକଙ୍କ ସହ ମିଶିବାର, ମନଖୋଲା କଥା ହେବାର ଅପୂର୍ବ ଆନନ୍ଦରେ ବିଭୋର ହେଲି କିଛିକାଳ । ଗଭୀର ତତ୍ତ୍ୱର ମହତ୍ତ୍ୱ ତଥା ପ୍ରୟୋଗାତ୍ମକ ଶିକ୍ଷାର ଦର୍ଶନକୁ କେତେ ସୁନ୍ଦର, ପ୍ରାଞ୍ଜଳଭାବେ ଯେ ସାର୍ ବୁଝାଇ ପାରନ୍ତି, ଆମେ ସମସ୍ତେ ମନଭରି ଗ୍ରହଣ କରିନେଲୁ ସାରଙ୍କ ପଢ଼ାଇବା

ଶୈଳୀ, କହିବା ଭଙ୍ଗୀ, ପ୍ରଜ୍ଞାବୋଧର ପ୍ରବୀଣତାକୁ । ଏ ବୟସରେ ସାର୍ ଖୁବ୍ ଚଳଚଞ୍ଚଳ, ହସହସ, ଉଦାର, ସ୍ପଷ୍ଟବାଦୀ, ସତ୍ୟନିଷ୍ଠ ଓ ଛାତ୍ରବତ୍ସଳ ତାହା ଯେ ଆମପାଇଁ ଏକ ଉଜ୍ଜ୍ୱଳ ଆହ୍ୱାନଥିଲା । ଖୁବ୍ ଅନୁପ୍ରାଣିତ ହେଲି । ଅନେକ ମଣିଷଙ୍କୁ ଦେଖିଛି ସେମାନେ ଜ୍ଞାନ ଓ ବୁଦ୍ଧିବଳରେ ନିଜର ବିବେକଶକ୍ତିକୁ ପାଖରୁ ହରାଇ ବସିଥାନ୍ତି । ଅନ୍ତରଙ୍ଗତା ପରି ମହାନ ଗୁଣକୁ ଆଦୌ ନିଜ ପାଖରେ ରଖିନଥାନ୍ତି ଯାହା ତାଙ୍କ ବ୍ୟକ୍ତିତ୍ୱ ପାଖରେ ଶୂନ୍ୟତା ଆଣିଥାଏ, କିନ୍ତୁ ସାର୍ ସମସ୍ତଙ୍କ ଠାରୁ ନିଆରା ମଣିଷ । ଭଲପାଇବାର ପ୍ରଚଣ୍ଡ ପ୍ରତୀକ । ମତେ ପଗ୍ଚରିଲେ ସାର୍ ! ତମେ ଏବେ କିଛି ଲେଖା ଲେଖି କରୁଛ କି ନାହିଁ ? ପଢ଼ାପଢ଼ି ତା ସହ ଯେମିତି ନିବିଡ଼ ହୁଏ । ଧ୍ୟାନ ଦେବ । ଲେଖିବାପାଇଁ ତମଠାରେ ପ୍ରବଣତା ଭରି ରହିଛି । ଆଗେଇ ଗ୍ଚଲ । କଥା କେଇପଦ ମତେ ଯେମିତି ଅମୃତ ପିଇଲାପରି ଲାଗୁଛି । ସଦାବେଳେ ପାଖରେ ସାଇତା ହୋଇ ରହିଛି । କେବେ କେମିତି ପାର୍ଥିବ ଜଂଜାଳ ମଧ୍ୟରେ ଘାଣ୍ଟିହେଲାବେଳେ ଏଇ କେତେ ପଦ କଥା ପୁଣି ଆଗକୁ ଯିବାପାଇଁ, ଆଲୋକ ଆଡ଼କୁ ଅଗ୍ରସର ହେବାପାଇଁ ନୂଆ ଲେଖାରେ ବୁଡିଯିବାପାଇଁ ପ୍ରେରଣା ଦେଉଛି । ଆ'ଠୁବଳି ଅନ୍ତରଙ୍ଗ କଣ ଥାଇପାରେ ? ଆ'ଠୁ ବଳି ଶ୍ରଦ୍ଧାନୁଭୂତି ଆଉ କଣ ହୋଇପାରେ ? ସାରଙ୍କ ୭୫ତମ ଜନ୍ମତିଥିରେ ମୁଁ ଅଭିନନ୍ଦନଟିଏ ପଠାଇନାହିଁ; ପଠାଉଛି ସାର ଲେଖିଥିବା ଅନ୍ତରଙ୍ଗ କଥାରୁ କିଛି ଅନ୍ତରର ଭାଷା । ସାରଙ୍କୁ ସାର କାହିଁକି କହୁଛି ବୋଲି କଥାଟିକୁ ସ୍ପଷ୍ଟକରି ଦେଉଛି ଯେ, ପ୍ରତ୍ୟକ୍ଷଭାବେ ପଢ଼ିନଥିବା ଅଧମଟି ଦୂରରୁ ପଢ଼ି ପଢ଼ି ପଢ଼ାଇ ପଚାଇ ଆଉ ଶୁଣି ଶୁଣି ମୋର ଗୁରୁ ବୋଲି ଗ୍ରହଣ କରିନେଇଛି । ଆପେ ଆପେ ସାର ହୋଇଯାଇଛନ୍ତି ରଥ ସାର । +୩ କ୍ଲାସରେ ସାରଙ୍କ ଗଳ୍ପ 'ସମ୍ରାଟ' ଓ ପ୍ରବନ୍ଧ 'ଏଣିକି କିଛି ଭୁଲାଯାଉ' । ପଢ଼ାଇବା ବେଳେ ମୁଁ ଯେତିକି ମୁଗ୍ଧ ହୋଇଛି ମୋ ଛାତ୍ରମାନେ ତା'ଠୁ ଅଧିକ ସନ୍ତୁଷ୍ଟ ହୋଇଛନ୍ତି । ଲେଖାରେ ଲେଖାରେ ଅନ୍ତରଙ୍ଗତା ଓ ସହୃଦୟତାପଣ ଓ ସାହିତ୍ୟ ମାଧ୍ୟମରେ ସତ୍ୟର ଅନୁସଂଧାନ କରିବାର ସ୍ପଷ୍ଟ ଦିଗ ଉନ୍ମୋଚନ ହିଁ ସାରଙ୍କ ଏଇ କେତୋଟି ଲେଖା ଛାତ୍ରମାନଙ୍କୁ ମନ୍ତ୍ରମୁଗ୍ଧ କରିଛି । ସାରଙ୍କ ଯନ୍ତ୍ରାରୂଢ଼, ଅସୂର୍ଯ୍ୟଉପନିବେଶ, ନବଜାତକ ଭଳି ଉପନ୍ୟାସ ଯେତିକି ପାଠକୀୟ ଶ୍ରଦ୍ଧା ଲାଭ କରିଛି ତା'ଠୁ ବେଶି ଅନ୍ତରଙ୍ଗ ଲାଗିଛି ବନ୍ୟାପରେ, ଅଶ୍ୱାରୋହୀର ଗଳ୍ପ, ସମ୍ରାଟ ଓ ଅନ୍ୟମାନେ, ଅନ୍ୟଏକ ସକାଳ, ସବୁଯାକ ସ୍ୱପ୍ନ ପ୍ରଭୃତି ଗଳ୍ପ ସାହିତ୍ୟ । ଆଧୁନିକ ମଣିଷର ଅନ୍ତର୍ନିହିତ ସ୍ୱରୂପ ତାଙ୍କ ଗଳ୍ପର ହିଁ ଆଭିମୁଖ୍ୟ । ଗଳ୍ପରେ ମାନବିକ ସମ୍ବେଦନ ଯେମିତି ଭରପୁର ରହିଛି ସେମିତି ଅନ୍ତରଙ୍ଗତା ପଣଟି ବାଂଧି ରଖିଛି ସମସ୍ତ ସହୃଦୟ ମଣିଷମାନଙ୍କୁ । ମଣିଷମନର ଭ୍ରାନ୍ତ ଅହମିକାପ୍ରତି ବିଦ୍ରୁପ କରିଥିବା ସାରଙ୍କ ଜୀବନଚର୍ଯ୍ୟା ସତେ ଯେମିତି ଏକ ସ୍ୱତନ୍ତ୍ର ଆହ୍ୱାନ ପରି ମନେହୁଏ ।

ସାରଙ୍କ ଓଜସ୍ୱିନୀ ଭାଷଣ, ସହୃଦୟତାଭରା କଥା, ଲେଖାରେ ଅନ୍ତରଙ୍ଗତା ମତେ ଯେମିତି ମୁଗ୍ଧ କରିଛି ଠିକ୍ ସେମିତି ଅନେକଙ୍କ ହୃଦୟରେ ସ୍ୱତନ୍ତ୍ର ସ୍ପନ୍ଦନ ସୃଷ୍ଟି କରିଛି । ଓଡ଼ିଆ ସାହିତ୍ୟର ଜଣେ ଉଜ୍ଜ୍ୱଳ ନକ୍ଷତ୍ର ପ୍ରଫେସର ଚନ୍ଦ୍ରଶେଖର ରଥଙ୍କ ୭୫ତମ ଜୟନ୍ତୀ ଅବସରରେ ଏ ଅଧମର ଅନ୍ତରଭରା ଶୁଭକାମନା । ସାର ନିରୋଗୀ ରୁହନ୍ତୁ, ସେମିତି ହସହସ ମୁହଁରେ କଥା ହେଉଥାନ୍ତୁ, ନିଆରା ନିଆରା ଅନୁଭବର ଲେଖା ଲେଖୁଥାନ୍ତୁ । ଆମ ଅନ୍ତରରେ ସଦାବେଳେ ରହିଥାନ୍ତୁ, ଆମ ଆଖି ସାମ୍ନାରେ ବାରମ୍ବାର ଦୃଶ୍ୟମାନ ହେଉଥାନ୍ତୁ ଓଡ଼ିଆ ସାହିତ୍ୟକାବ୍ୟକୁ ସମୃଦ୍ଧ କରୁଥାନ୍ତୁ ଏହାହିଁ ହେଉବୋଲି ପରମକାରୁଣିକଙ୍କ ପାଖରେ କୋଟି ପ୍ରଣତି ବାଢ଼ୁଛି । ସାରଙ୍କ ଅନ୍ତରଙ୍ଗ ମଧୁବୋଳା କଥା କେଇପଦ ଆଶାରେ ଏଇଠି ରହୁଛି ।

ଓଡ଼ିଆ ବିଭାଗ, ପଞ୍ଚାୟତ ସମିତି କଲେଜ
ସା/ପୋ :- ଝାରବନ୍ଧ, ଜିଲ୍ଲା - ବରଗଡ଼ - ୭୬୮୦୪୨

***

# ସାରସ୍ୱତ ଜଗତର ବିଶ୍ୱକର୍ମା : ଚନ୍ଦ୍ରଶେଖର ରଥ

ପ୍ରଫୁଲ୍ଲ କୁମାର ଦାସ

ସାମ୍ପ୍ରତିକ ଓଡ଼ିଆ କଥା ସାହିତ୍ୟର ଭିତ୍ତି ଓ ଭାରତୀରେ ଶତାବ୍ଦୀର ଶାଶ୍ୱତ ଓ ସାରସ୍ୱତ ସାଧକ ଚନ୍ଦ୍ରଶେଖର ରଥ ଏକ ଉଜ୍ଜ୍ୱଳତମ ବ୍ୟକ୍ତିତ୍ୱ । ଓଡ଼ିଆ ଜାତିକୁ ଓ ଓଡ଼ିଆ ଭାଷା ସାହିତ୍ୟକୁ ତାଙ୍କ ଦାନ ଅନବଦ୍ୟ ଏବଂ ଅବିସ୍ମରଣୀୟ ତାଙ୍କର ସାହିତ୍ୟିକ ପ୍ରକୃତି ହୀରାମୋତି ସଂସ୍କୃତି । ଚିତ୍ରମୟୀ ଓଡ଼ିଶା ଅଙ୍ଗନର ଏକ ସୁବର୍ଣ୍ଣ ଶାଶ୍ୱତ ପ୍ରଦୀପ । ତାଙ୍କର କୀର୍ତ୍ତି ବହୁଳ କୃତି ପଞ୍ଜିକାର ଅମ୍ଳାନ ପୃଷ୍ଠା ଉନ୍ମୋଚନ କଲେ ଆଧୁନିକ ଓଡ଼ିଆ କଥା ସାହିତ୍ୟର ଲିପି କୋଣାର୍କ ସନ୍ଦର୍ଶନ କରିହୁଏ । କୋଟି ଐଶ୍ୱର୍ଯ୍ୟମୟୀ, କଳାମୟୀ ସାହିତ୍ୟ ବୁକୁରେ ସେ ଏକ କାଳଜୟୀ ପାରିଜାତ ଶୋଭା ସୁମନ । ତାଙ୍କ ପ୍ରତିଭାର ଭାବାତ୍ମା ବିପ୍ଳବ, ବିଦ୍ରୋହ, ମାନବିକତା ଦରଦତାର ରୁଦ୍ଧିମନ୍ତ ହୋଇଛି । ଆଜି କେବଳ ନୁହଁ, ଯେତେ ଦିନ ପର୍ଯ୍ୟନ୍ତ ସାମ୍ପ୍ରତିକ ଓଡ଼ିଆ କଥା ସାହିତ୍ୟ ବଙ୍ଗୋପସାଗର ପରି କଲ୍ଲୋଳିତ କରି ତରଙ୍ଗ ଜିହ୍ୱାରେ ହସୁଥିବ ସେତେଦିନ ପର୍ଯ୍ୟନ୍ତ ଶ୍ରୀଯୁକ୍ତ ରଥଙ୍କର କୀର୍ତ୍ତି ଓ କୃତୀତ୍ୱ ଚିର ଜାଜ୍ୱଲ୍ୟମାନ ହୋଇ ରହିଥିବ । କେବଳ ସେତିକି ନୁହଁ, ହାସ୍ୟମୟୀ, ଲାସ୍ୟମୟୀ ଉତ୍କଳ ଭାରତୀଙ୍କ ଶାଶ୍ୱତ କୋଳରେ ତାଙ୍କର ଚିରମନଲୋଭା ଦୀପ୍ତି ଓ ଦ୍ୟୁତି ଶତ ଉଜ୍ଜ୍ୱଳତର ହେଉଥିବ ।

ସେ ଆଜି ବିପୁଳ ସାଧନାର ଅଧିକାରୀ । ସେ ଜୀବନର ୭୫ ବର୍ଷରେ ପଦାର୍ପଣ କରିଥିଲେ ହେଁ, ତଥାପି ତାଙ୍କର ବହୁମୂଲ୍ୟ ସାହିତ୍ୟିକ ଜୀବନ ଜଳଗଙ୍ଗା ପରି କଳ କଳ ଛଳ ଛଳ ସ୍ୱରରେ ହସି ବହିଯାଉଛି । ଗଳ୍ପ, ଉପନ୍ୟାସ, ଆଲୋଚନା ଓ ଅନୁବାଦ ମଧ୍ୟରେ ସମନ୍ୱୟ ଭାବର ଏକ ଅନୁପମ ପରିପ୍ରକାଶ ଚନ୍ଦ୍ରଶେଖର ରଥ । ନିରାଭିଳାଷ ସିଦ୍ଧିରେ ପରିପୂର୍ଣ୍ଣ ତାଙ୍କର ସାରସ୍ୱତ ସାଧନା । ସେ ଜଣେ କାଳୋତ୍ତୀର୍ଣ୍ଣ ଶତାବ୍ଦୀ ସାଧକ ଯାହାଙ୍କର ଜୀବନର ଅନନ୍ୟ ଆଦର୍ଶ ଯୁଗେ ଯୁଗେ ଉତ୍ତର ପୀଢ଼ିଙ୍କୁ ଆଲୋକର ବିଜୟ ପଥ ଦେଖାଇବାକୁ ଅମ୍ଳାନ ଦୀପ ଶିଖା ହୋଇ ଗ୍ରହିଁ ରହିଥିବ । ସୁଖ ଦୁଃଖର, ହର୍ଷ ବିଷାଦର ଅଙ୍କା ବଙ୍କା ନଈ ପରି ଯାହାଙ୍କର ସୁଲଳିତ ଆଶା, କବିତା ପରି ନମନୀୟ, ଲୋଭନୀୟ ଯାହାଙ୍କର ଭାଷା । ରୂପ, ରସ ରଙ୍ଗର ରୋଶଣୀ ଲାଗିଛି ଯାହାଙ୍କ ସୃଜନଶୀଳ ଅମୃତ ଲେଖନୀରେ । ତାଙ୍କର ଚିତ୍ରମୟୀ ଲେଖା ଓ ଅମୃତମୟୀ ରେଖା ସତେ ଯେପରି ପାଲଟି ଯାଇଛି ଅକ ଅଭିନବ ଆକୃତି ହୋଇ । ନାନା ଅଭିଜ୍ଞତାର ସମୃଦ୍ଧ ଶ୍ରୀ ରଥଙ୍କର ତାତ୍ପର୍ଯ୍ୟପୂର୍ଣ୍ଣ ସୁବର୍ଣ୍ଣ ଆଲେଖ୍ୟ । ସାମ୍ପ୍ରତିକ ଯୁଗର ସଫଳ ସ୍ରଷ୍ଟାଙ୍କର ସୌମ୍ୟ ସରଳ

ଗଦ୍ୟର ସରସ୍ୱତୀ ମନ୍ତ୍ରମୁଗ୍ଧ କରି ରଖିଛି ସୁଧୀ ପାଠକ ପାଠିକାଙ୍କୁ ଚୁମ୍ବକୀୟ ଯାଦୁକରୀ ଆକର୍ଷଣରେ ।

ପ୍ରବୀଣ ବାଣୀ ସାଧକଙ୍କ ବଳିଷ୍ଠ ଲେଖନୀରେ ସମୃଦ୍ଧି ହୋଇଛି ରସାଳ ବିଶାଳ ଓଡ଼ିଆ କଥା ସାହିତ୍ୟର ସରୋବର । ଯେଉଁ ସବୁ କଥା ଗାଥା ଆଧୁନିକ ଓଡ଼ିଶାର ପ୍ରାଣ ପୀଠରେ ସେ ପ୍ରତିଷ୍ଠା କରି ଯାଇଛନ୍ତି ତାହା ତାଙ୍କୁ ଯୁଗେ ଯୁଗେ ମହିମା ମଣ୍ଡିତ କରି ରଖିବ ଏଥିରେ ତିଳେ ମାତ୍ର ସନ୍ଦେହ ନାହିଁ । ତାଙ୍କର ସମଗ୍ର ସୃଷ୍ଟି ସମୃଦ୍ଧ ରତ୍ନ ଭଣ୍ଡାର । ଓଡ଼ିଆ ମଣିଷର ମନ ମାନ ଚିତ୍ର । ସଭ୍ୟ ଶିକ୍ଷିତ ପାଠକର ଉପଭୋଗ୍ୟ । ରଥଙ୍କର ସାହିତ୍ୟ ସୁନ୍ଦର ବନପରି ଭୀଷଣ ଗମ୍ଭୀର ତଥାପି ତାଙ୍କର ସାହିତ୍ୟିକ ନୀଳିମା ଜନମନ ଲୋଭନୀୟ । ଉତ୍କଳ ଭାରତୀଙ୍କ କମନୀୟ, ନମନୀୟ ଶବ୍ଦ ପାରିଜାତ ଶଯ୍ୟା ଉପରେ ତାଙ୍କ ସାହିତ୍ୟର ରୁଦ୍ର ସୁନ୍ଦର ପ୍ରଳୟ ପ୍ଲାବନ ଦୃଷ୍ଟିଗୋଚର ହୁଏ । ତାଙ୍କର ଭାରତୀ ସାମ୍ପ୍ରତିକ ସାହିତ୍ୟ ଆକାଶର ଉଲ୍‌କା ପରି ମନେ ହେଲେ ବି ଶିକ୍ଷିତ ପାଠକଙ୍କ ପକ୍ଷରେ ମହୋଜ୍ଜ୍ୱଳ ହୀରା ପରି ରୁଚିପ୍ରଦ । ଜଣେ ଚିନ୍ତାଶୀଳ ପ୍ରଜ୍ଞାନିଷ୍ଠ ଦୂରଦ୍ରଷ୍ଟା କଥାଶିଳ୍ପୀ ଭାବରେ ତାଙ୍କର ମନ ଓ ମୂନର ଚିରନ୍ତନ ଅବଦନାକୁ ଗୌରବମୟ ଓଡ଼ିଆ ସାହିତ୍ୟର ବର୍ଣ୍ଣ ବୈଚିତ୍ର୍ୟ ଇତିହାସ କେବେବି ବିସ୍ମରଣ କରିପାରିବ ନାହିଁ । ତାଙ୍କର ଶାଶ୍ୱତ ସୃଷ୍ଟି ଓ ଦୃଷ୍ଟି ଓଡ଼ିଶାର ସୁଧୀ ସୃଜନଶୀଳ ପାଠକଙ୍କ ହୃଦୟରେ ଗଭୀର ଓ ଗମ୍ଭୀର ଭାବରେ ରେଖାପାତ କରିପାରିଛି ।

ବୀଜରୁ ଅଙ୍କୁରର ଉଦ୍‌ଗମ ପରି, ଗଛରେ ଫୁଲର ପ୍ରସ୍ଫୁଟନ ପରି, ଫୁଲରେ ସୌରଭର ସଞ୍ଚାର ପରି ତାଙ୍କର ସୁକୁମାର କମନୀୟ ଲେଖନୀ ଅବିରାମ ଗତିରେ ଯମୁନାର ଉଜାଣି ସ୍ରୋତରେ ମାତି ଉଠିଛି । ଉତ୍କଳ ଭାରତୀଙ୍କ ଚିନ୍ତା ଚେତନା ଓ ସ୍ୱପ୍ନ ଏବଂ ସମ୍ଭାବନା ମାନନୀୟ ଅତିଥି ପରି ଧାଇଁ ଆସିଛି ଲେଖକଙ୍କ ମେଘୁଆ ପେଜୁଆ ଆଖିରେ ମମତା ମଞ୍ଜୁଳ କଥା ଓ କାହାଣୀ ଶବ୍ଦ ମନ୍ଦାକିନୀର ସ୍ୱର ତୋଳିଛି । ମର ଶରୀର କଥା କହିଛି, ଗୀତ ଗାଇଛି ହଜି ଯାଇଥିବା ସ୍ୱପ୍ନ । ରାଗିଣୀ ତୋଳିଛି ବିଲ ବଣ ଆକାଶ । ଜୀବନ ଯନ୍ତ୍ରଣାର ଖରସ୍ରୋତାରେ ଉବୁଟୁବୁ ହୋଇ ତାଙ୍କ ମାନସ ସୃଷ୍ଟି କାରୁଣ୍ୟ ଭାଷାରେ କରୁଣ ରାଗିଣୀ ସାଜି ହସିଛି, ଭାସିଛି । ସତ୍ୟକୁ ସତ ବୋଲି କହିବାକୁ କଳ୍ପନାର ବ୍ୟାକରଣ ରଣଦୁନ୍ଦୁଭି ସାଜିଛି । ଉତ୍କଳ ଭାରତୀଙ୍କ ସାରସ୍ୱତ କୋଳ ମଣ୍ଡନ କରିବା ପାଇଁ ତାଙ୍କୁ ବହୁ ପ୍ରତିଭାଶାଳୀ ସେନାପତିଙ୍କ ସହିତ ଶତ ସଂଗ୍ରାମ କରିବାକୁ ପଡ଼ିଛି । ଶେଷରେ ନୂଆ ରାସ୍ତାଟିଏ ନିର୍ମାଣ କରିଛନ୍ତି । କଥା ଓ ବ୍ୟଥାକୁ ଅତିରଞ୍ଜିତ ନ କରି ରୋକ୍ ଠୋକ୍ ଭାବେ ପରି ପ୍ରକାଶ କରିଛନ୍ତି । ଶିଳ୍ପୀ ଅହରହ ସନ୍ତାନ ଶିଳାରେ କ୍ଷତ ବିକ୍ଷତ ହୋଇଥିଲେ ମଧ୍ୟ ଦୁର୍ବଳ ହୋଇ ନାହାଁନ୍ତି । ତାଙ୍କର ମସ୍ତିଷ୍କ ଶିଶୁ ଦେବକୀର ଅଷ୍ଟମ ଗର୍ଭର ସନ୍ତାନ

ପରି ଦୁର୍ଭେଦ୍ୟ ପ୍ରାଚୀର, ଲୌହ ଶୃଙ୍ଖଳ ଭାଙ୍ଗି ସାମ୍ପ୍ରତିକ କଥା ସାହିତ୍ୟକୁ ଗୋପରେ ବଢ଼ିବାପାଇଁ ସୁଯୋଗ ଦେଇଛି । ମଣିଷର ଶ୍ୱାସ କ୍ରିୟା ପରି ଲେଖି ବଞ୍ଚିବା ତାଙ୍କର ସ୍ୱାଭାବିକ ଧର୍ମ ଓ କର୍ମ ପାଲଟିଛି । ଧସ୍ତା ଧସ୍ତି ଯୋଗାଡ଼ ଯୁଗରେ ମାରପେଞ୍ଚ ଓସ୍ତାଦି କରି ପୁରସ୍କାର ଓ ସମ୍ମାନର ଟିକିଏ ଲାଳସା ବି ରଖିନାହାଁନ୍ତି ।

ବରେଣ୍ୟ ସ୍ରଷ୍ଟାଙ୍କ ଅମର ଅଜର ସୃଷ୍ଟିରେ ଉତ୍ତର ଅଶୀର କଥା ସାହିତ୍ୟ ବହୁ ପରିମାଣରେ ସମୃଦ୍ଧ । ତାଙ୍କ ସୃଷ୍ଟିର ଚିତ୍ର ଓ ଚେହେରା ବହୁ ସାଧନାରେ ପରିପୁଷ୍ଟ । ଯାହା ଉତ୍ତର ପୁରୁଷ ପାଇଁ ଗର୍ବ ଗୌରବ ଓ ଶୋଭା ସୌରଭ ଆଣି ଦେଇଛି । ତାଙ୍କର ସ୍ୱତନ୍ତ୍ର ଦୃଷ୍ଟିଭଙ୍ଗୀ ଆଧୁନିକ ଯୁଗ ଯନ୍ତ୍ରଣାର ଅସଲ ପରିଚୟ ହୋଇଛି । ତାଙ୍କର ଜିଜ୍ଞାସା ସାହିତ୍ୟ ମଧୁବନରେ ରହସ୍ୟ ରୋମାଞ୍ଚ ସୃଷ୍ଟି କରିଛି । ଖାଣ୍ଟି ଓଡ଼ିଆ ମଣିଷଙ୍କ ମନ ମାନ ଚିତ୍ରରେ ସେ ସଫଳ ସାହିତ୍ୟ ସରଣୀ ଓ ପ୍ରଜ୍ଞାଶୀଳ ସାରସ୍ୱତ ବିନ୍ଧାଣୀ ଏହା ସ୍ୱୀକାର୍ଯ୍ୟ । ସମୟର ଶୁଭ୍ର ସୁନ୍ଦର ରୂପକୁ ସେ ପ୍ରଜ୍ଞାରେ ହିରଣ୍ମୟ କରି ଉଦ୍‌ଭାସିତ କରିଛନ୍ତି । ତାଙ୍କ ସାହିତ୍ୟର ସୁଖଶାଳା ପ୍ରାଚ୍ୟ ପାଶ୍ଚାତ୍ୟ ଜୀବନ ବୋଧ, ମାନବିକ ମୂଲ୍ୟବୋଧ ସ୍ୱାଦ ଓ ସ୍ପର୍ଶରେ ଅନନ୍ୟ । କଥା ସାହିତ୍ୟର ରୁଚିପୂର୍ଣ୍ଣ ଶୈଳୀ ପାଇଁ ତାଙ୍କ ସୃଷ୍ଟି ଖ୍ୟାତିର ଶୀର୍ଷ ଦେଶରେ । ବାସ୍ତବରେ ସେ ଭିନ୍ନ ଏକ ଫକୀରମୋହନ ଓ ଅନ୍ୟ ଏକ ଶାନ୍ତନୁ ଆଚାର୍ଯ୍ୟ । ପଶ୍ଚିମ ଓଡ଼ିଶା ବଲାଙ୍ଗୀରରେ ଜନ୍ମଗ୍ରହଣ କରିଥିବା ସାରସ୍ୱତ ବ୍ୟକ୍ତିଙ୍କ ମଧ୍ୟରେ କଥାକାର ଚନ୍ଦ୍ରଶେଖର ରଥ ବେଶ୍ ସୁପରିଚିତ ବ୍ୟକ୍ତିତ୍ୱ । ବେଦଦତ୍ତ ସାରସ୍ୱତ ପ୍ରତିଭାର ଅଧିକାରୀ ହୋଇଥିବାରୁ ସେ ପ୍ରତିକୂଳ ପରିବେଶ ମଧ୍ୟରେ ମଧ୍ୟ ଅତ୍ୟାଧୁନିକ ଓଡ଼ିଆ ଭାଷା ସାହିତ୍ୟ ଓ ସଂସ୍କୃତିର ଯେଉଁ ନୂଆ ରାଜରାସ୍ତା ଦେଖାଇଛନ୍ତି ତାହା ସାମ୍ପ୍ରତିକ ଓଡ଼ିଆ ସାହିତ୍ୟ ଇତିହାସରେ ଏକ ବିରଳ ଗୁରୁତ୍ୱପୂର୍ଣ୍ଣ ଘଟଣା ।

୧୯୨୯ ମସିହା ପବିତ୍ର ଅକ୍ଟୋବର ୧୭ ତାରିଖରେ ବଲାଙ୍ଗୀରରେ ପିତା କେଳଇ ରଥ ଓ ମାତା ଚମ୍ପାଦେବୀଙ୍କ ସନ୍ତାନ ରୂପରେ ସେ ଭୂମିଷ୍ଠ ହୋଇଥିଲେ । ପ୍ରଥିତ ଯଶା ସାହିତ୍ୟିକ, ଲବ୍ଧ ପ୍ରତିଷ୍ଠ ଔପନ୍ୟାସିକ, ପ୍ରବୀଣ ଗାଳ୍ପିକ, ସମାଲୋଚକ, ସମୀକ୍ଷକ ଓ ସଫଳ ଅନୁବାଦକ ଆଦି ଅନେକ ବିଶେଷଣରେ ବିମଣ୍ଡିତ ଚିନ୍ତାଧାରାରେ ସେ ରୂପାୟିତ ହୋଇଛନ୍ତି । ଆଧୁନିକ ଉତ୍କଳୀୟ ଅସ୍ମିତାର ଅନିର୍ବାଣ ଆଲୋକ ବର୍ତ୍ତିକା ଚନ୍ଦ୍ରଶେଖର ରଥ ଯନ୍ତ୍ରାରୂଢ଼, ଅସୂର୍ଯ୍ୟ ଉପନିବେଶ, ନବଜାତକ ଉପନ୍ୟାସ, ଅନେକ ବନ୍ୟା ପରେ, ଅଶ୍ୱାରୋହୀର ଗଳ୍ପ, ସମ୍ରାଟ ଓ ଅନ୍ୟମାନେ, ଅନ୍ୟ ଏକ ସକାଳ, ସବୁଯାକ ସ୍ୱପ୍ନ କ୍ଷୁଦ୍ର ଗଳ୍ପ, ଦୃଷ୍ଟି ଓ ଦର୍ଶନ, ଏ ଯେଉଁ ପୃଥିବୀ, ଅଶ୍ରୁତ ସ୍ୱର, ମୁଁ ସତ୍ୟାଧର୍ମ କହୁଛି, ମଧୁସନ୍ଧାନ, ଉତ୍ତର ଅରଣ୍ୟ, କ୍ରୀତ ଦାସର ସ୍ୱପ୍ନ ଆଲୋଚନା ଓ ସାଗର ବିହଙ୍ଗ ଆଦି ଅନୁବାଦ ପୁସ୍ତକ ରଚନା କରି ଉତ୍କଳ ଭାରତୀଙ୍କ କୋଳପୂର୍ଣ୍ଣ କରିଛନ୍ତି । କଥା ସାହିତ୍ୟ ହେଉଛି ଜଣେ ଉତ୍ତମ ବ୍ୟକ୍ତିତ୍ୱର ସାର୍ଥକ ସର୍ବୋତ୍ତମ ପରିପ୍ରକାଶ ।

କଥାକାର ରଥଙ୍କ ଲେଖାରେ ଅନ୍ୟତମ ଆକର୍ଷଣ ହେଉଛି ସମସାମୟିକ ଜନ ଜୀବନର ନିଛକ ସାମାଜିକ ଚିତ୍ର । ସତ୍ୟର ଜୟଗାନରେ ତାଙ୍କର ନିର୍ଭୟ ଲେଖନୀ ଚଳଚଞ୍ଚଳ ହୋଇ ଉଠିଛି । ସାହିତ୍ୟର ପ୍ରତ୍ୟେକଟି ବିଭାଗରେ ଲେଖନୀ ଚ୍ଳନା କରି ଓଡ଼ିଆ କଥା ସାହିତ୍ୟକୁ ସର୍ବାଙ୍ଗ ସୁନ୍ଦର ଓ ସମୃଦ୍ଧ କରିଛନ୍ତି । ଚଳିତ ଶତାବ୍ଦୀର ବହୁ ଚର୍ଚ୍ଚିତ ବ୍ୟକ୍ତିତ୍ୱ ଅପରାଜୟ କଥାକାର ଚନ୍ଦ୍ରଶେଖର ରଥଙ୍କ ଅଭିନନ୍ଦନିକା ଗ୍ରନ୍ଥର ଏକ ସାରସ୍ୱତ ଲଗ୍ନରେ ଜଗନ୍ନାଥଙ୍କ ନିକଟରେ ଶୁଭ ମନାସୁଅଛି ତାଙ୍କର ଅସୀ ମସୀ ଗଙ୍ଗାର ନିର୍ଝର ପରି ଗଗନ ପବନ ମୁଖରିତ କରୁ ।

ସାହିତ୍ୟ ସଂସ୍କୃତିର ତପୋବନ, କଥା କାହାଣୀର ନନ୍ଦନକାନନ ଉତ୍କଳ ଭାରତୀଙ୍କ ମନବୃନ୍ଦାବନରେ ଏକ ସ୍ୱତନ୍ତ୍ର କାଳଜୟୀ ଓ କଳାଜୟୀ ମାଇଲିଖୁଣ୍ଟି ପ୍ରତିଷ୍ଠା କରି କୀର୍ତ୍ତି ଓ କୃତିତ୍ୱରେ ହିରଣ୍ମୟ ବେଳାଭୂମିରେ ସ୍ୱର୍ଣ୍ଣ ତରଙ୍ଗ ସୃଷ୍ଟି କରିଛନ୍ତି ସେଥିପାଇଁ ଏ କ୍ଷୁଦ୍ର ପ୍ରବନ୍ଧରେ ଅଭିନନ୍ଦନ ଜ୍ଞାପନ କରୁଛି । ଶ୍ରୀ ରଥଙ୍କ ତୁଳୀକା ସ୍ପର୍ଶରେ ଗଦ୍ୟରେ ଫୁଟିଛି ଫୁଲ ସୌନ୍ଦର୍ଯ୍ୟର ଗୋଲାପ ହୋଇ । ପ୍ରଜ୍ଞାର ଉତ୍ତୁଙ୍ଗ ଶୃଙ୍ଗର ଚିରନ୍ତନ ଉତ୍ସ ବହୁମୁଖୀ ପ୍ରତିଭାର ଏକ ଅଚିନ୍ତନୀୟ ବ୍ୟକ୍ତିତ୍ୱ ଚନ୍ଦ୍ରଶେଖର ରଥ । ତାଙ୍କର ସାରସ୍ୱତ କୃତୀତ୍ୱ ଅତ୍ୟନ୍ତ ଉଚ୍ଚକୋଟୀର । ତାଙ୍କ ଚେତନାର ଶବ୍ଦ ତରଙ୍ଗ ଓ ଚିନ୍ତାର ମାଧୁରୀ ଏବଂ ଆବେଗର ମାଧୁରିମା ଭାସି ଆସେ ନୂତନ ସଂସ୍କାରଧର୍ମୀ ସ୍ପର୍ଶରେ । ଅଭିନବ ଦୃଷ୍ଟି ଦର୍ଶନର ଏକ ଲଳିତ ମଧୁର ବଂଶୀ ସ୍ୱର ଭାସିଆସେ ସେ କଳାବିଳାସିନୀ ଉତ୍କଳ ଭାରତୀଙ୍କ ପ୍ରଗତି ପ୍ରକାଶ ପାଇଁ । ଚିର ପରିବର୍ତ୍ତନ ଶୀଳ ସାହିତ୍ୟରେ ପ୍ରତି ମୁହୂର୍ତ୍ତରେ ରଙ୍ଗ ବଦଳାଇଛି ସଂସ୍କୃତିର ଭାବଧାରା । ବଦଳି ଚ୍ଳିଛି ଲେଖା ରେଖାର ପରମ୍ପରା କିନ୍ତୁ ସବୁ କାଳରେ ପ୍ରତିଭାଶାଳୀ କଥାକାର ଚନ୍ଦ୍ରଶେଖରଙ୍କ ଅମଳିନ ଗଦ୍ୟ ଶୈଳୀ ଐଶ୍ୱର୍ଯ୍ୟର ମର୍ଯ୍ୟାଦା ନେଇ ବଞ୍ଚିରହିବ ଯୁଗଯୁଗକୁ । ଏଭଳି ପ୍ରଗତିଶୀଳ ଚିନ୍ତାଧାରାର ପ୍ରଚ୍ଛଦପଟରେ ନାଚିଯାଏ ରଥଙ୍କର ନବଯୁଗର ଗୋଧୂଳି । ଅଭିନନ୍ଦନୀକା ଅଭ୍ୟୁଦୟ ପର୍ବରେ କୃତଜ୍ଞତା ଜଣାଉଛି ।

ସମ୍ପାଦକ, ଗୋପବନ୍ଧୁ ସାହିତ୍ୟ ସଂସଦ,
ଚ୍ନ୍ଦବାଲି, ଭଦ୍ରକ - ୭୫୬୧୩୩, ଓଡ଼ିଶା

***

# ମୋ କଥା-ସାହିତ୍ୟର ପ୍ରଥମ ଗୁରୁ
# ଶ୍ରୀ ଚନ୍ଦ୍ରଶେଖର ରଥ

***ଦେବବ୍ରତ ମଦନରାୟ***

ଏ କଥା ସତ, ମୋ ଲେଖକୀୟ ଜୀବନର ପ୍ରଥମ ସ୍ଫୁରଣ ହେଉଛି କବିତା । କବିତା କାହିଁକି ପଗ୍ଚରିଲେ ମୁଁ କହିବି, ସେଇ ସମୟରେ ସବୁଠି କେବଳ କବିତା ହିଁ ଦେଖୁଥିଲି । ପାହାଡ଼ରେ, ମେଘରେ, ଗଛରେ, ନଗରରେ ଏବଂ ଫ୍ରକ୍ ପିନ୍ଧା ଝିଅଟିର ଓଠରେ । ସ୍ୱପ୍ନ ଦେଖିବା ଏବଂ ପ୍ରେମ କରିବା ବୟସ ସକାଶେ । ସ୍ୱପ୍ନ ଦେଖିଛି । ମାତ୍ର ପ୍ରେମ କରିନାହିଁ । ସେଥିପାଇଁ ଠିକ୍‌ଭାବେ ଗଢ଼ି ପାରିଲି ନାହିଁ କବିତାର ଶବ୍ଦ । ପ୍ରାଣ ଭରିପାରିଲି ନାହିଁ । କବିତା ଦେହରେ ।

ଗଦ୍ୟମୟ ହେଲା ମୋ କବିତା ।

ବୋଧେ ୧୯୮୧ ମସିହାର କଥା । ଜଣେ ବନ୍ଧୁଙ୍କ ଘରକୁ ଯାଇଥାଏ । ତାଙ୍କର ବହି ଥାକରେ ଦେଖିଲି ଗୋଟେ ବହି । ନାଁ ତା'ର 'ଅନେକ ବନ୍ୟା ପରେ' । ଲେଖକ ଶ୍ରୀ ଚନ୍ଦ୍ରଶେଖର ରଥ । ଧୂଳି ଜମିଯାଇ ଥାଏ ତା'ଉପରେ । କାହିଁକି କେଜାଣି ବହିଟିକୁ ହାତରେ ଧରିଲି । ଝାଡ଼ିଦେଲି ଧୂଳି । ବନ୍ଧୁ ପଗ୍ଚରିଲେ, ବହିଟିକୁ ନେବେ କି ? ଛୋଟ ଉତ୍ତର ଦେଲି, ହଁ ।

ଫେରିଲା ବେଳକୁ ମୋ ହାତରେ ଥାଏ ସେଇ ବହି ।

ଘରେ ପହଞ୍ଚିଲି । ଧୋଇ ଧାଇ ହେଲି । ତା'ପରେ ଲେଉଟାଇଲି 'ଅନେକ ବନ୍ୟା ପରେ' ବହିର ପୃଷ୍ଠା । ପୃଷ୍ଠା ପରେ ପୃଷ୍ଠା । ୧୦୪ ପୃଷ୍ଠା ଲେଉଟାଇଲା ବେଳକୁ ରାତି ଦୁଇ ।

ସେଇ ରାତି ମୋତେ ଚିହ୍ନାଇଦେଲା ଗୋଟେ ପଥ । ଯେଉଁ ପଥ ଛୁଇଁଥାଏ ଗପର ରାଜ୍ୟକୁ । ଶିଖାଇ ଦେଲା ମୋତେ ଗୋଟେ ଉପାୟ । ଯେଉଁ ଉପାୟରେ ପହଞ୍ଚିହୁଏ ସେଇ ରାଜ୍ୟରେ ।

କବିତା ଛାଡ଼ିଲି ।

ଗପ ଲେଖିଲି । ପ୍ରଣାମ କଲି ଶ୍ରୀ ଚନ୍ଦ୍ରଶେଖର ରଥଙ୍କୁ । ମୋ କଥା ସାହିତ୍ୟର ପ୍ରଥମ ଗୁରୁଙ୍କୁ ।

ମାନୁଚି, ସେଇ ଦିନଠାରୁ ଆଉ ପଛକୁ ଗ୍ଚହିଁ ନାହିଁ ଏବଂ ଅନୁଭବ କରିଛି ମୋ ମଥା ଉପରେ ଗୁରୁ ଦ୍ରୋଣାଚାର୍ଯ୍ୟଙ୍କ ପରି ଆଶୀଷ ଢ଼ାଳି ଗ୍ଚଲିଛନ୍ତି, ଶ୍ରୀ ଚନ୍ଦ୍ରଶେଖର ରଥ ।

୧୯୯୬ ମସିହା ଯାଏ ତାଙ୍କ ସହ ଭେଟ ହୋଇ ନଥିଲା । ଯାହା ଭେଟ ଚିଠିରେ । ସେ ଚିଠିଟିଏ ଦେଇଥିଲେ ତା ୨୭.୦୪.୯୬ ମସିହାରେ । ସେଥିରେ ମୋ ଚିଠିର ଉତ୍ତରରେ ଲେଖିଥିଲେ —

x x x x x

ତୁମ ଚିଠିର ଉତ୍ତର ଦେଇ ପାରି ନଥିଲି କାରଣ ଚିଠି ଲେଖିବାରେ ମୁଁ ଏକ ଅଧମାଧମ ବ୍ୟକ୍ତି । ମୋର ବନ୍ଧୁ ମହଲରେ ଏ ଅପଖ୍ୟାତି ଅତି ପୁରୁଣା, ଏଣୁ ସେମାନେ କ୍ଷମାଶୀଳ । ସେମାନେ ଜାଣନ୍ତି, ଏଇଟାଠୁ ଉତ୍ତର ଆଶା କରିବା ବୃଥା । ତୁମେ ବି କ୍ରମଶଃ ତାହା ଜାଣିଯିବ କିମ୍ବା ଜାଣି ସାରିବଣି ।

ଏଇ ବିନମ୍ର ଭାବ ହିଁ ମୋତେ ତାଙ୍କ ପାଖକୁ ଟାଣି ନେଇଛି ଅନେକ ଥର । ଏବଂ ସେ ଉର୍ଦ୍ଧ୍ୱକୁ ଉଠିଯାଇଛନ୍ତି ମୋ ମନ ଭିତରେ, ମୋ ହୃଦୟରେ ।

ମୋ ପାଇଁ ଯେତିକି ପୂଜ୍ୟ, ସେତିକି ପ୍ରିୟ ତାଙ୍କ ସୃଷ୍ଟି ସମ୍ଭାର । 'କୁବୁଜା' ଗଳ୍ପ କଥା କହିଲେ ଏଠି ଠିକ୍ ହେବ ବୋଲି ମୁଁ ଭାବୁଛି । ଗଳ୍ପର ନାୟିକାର ନାଁ 'ଚତୁରୀ' । ସେ ରାୟ ସାହେବଙ୍କ ଘରେ ପିଲାଦିନୁ କାମ କରି ଆସିଛି । ତା' ବାପା, ମା କେହି ନାହାନ୍ତି । ତା' କାମ ହେଲା ମସଲା ପେଷିବା । ତା' ଦେହରେ ଫଗୁଣ ଆସିଛି । ସେ ତାହା ଅନୁଭବ କରିପାରୁଛି । ପିନ୍ଧିଥିବା ଛୋଟ କପ୍ତାଟିରେ ତା' ଦେହ ଆଉ ଘୋଡ଼େଇ ପାରୁନାହିଁ । ଖାନ୍‌ସମା,ବବିର୍ଚି, ମିସ୍ତ୍ରୀ ସମସ୍ତେ ତାଙ୍କୁ ଗ୍ରହିଁ ରହିଛନ୍ତି । ଦିନେ କେହି ଜଣେ ହୁକୁମ ନେଇ ଆସି କହିଲା— କସ୍ତୁରୀ ଚନ୍ଦନ ଘୋରା ହେବ । କିଏ କରିବ ଏ କାମ ? ଚତୁରୀ ଚନ୍ଦନ ଘୋରିଲା । ଚମ୍ପାଗଛ ମୂଳରେ । ମହମହ ବାସ୍ନା ଚହଟିଲା । ସାରା ଅଗଣାରେ । ବିଭୋର ହେଲା ଚତୁରୀ । ଏଇ ଆକାଶଟା ଏତେ ନେଳି ସେ ଜାଣିନଥିଲା । ପବନ ଏମିତି ଚନ୍ଦନ ଭଳି ଶୀତଳ ଏମିତି ମହମହ ବାସେ ବୋଲି ସେ ଜାଣିନଥିଲା । କାରଣ ବିଭୋରତା ଭିତରେ ସେ ଦେଖିଥିଲା ଅତିଥିଙ୍କୁ । ରାୟ ସାହେବଙ୍କ ଭଣଜାକୁ । ସେ ମହକୁଥାଏ ମଉଳା ଚମ୍ପାଟିଏ ପରି । ସେ ମଟ ମଟ ଗ୍ରହିଁଦେଇ ପୁଣି ଘାଲେଇ ଯାଉଥାଏ ସ୍ୱପ୍ନକୁ । ସେହି ସ୍ୱପ୍ନରେ କେହି ଜଣେ ଲେପିଦେଲା ତା' ଦେହସାରା ଚନ୍ଦନ । ଚତୁରୀର ସ୍ୱପ୍ନ ଭୂମିରେ ପୁଲକ ହିଁ ପୁଲକ । ରାତି ପାହିଗଲା । ସେ ଜାଣି ପାରିଲା ତା' ସ୍ୱପ୍ନ ଭୂମିରେ ନାୟକ ଥିଲା ସାନ ମିଆଁ । ଯାହାକୁ ସେ ଘୃଣା କରେ । ଏବେ ସେ କୁଆଡ଼େ ଯିବ ? କୂଅକୁ ? ପୋଖରୀକୁ ? ସେତିକି ବେଳେ ସେ ଶୁଣିଲା କାହାର ପାଦଶବ୍ଦ । ତା' ଭୃରୁ କୁଞ୍ଚେଇଗଲା । ସେହି ହିଁ ତା ସ୍ୱପ୍ନର ନାୟକ । ତା ଓଠକୁ ଆସ୍ତେ ଧରି ସେ ଟେକି ଦେଲେ । କ'ଣ କହିବ ଚତୁରୀ ? କ'ଣ କରିପାରିବ ସେ ? ସେ କ'ଣ ତାଙ୍କୁ କହି ପାରିବ ଯେ, ରୋଷ ଅଗଣାରେ ଆଉ କେହି ନାହାନ୍ତି ଏବଂ ହେଇ ତା ବଖରା

ଆଗରେ ତମାଳ ଚିହ୍ନ ? ସେ ଗିନା ଯୋଡ଼ିକୁ ଆଉ ଥରେ ଚନ୍ଦନରେ ଭରିବାକୁ ଆଉରି ଗୋଟିଏ ଜନ୍ମପାଇଁ ଅପେକ୍ଷା କରିବାକୁ କହିପାରିବ ?

ଗଳ୍ପର ଶେଷରେ ଗାଳ୍ପିକ ଚନ୍ଦ୍ରଶେଖର ରଥ 'କୁବୁଜା' ଚରିତ୍ରକୁ ନେଇ ଯେଉଁ ଚେତନାର ଶୀର୍ଷରେ ପହଞ୍ଚାଇବାଣ ଦେଇଛନ୍ତି ସେଠି ସେ ପହଞ୍ଚିପାରିବ ବୋଲି ପାଠକଟିଏ କେବେହେଲେ ଗଳ୍ପର ପ୍ରାରମ୍ଭରେ ଚିନ୍ତା କରିପାରିନଥିବ ।

ଏହାହିଁ ହେଉଛି ଗାଳ୍ପିକ ଚନ୍ଦ୍ରଶେଖର ରଥଙ୍କ ଗଳ୍ପ କଥନର ସଫଳତା ଯାହା ପାଠକ ଚିନ୍ତା କରି ନଥାଏ, ତାହା ଘଟିଲେ, ସେ ବିସ୍ମିତ ହୁଏ । ନିଜକୁ ପଗ୍ଚରିପାରେ ଏପରି କ'ଣ ଘଟିପାରେ ?

'କୁବୁଜା' ଗଳ୍ପ ପରେ ଆଉ କେଉଁ ଗଳ୍ପ କଥା କହିବି ବୋଲି କୌଣସି ସହୃଦୟ ପାଠକ ପଗ୍ଚରିଲେ, ମୁଁ କହିବି 'ଲଂଘନ', 'ଯୋଗିନୀ', 'ପୁନର୍ନବା', ସବୁଠାରୁ ଦୀର୍ଘରାତି, 'କେଡ଼ା', 'ବିକ୍ରି ପାଇଁ ଫୁଲମାଳ', 'ଆଜ ରଜନୀ ମଧ୍ୟ ଗତେ', 'କ୍ରମଶଃ ଗଭୀର ନଈ', 'ବାପ', 'ଏ ବସନ୍ତ ଋତୁ ନୁହେଁ' ।

'ଏ ବସନ୍ତ ଋତୁ ନୁହେଁ' ଗପଟି ପଢ଼ି ସାରିବା ପରେ ମୋ ଭିତରେ ଗୋଟେ ଗପ ଅଙ୍କୁରି ଉଠିଲା । ଡାଳ ପତ୍ର ମେଲାଇଲା । ବାଧ୍ୟକଲା ମୋତେ କାଗଜ କଲମ ଧରି ବସିବା ପାଇଁ । ଗପଟି ଲେଖିବା ପୂର୍ବରୁ ପଗ୍ଚରିଲି ଶ୍ରୀ ଚନ୍ଦ୍ରଶେଖର ରଥଙ୍କୁ । ମୋ ଭାଷାରେ ଆଉଥରେ ରୂପ ନେବାକୁ ଯାଉଛି 'ଏ ବସନ୍ତ ଋତୁ ନୁହେଁ ।' ଏଥିରେ ଆପଣଙ୍କର ଆପତ୍ତି ଅଛିକି ?

ହସିଲେ ସେ । ଅମାୟିକ ହସ । କହିଲେ, ତୁମକୁ ମୋର ସବୁ ଗପ ଦେଇଦେଲି । ତୁମ ଖୁସିରେ ଗଢ଼ିପାର ତୁମ ଗପ । ଆଉ ଥରେ ପୁନର୍ଜନ୍ମ ଯଦି ନେଇପାରେ ମୋ ଗପ, ତେବେ ମୁଁ ଖୁସି ହେବି । ବହୁତ ଖୁସି ହେବି । ଲେଖିଲି 'ଶବରୀ' ।

'ଶବରୀ' ଗପଟି ଲେଖି ସାରିବା ପରେ ପ୍ରତିବେଶୀର ସମ୍ପାଦକ ଶ୍ୟାମା ପ୍ରସାଦ ଚୌଧୁରୀଙ୍କ ପଗ୍ଚରିବା ପ୍ରଶ୍ନର ଉତ୍ତର ଦେବାକୁ ଯାଇ କହିଥିଲି, ଯେତେବେଳେ ଗପ ଲେଖିପାରେନି କିମ୍ବା ମୋ ଭିତରେ କୋଉଠି ଅଟକିଯାଏ ଗପ ସେତେବେଳେ ମୁଁ କେବଳ ଗାଳ୍ପିକ ଚନ୍ଦ୍ରଶେଖର ରଥଙ୍କ ଗପ ପଢ଼େ । ତା' ଭିତରୁ ନୂଆ ଗପର ଝଲକକୁ ଆବିଷ୍କାର କରେ ଏବଂ ମଧ୍ୟ ଅନୁଭବ କରେ ।

ସେହି ଅନୁଭବ ହିଁ ଲେଖିବାପାଇଁ ବାଧ୍ୟକରେ ମୋତେ । ମୁଁ ଗପ ଲେଖେ ।

ଅନୁଭବର କଥା କହିବାବେଳେ ଆଉ ଗୋଟେ ଅନୁଭବର କଥା କହିବି । 'ଧ୍ୱନି ପ୍ରତିଧ୍ୱନି' ସମ୍ବାଦପତ୍ର ସ୍ୱନକ୍ଷତ୍ର ଉତ୍ସବରେ ମୁଁ ଯାଇଥିଲି କଟକରୁ ବାଲେଶ୍ୱର । ମୋ ସହିତ ଥିଲେ ଶ୍ରୀ ଚନ୍ଦ୍ରଶେଖର ରଥ, ବିଷ୍ଣୁସାହୁ ଏବଂ କ୍ଷୀରୋଦ ଦାସ । ଯାତ୍ରା କାର୍‌ରେ । ସେଠି ରହଣି ଗୋଟେ ରାତି ।

ହୋଇପାରେ ତାହା ଗୋଟେ ରାତି । ମାତ୍ର ମୋ ପାଇଁ ତାହା ଅବିସ୍ମରଣୀୟ ହୋଇ ରହିବ ସାରାଜୀବନ ।ଏହା କେବଳ ଶ୍ରୀ ଚନ୍ଦ୍ରଶେଖର ରଥଙ୍କ ସକାଶେ । ବାଟରେ ତାଙ୍କଠାରୁ ଅନେକ କଥା ଶିଖିପାରିଲି । ପ୍ରଭାବିତ ହେଲି ତାଙ୍କ ଚାଲିଚଳନ, କଥୋପକଥନ, ତଥା ବ୍ୟକ୍ତିତ୍ୱରେ । କଥା ଜଗତରେ ଶିଖର ପରି ସୁଉଚ୍ଚ ହେଲେ ବି ସେ ନମ୍ର, ଅହଙ୍କାର ଶୂନ୍ୟ । ସ୍ୱୀକାର କରୁଛି, ଏପରି ବ୍ୟକ୍ତିତ୍ୱ ସମ୍ପନ୍ନ ମଣିଷଙ୍କୁ ଖୁବ୍ କମ୍ ଦେଖିଛି ।

ଆଜି କହିବାକୁ ଚାହୁଁଛି ସେ ଦିନ ମୋ ସାମନାରେ ଓଡ଼ିଆ ସାହିତ୍ୟରେ ସୁପରିଚିତ ବରଂ ଥିଲେ ଜଣେ ଆତ୍ମୀୟ ମଣିଷ । ଯିଏ ବୁଝିପାରନ୍ତି ପ୍ରିୟ ମଣିଷଙ୍କ କଥା ।

'ଅନେକ ବନ୍ୟା ପରେ', 'ଅଶ୍ୱାରୋହୀର ଗଳ୍ପ' 'ସମ୍ରାଟ ଓ ଅନ୍ୟମାନେ', 'ଅନ୍ୟ ଏକ ସକାଳ,' ' ସହଯାତ୍ରୀକ', 'ସ୍ୱପ୍ନ ବାହକ', 'ଅନ୍ତିମା', 'କ୍ରମଶଃ' ଗଭୀର ନଈ' ଓ ଶିଖର ଲଂଘନ' ଗଳ୍ପ ସଂକଳନ ଗୁଡ଼ିକର ସେ ସଫଳ କଥାକାର । ଯନ୍ତ୍ରାରୂଢ଼ ଠାରୁ ଶିଖର ଲଂଘନ ଯାଏ ଏକ ସୂକ୍ଷ୍ମ-ମାନବୀୟ ଚେତନା, ବୌଦ୍ଧିକ, ଦାର୍ଶନିକ ତଥା ଆଧ୍ୟାତ୍ମିକ ଚେତନାର ପୃଷ୍ଠ ଭୂମିରେ ତାଙ୍କର ସୃଷ୍ଟି-ସମ୍ଭାର ସମୃଦ୍ଧ ଏବଂ ଆଧ୍ୟାତ୍ମିକ ଚେତନାର ସ୍ପନ୍ଦନ 'ରଥ ସପ୍ତକ' ବହିଟି ଉତ୍ସର୍ଗୀତ ନୈବେଦ୍ୟ । ସେଥିରେ ସନ୍ନିହିତ 'ପ୍ରଭୁବିଜେ' ଉତ୍କଳ ପ୍ରସଙ୍ଗରେ ପ୍ରକାଶ ପାଇଲା ବର୍ଷ ଜଗନ୍ନାଥ ଚାରିଘଣ୍ଟା ଚାର ଉପରେ ରହିଗଲେ । ଏହା ଭାବବିହ୍ୱଳ ଅନୁଭବର କଥା ।

ଭାଷାର କାଉଁରୀ ସ୍ପର୍ଶରେ ସେ ଯେକୌଣସି ପରିବେଶ ଓ ପରିସ୍ଥିତିକୁ ସରସ ଓ ଜୀବନ୍ତ କରିବାରେ ପାରଦର୍ଶୀ । ତାଙ୍କର ପ୍ରତ୍ୟେକ ଲେଖା ସୂକ୍ଷ୍ମ ଅର୍ନ୍ତଦୃଷ୍ଟି ଓ ମନନଶୀଳତାରେ ମହକିତ, ଏହା ଅସ୍ୱୀକାର କରାଯାଇ ନପାରେ । ସେଥିପାଇଁ 'ତୁମପାଇଁ ପକ୍ଷୀଗାନ' ଓ 'ଆଗକୁ ବନସ୍ତ' କବିତା ସଙ୍କଳନ ଦୁଇଟି ପାଠକୀୟ ଶ୍ରଦ୍ଧା ଲାଭ କରିପାରିଛି ।

ପରିଶେଷରେ କହିବି, ୭୫ବର୍ଷରେ ଶ୍ରୀ ଚନ୍ଦ୍ରଶେଖର ରଥ ପହଞ୍ଚିଲେ ବି ସେ ମନେହୁଅନ୍ତି ତରୁଣ । କାରଣ ବୟସ ତାଙ୍କୁ ଛୁଇଁନାହିଁ ବରଂ ବୟସକୁ ସେ ଛୁଇଁଛନ୍ତି ଏବଂ ଅନୁଭବ କରିଛନ୍ତି । ବୟସକୁ ଅନୁଭବ କରିପାରୁଥିବା ଏହି ପ୍ରାଜ୍ଞ ପୁରୁଷଙ୍କୁ, ମୋ' କଥା ସାହିତ୍ୟର ପ୍ରଥମ ଗୁରୁଙ୍କୁ ତଥା ମୋର ଆତ୍ମୀୟଙ୍କୁ ଆଉଥରେ ବିନମ୍ର ପ୍ରଣାମ ଜଣାଉଛି, ଏଇ ପବିତ୍ର ଅବସରରେ ।

ବିହାରୀ ବାଗ
କଟକ - ୨

***

# ନିଜ ନିଜ ସାମ୍ରାଜ୍ୟର ନିଃସଙ୍ଗ ସମ୍ରାଟ : ସମ୍ରାଟ ଓ ଅନ୍ୟମାନେ

**ପ୍ରକାଶକୁମାର ସେନାପତି**

ସାଂପ୍ରତିକ ଓଡ଼ିଆ ସାହିତ୍ୟରେ ଲେଖନୀ ଚାଳନା କରି ଯେଉଁକେତେଜଣ ସାହିତ୍ୟିକ ଓଡ଼ିଶାର ଭୌଗୋଳିକ ସୀମା ଅତିକ୍ରମ କରି ସର୍ବଭାରତୀୟ ସ୍ତରରେ ନିଜର ସ୍ୱତନ୍ତ୍ର ସ୍ଥାନଟିମାନ ବାଛିନେଇ ବିପୁଳ ଯଶର ଅଧିକାରୀ ହୋଇପାରିଛନ୍ତି, ସେମାନଙ୍କ ମଧ୍ୟରେ କଥାକାର ଚନ୍ଦ୍ରଶେଖର ରଥ ଅନ୍ୟତମ । ବିଂଶ ଶତକର ଉତ୍ତର-ଷାଠିଏ ଦଶକରେ ଓଡ଼ିଆ ସାହିତ୍ୟରେ ପାଦ ଥାପିଥିବା ଏହି ମହାନ୍ ସ୍ରଷ୍ଟା ପ୍ରଥମେ ଲଳିତ ନିବଂଧକାର ଭାବରେ ଆତ୍ମପ୍ରକାଶ କରି ଜୀବନ ଓ ଜଗତର ରହସ୍ୟକୁ ଉଦ୍‌ଘାଟନ କରିବାକୁ ଚେଷ୍ଟା କରିଛନ୍ତି । ପରବର୍ତ୍ତୀ ସମୟରେ ଅବଶ୍ୟ ସେ ସାହିତ୍ୟର ବିଭିନ୍ନ ବିଭାଗକୁ ସ୍ପର୍ଶକରି ଉକ୍ତ ବିଭାଗ ଗୁଡ଼ିକର ଶ୍ରୀବୃଦ୍ଧି କରିଛନ୍ତି । ଗଳ୍ପରଚନା ପ୍ରତି ତାଙ୍କର ଦୁର୍ବଳତା ପ୍ରକାଶ ପାଇଛି ସେହି ଆଦ୍ୟକାଳରୁ । ସେହି ଦୁର୍ବଳତା ରୂପକ ବନ୍ୟାର ପ୍ରଥମ ପ୍ରତିଶ୍ରୁତି ହେଉଛି ''ଅନେକ ବନ୍ୟାପରେ''ଗଳ୍ପ ସଂକଳନ ।

ଶ୍ରୀରଥ ଯେଉଁ ସମୟରେ ଗଳ୍ପ ଜଗତରେ ପ୍ରବେଶ କରିଛନ୍ତି, ସେହି ସମୟ ଓଡ଼ିଆ ଗଳ୍ପ ସାହିତ୍ୟର ପରୀକ୍ଷାନିରୀକ୍ଷାର ବେଳ - ଗଳ୍ପର ଆଙ୍ଗିକ ଓ ଆତ୍ମିକ ସ୍ତରରେ ପରିବର୍ତ୍ତନର ବେଳ । ଗଳ୍ପର ବିଭିନ୍ନ ରୂପ ପରିଗ୍ରହଣ ତଥା ନୂଆନୂଆ ବାଦ ଏବଂ 'ତତ୍ତ୍ୱ ଓଡ଼ିଆ ଗଳ୍ପ କ୍ଷେତ୍ରକୁ ଧସେଇ ପଶି ପାରଂପରିକ ଆଂଗୀକ ଓ ଆତ୍ମିକକୁ ବ୍ୟତିବ୍ୟସ୍ତ କରୁଥାଏ । ଗୋଟିଏ ପକ୍ଷରେ ପ୍ରଚଳିତ ପରଂପରା ଓ ଅନ୍ୟପକ୍ଷରେ ନୂଆ ଧସେଇ ପଶି ଆସୁଥିବା ଆଧୁନିକ ଜୀବନ ଜିଜ୍ଞାସା ଜନିତ ପ୍ରଶ୍ନ-ଉତ୍ତର ଖୋଜାର ସନ୍ଧିକ୍ଷଣରେ ଶ୍ରୀଯୁକ୍ତ ରଥ ତାଂକ ଗଳ୍ପର ପସରା ଧରି ଦଣ୍ଡାୟମାନ । ତେଣୁ ହିଁ ତାଂକ ଗଳ୍ପ ପସରାରେ ଅତୀତ ଆମୁଖତା ତଥା ଭଗବଦ୍ ଚିନ୍ତାଧାରା ସହ ଆଧୁନିକ ଜୀବନର ସ୍ଥିତି, ବଂଚିବା ପାଇଁ ସଂଗ୍ରାମ, ନିଃସଂଗତା, ହତାଶବୋଧ, ବିଶ୍ୱାସହୀନତା ଓ ଜୀବନର ତୀବ୍ର ଦଂଶନ ପରିଲକ୍ଷିତ ହୁଏ ।

'ସମ୍ରାଟ ଓ ଅନ୍ୟମାନେ' (୧୯୮୦) କଥାକାର ଚନ୍ଦ୍ରଶେଖର ରଥଙ୍କ ତୃତୀୟ ଗଳ୍ପ ସଂକଳନ । ଯା ପୂର୍ବରୁ 'ଅନେକ ବନ୍ୟାପରେ' (୧୯୭୮) ଓ 'ଅଶ୍ୱାରୋହୀର

ଗଳ୍ପ' (୧୯୭୯) ପ୍ରକାଶ ପାଇ ବିପୁଳ ପାଠକୀୟ ଶ୍ରଦ୍ଧା ଲାଭ କରିସାରିଥାଏ । ତେଣୁ ଏହି ସଂକଳନସ୍ଥ ସମସ୍ତ ଚରିତ୍ର ଅନେକ ବନ୍ୟାରେ ଉବୁଟୁବୁ ହୋଇ, ଅଶ୍ୱାରୋହଣ କରି ଶେଷରେ ସମ୍ରାଟ ଆସନରେ ଅଭିଷିକ୍ତ ହୋଇଛନ୍ତି ନିଶ୍ଚୟ । ଏହି ଗଳ୍ପ ସଂକଳନରେ ଶ୍ରୀରଥଙ୍କ ଉତ୍ତରଣ ସ୍ତରଟିର ଆରମ୍ଭ ମାତ୍ର । ଏଥିରେ ସନ୍ନିବେଶିତ ୧୨ଟି ଯାକ ଗଳ୍ପ ଭିନ୍ନ ଭିନ୍ନ ସ୍ୱାଦର ଏବଂ ଚରିତ୍ର ଗୁଡ଼ିକ ସମାଜର ବିଭିନ୍ନ ଶ୍ରେଣୀର ପ୍ରତିନିଧି ମଧ୍ୟ । ସମସ୍ତ ଚରିତ୍ର ନିଜ ନଜ ସାମ୍ରାଜ୍ୟରେ ଜଣେ ଜଣେ ଏକାକୀ ନିଃସଂଗ ସମ୍ରାଟ । ସଂକଳନର ପ୍ରଥମ ଗଳ୍ପ -'ସମ୍ରାଟ' । ସ୍ୱପ୍ନ ଠାରୁ ବାସ୍ତବତା ଯେ, ଅନେକ ଦୂର, ତାହା ଏହି ଗଳ୍ପରେ ସୂଚୀତ । ଶହ ଶହ ନାଟକରେ ରାଜା ସମ୍ରାଟ ଚରିତ୍ରରେ ଅଭିନୟ କରୁଥିବା ଚରିତ୍ର ବାସ୍ତବ ଜୀବନରେ ସୁଦ୍ଧା ସ୍ରମାଟ ଭଳି ବଂଚିବାକୁ ପସନ୍ଦ କରିଛନ୍ତି । ନାଟକରେ ସଂଳାପ କହିବା ଭଳି ଦୈନନ୍ଦିନ ଜୀବନରେ ପ୍ରାଞ୍ଜଳ ଶୁଦ୍ଧ ଭାଷାରେ କଥା କହନ୍ତି, ରାଜାଭଳି ଭଙ୍ଗୀ ଏବଂ ରାଜକୀୟ ଠାଣୀରେ ରହନ୍ତି । କାରଣ ସେ ଭାବନ୍ତି, '' ସମ୍ରାଟର ମିଜାଜ୍ ଥିଲେ ସିନା ସ୍ରମାଟ ପାର୍ଟ କରିହେବ' । (ପୃ-୪) ସମ୍ରାଟଙ୍କ ଭଳି ଚେହେରାଟି ମଧ୍ୟ ସେ ରଖିଥିଲେ -''ପ୍ରଶସ୍ତ କପାଳରେଖା ଉପରୁ ଥୋଡ଼ି ପର୍ଯ୍ୟନ୍ତ କେବଳ ଚିପୁଡିଲା ପରି ତଳମୁହଁ ତ୍ରିଭୁଜଟିଏ । ଟାଣି ହୋଇ ଫଟା ପଥା ଉତୁରି ପଡୁଥିବା ସେ ବାଘ ପରି ମୁହଁ, ରାଉ ରାଉ ଭୂଲତା, ସେ ଆଖି, ଖଣ୍ଡାଧାର ପରି ଠିଆ ନାକ । (ପୃ-୨) ବାସ୍ତବ ଜୀବନରେ କିଂତୁ ସେ ଜଣେ ଅସଫଳ ମଣିଷ । ଜୀବନ ସାରା ଯେଉଁ ସ୍ୱପ୍ନ ସେ ଦେଖିଛନ୍ତି ତାହା ସେ ପାଇନାହାନ୍ତି । ତାଙ୍କର ଇଚ୍ଛାଥିଲା ମନଲାଖି କୋଠାଟିଏ କରିବେ, ଭଲ ଖଣ୍ଡେ ଭଲ ପିନ୍ଧିବେ...''ସେ ଗ୍ୱହିଁଥିଲେ ନିଜ ପାଇଁ ଦୁଇଗ୍ୱରିସେଟ୍, ରାଜୁଡ଼ା ପୋଷାକ କିଣି ରଖିଥାନ୍ତେ-ଖଣ୍ଡା, ପାଟ, ପଗଡ଼ି, ଚୂଳମାଳ ସବୁ'' (ପୃ-୫) ସେ ଗ୍ୱହିଁଥିଲେ ତାଙ୍କର ବିଖ୍ୟାତ ସ୍ପିଚ ଗୁଡ଼ିକ ରେକର୍ଡ କରି ଦେଇଥାନ୍ତେ, ସବୁ ନାଟକରେ ରାଣୀ ହେଉଥିଲେ ରାଧାରାଣୀ ସତରେ ତାଙ୍କର ରାଣୀ ହୋଇଥାନ୍ତା... ଏମିତି ଅନେକ... । କିନ୍ତୁ ''କିଛି ହେଲାନାହିଁ ।' ଏପରିକି ତାଙ୍କର ଏକମାତ୍ର ଇଚ୍ଛାଥିଲା ଆଉମାତ୍ର ଗୋଟିଏ (ମେଡାଲ) ପାଇଥିଲେ ଶହେ ପୁରି ଯାଇଥାନ୍ତା । ଆକାଶ ଭରି ଯାଇଥାନ୍ତା ପୂର୍ବରୁ ପଶ୍ଚିମ ଯାଏଁ ।'୩ (ପୃ-୮) ସେଇଟାବି ହେଲା ନାହିଁ-ହୋଇ ପାରିଲାନାହିଁ । ଦେଖିଥିବା ସ୍ୱପ୍ନ ସବୁ ନାଟକର ସମ୍ରାଟ ଭଳି ସବୁ ଉଭେଇଗଲା ଜୀବନର ପରଦା ନଇଁ ଆସିବା ସହ ।

ମଣିଷ ସାରାଜୀବନ ଦେଖିଥିବା ସ୍ୱପ୍ନସବୁ ହଠାତ୍ କିପରି କ୍ଷଣିକରେ ଭାଂଗି ଯାଏ, ତା'ର କରୁଣ ଚିତ୍ରହିଁ ସ୍ୱପ୍ନ ଭଂଗ ଗଳ୍ପ । ବଳଭଦ୍ର ବାବୁ ତାଙ୍କର ଦୁଇପୁଅଙ୍କୁ

ନେଇ ଏକ ସୁନ୍ଦର ଭବିଷ୍ୟତର ସ୍ୱପ୍ନ ଦେଖନ୍ତି । ବଡ଼ ପୁଅକୁ ଇଂଜିନିୟର କରି " ସେ ଭାବିଥିଲେ ବଡ଼ ପୁଅ ଇଂଜିନିୟର ହେଲେ କାହୁଁ କାହୁଁ ସବୁଟଙ୍କା ଆସିଯିବ"- ଏବଂ ଇଂଞ୍ଜିନିୟର ହୋଇପାରି ନଥିଲେ ବୋଲି ତିରିଶ ବର୍ଷ ତଳେ ମହାପାତ୍ର ଘରୁ ସୁଲୋଚନାକୁ ସ୍ତ୍ରୀକରି ଆଣି ପାରିନଥିବା ଦୁଃଖକୁ, ସୁଲୋଚନାର ଝିଅ ସାଂଗରେ ବଡ଼ ପୁଅର ବାହାଘର କରି ମହାପାତ୍ର ବୁଢ଼ାଙ୍କୁ ଉଚିତ ଜବାବ ଦେବାକୁ ଚାହିଁଥିଲେ । କିନ୍ତୁ ବଡ଼ ପୁଅ ନିଜ ଇଚ୍ଛାରେ ବାହାହୋଇଛି ଯଶିପୁରର ଜନୈକ କଣ୍ଟ୍ରାକ୍ଟରଙ୍କ ଝିଅ ସିପ୍ରାକୁ... । ସାନପୁଅକୁ ଡାକ୍ତର କରି ଅତୀତରେ ଡାକ୍ତରଙ୍କ ଦାୟିତ୍ୱ ହୀନତାର ଶୀକାର ହୋଇ ତାଙ୍କ ସ୍ତ୍ରୀଙ୍କ କରୁଣ ମୃତ୍ୟୁର ଠିକଣା ଜବାବ ଦେବାକୁ ଗ୍ୱହିଁଥିଲେ । କିନ୍ତୁ ଶେଷତାରିଖ ଗ୍ୱଲିଯାଇଥିବା ଯୋଗୁଁ ସେ କଲେଜରେ ନାମ ସୁଦ୍ଧା ଲେଖାଇ ପାରିନାହିଁ । ସ୍ୱପ୍ନ ସବୁ ଏକାଦିନରେ ଏକା ସମୟରେ ତାଙ୍କ ଆଖି ସାମ୍ନାରେ ଭାଂଗିଯାଉଥିବା ଶବ୍ଦକୁ ସେ ବେଶ୍ ଅନୁଭବ କରିଛନ୍ତି ।

ମଣିଷ ମାତ୍ରକେ କ୍ଷମତା ଓ ଐଶ୍ୱର୍ଯ୍ୟ ଭୋଗ କରିବାର ଲାଳସା ରହିଛି । ଭୋଗଦଖଲ ଏହି ଭାବକୁ ବହନ କରୁଥିବା ଗଳ୍ପଟିଏ । ତଥାକଥିତ ରାଜକୀୟ/ଦରବାରୀ 'ଅଚଳନ' ପିନ୍ଧି ସେଇ ଦରବାରୀ ଆଦବ୍‌କାଇଦାକୁ ଆବୋରି ବାକୁ ସମସ୍ତଙ୍କ ମୋହ । ବହୁଦିନୁ ପରିତ୍ୟକ୍ତ ଉଆସକୁ ଦିନେ ଜଣେ ଛୋଟ ନୂଆ ମାଲିକ ଆସିଛନ୍ତି । ସମୟ ଉଆସକୁ ବୁଲାଇ ବୁଲାଇ ଦେଖାଉଥାଏ ବୃଦ୍ଧ ହାଇଦର । ସେ ଯେତେବେଳ ରାଣୀ ମହଲକୁ ପ୍ରବେଶ କରିଛନ୍ତି, ସେଠାକାର ଚଉଷଠୀ ପ୍ରକାରର ନଗ୍ନ ଚିତ୍ର ଦେଖି ମାଲିକଙ୍କ ଓଠ ଗ୍ୱଟି ହୋଇଯାଇଛି । ତୃଷାର୍ତ୍ତ (ସେ ତୃଷା ଯୌନ କାମନା ନିଶ୍ଚୟ)ମାଲିକ ସରାବ ପାନକରି ତଥାକଥିତ ବିଳାସୀ ଅଚକନ୍‌କୁ ପିନ୍ଧି ସେଥି ମଧ୍ୟରେ ନିଜେ ପେଶି ହୋଇଯାଆନ୍ତି । ଅଚକନ ଭିତରେ ହିଁ ତାଙ୍କର ପ୍ରାଣବାୟୁ ଉଡ଼ିଯାଏ । ଏହାପରେ ବୃଦ୍ଧ ହାଇଦର ଅନୁଭବ କରେ ଛୋଟ ମାଲିକଙ୍କ ସାଙ୍ଗରେ ଆସିଥିବା ଅନ୍ୟ ମଣିଷମାନେ, ସମସ୍ତେ ଶୋଷିଲା ।" ସେମାନେ ପିଇଲା ପରେ ପୁଣି ଏଇ ବିଛଣାଟିକୁ ଚକଟିବାକୁ ଗ୍ୱହିଁବେ ? ସମସ୍ତେ ପୁଣି ଗ୍ୱହିଁବେ ଏଇ ଅଚକନ ପିନ୍ଧି ଦରବାର କରିବାକୁ ?" ପୃ-୩୨ ।

ଉତ୍ତରିତ ଆଧ୍ୟାତ୍ମ ଚେତନା, ଐଶୀଭାବ, ସମର୍ପଣ ବୋଧର ଚମତ୍କାର ଗଳ୍ପରୂପ 'ବନ୍ଧୁମହାନ୍ତି' । ବଂଧୁ ମହାନ୍ତିଙ୍କ ଅକପଟ, ସମର୍ପିତ ଭକ୍ତିଭାବର କଥା ସମସ୍ତଙ୍କୁ ଜଣା । କିନ୍ତୁ ସେହି ଚିହ୍ନାଜଣା କାହାଣୀକୁ ଏପରି ଉପସ୍ଥାପନା କରାଯାଇଛି ଯେ, ପାଠକ ଶେଷ ପର୍ଯ୍ୟନ୍ତ ଉତ୍କଣ୍ଠିତ ହୋଇ ପରିଣତିକୁ ଅପେକ୍ଷା କରେ । ତାହାହିଁ ଶ୍ରୀରଥଙ୍କ ପାଠକକୁ ବାନ୍ଧିରଖିବାର ଅନନ୍ୟ କୌଶଳ ।

ଶେଷପର୍ଯ୍ୟନ୍ତ ଉତ୍କଣ୍ଠାରେ ବାନ୍ଧି ରଖିପାରିବା ଭଳି ଅନ୍ୟଏକ ଗଳ୍ପ-'ଦୁର୍ଦ୍ଦିନ' । ମଣିଷର ଆର୍ଥିକ ପରିସ୍ଥିତି ହିଁ ସମାଜରେ ତାର ପରିଚୟକୁ ସୁଦୃଢ଼ କରେ । ଯଦି ଆର୍ଥିକ ଅବସ୍ଥା ସ୍ୱଚ୍ଛଳ, ସମାଜରେ ତାର ସ୍ୱତନ୍ତ୍ର ସ୍ଥାନଟିଏ ଥାଏ; ଯଦି ନାହିଁ, ସମାଜରେ ତାର ପରିଚୟ ଯେ, ଅତି ନ୍ୟୁନ, ନଗଣ୍ୟ ଏପରିକି ହେୟ-ତାହା ଦୁର୍ଦ୍ଦିନ ଗଳ୍ପର ସେହି ଦାଣ୍ଡୁରା ମଣିଷ ଚରିତ୍ର ମାଧ୍ୟମରେ ପ୍ରମାଣିତ ହୋଇଛି । ଗଳ୍ପର ସେହି ଡେଙ୍ଗା ଡାହାଳିଆ ଦାଣ୍ଡୁରା ବାବୁଙ୍କ ନାଁ କଣ, କେଉଁଠି ଚାକିରୀ କରନ୍ତି ? ତାଙ୍କ ଦରମା କେତେ କେହି ଜାଣନ୍ତି ନାହିଁ । ଏପରିକି ସେ ଯେଉଁ ଭଡ଼ା ଘରେ ରହନ୍ତି, ତା'ର ମାଲିକ ସୁଦ୍ଧା ଜାଣେ ନାହିଁ । ଗାଁରେ ଗୋସେଇଁ ବାପା ଅମଳର ସାହାଳା ଘରଟିଏ ଥିଲେ ସୁଦ୍ଧା ପେଟ ପୋଷିବାକୁ କ'ଣ ଖଣ୍ଡେ ଚାକିରୀ କରୁଛି । ଘର ମାଲିକର ଦୌରାତ୍ମ୍ୟ ସହୁଛି । "ପଇସା ଅଣ୍ଟେନାହିଁ ବୋଲି ଜୀବନର ଦେଢ଼ଲକ୍ଷ ଅଭିଳାଷକୁ ମାତ୍ର ତିନୋଟି କୋଠରୀ ଭିତରେ ବାଣ୍ଟିଦେଇଥିବା ସେଇ ଲୋକଟାର କିନ୍ତୁ ଘରଟିଏ କରିବ ବୋଲି ସ୍ୱପ୍ନଟିଏ ଅଛି । ପ୍ରଶସ୍ତ ଜାଗାଟିଏ ପାଇଲେ କିପରି ମନମୁତାବକ ଘରଟିଏ କରିବ, ତାର ଏକ ନକ୍ସା ତିଆରି କରୁଛି ମନେ ମନେ । ଅଥଚ... । ବିରାଡ଼ି ତା ପିଲାଙ୍କୁ ସାତଗାତ କଲାପରି ଚାରିମାସକୁ ଥରେ ଲେଖାଏଁ ବଦଳି ହୁକୁମ ପାଇଁ ସଜହୋଇ ବାହାରି ପଡ଼େ ।" (ପୃ-୪୭) ପେନ୍‌ସିଲ୍‌ଟିଏ ନାଳରେ ଭାସିଯିବାକୁ ନେଇ ଲୋକ ହସା ହୋଇଛି ସେହି ଦାଣ୍ଡୁରା ଲୋକଟି । ଗଳ୍ପର ଏହି ଚରିତ୍ରଟି ପ୍ରତି ପାଠକର କେମିତି ଏକ ଅହେତୁକ ଦୟା ଆସିଯାଏ ଆପେ ଆପେ । ଜୀବନ ବଂଚିବାର ଏହି ଦୁଃଖଦ ଶୈଳୀକୁ ଗାଳ୍ପିକ ଅତି ଚମତ୍କାର ଭାବେ ଫୁଟାଇବାରେ ସମର୍ଥ ହୋଇଛନ୍ତି । 'ରାଗଯୋଗିଆ'- ଏକ ଦର୍ଶନମୂଳକ ଗଳ୍ପ । ସନ୍ତାନଟିଏ ପାଇଁ ଆଶାୟୀ ଦମ୍ପତି ସମସ୍ତ ଚେଷ୍ଟା କରି ବିଫଳ ହେବାପରେ ପଣ୍ଡିଚେରୀ ଯାଇ ଜୀବନ ବଞ୍ଚିବାର ଶୈଳୀକୁ ବଦଳେଇଦେଲେ ଉପନୀଷଦୀୟ ଚିନ୍ତାକୁ ନେଇ ଜୀବନ ବଞ୍ଚୁଛନ୍ତି । ଅନ୍ୟ ପକ୍ଷରେ ଐଶ୍ୱର୍ଯ୍ୟ ଓ ଭୋଗବିଳାସରେ ବଞ୍ଚୁଥିବା ଯାଦବ ଦମ୍ପତିଙ୍କ ପୁତ୍ର ଅଶୋକ ଦିନେ ଆସି ଜୀବନ ଦର୍ଶନ ସଂପର୍କୀତ କିଛି ପ୍ରଶ୍ନର ଉତ୍ତର ଚାହିଁଛି । ତାର ସେହି ପ୍ରଶ୍ନ ଭିତରେ ସ୍ୱାଧିନ ତଥା ନୈତିକତାର ସ୍ୱର ଅତିସ୍ପଷ୍ଟ । ମୁକ୍ତି ଆଶାୟୀ ଅଶୋକ ଅନୁଭବ କରିଛି " ଜରାୟୁରୁ ଆରମ୍ଭ କରି ମୃତ୍ୟୁ ପର୍ଯ୍ୟନ୍ତ ଯାତ୍ରା ଅତି ବିରକ୍ତକର, ଗତାନୁଗତିକ ।" ଅଶୋକର ଏଭଳି ମନ୍ତବ୍ୟରେ ଗଳ୍ପନାୟକ ଅନୁଭବ କଲେ ସେ ସନ୍ୟାସୀ ହୋଇ କୌପୀନ ମାରି ଉତ୍ତର ଦିଗକୁ ଚାଲିଯିବ - ଏକଥା ଚିନ୍ତା କଲାମାତ୍ରେ ସେ ଅନୁଭବ କଲେ ତାଙ୍କର ପୁଅଟିଏ ଥିଲେ ୟାର ବୟସର ହୋଇଥାନ୍ତା । କିନ୍ତୁ ଏଭଳି ପୁଅ କ'ଣ ମିଳେ ? ଏହି ପ୍ରଶ୍ନ ଭିତରେ ଗାଳ୍ପିକ ଗଳ୍ପନାୟକଙ୍କୁ ଛାଡ଼ି ଦେଇଛନ୍ତି ।

ସାମାଜିକ ବ୍ୟଭିଚାରର ଓ କରୁଣ ପରିଣତିର ଚିତ୍ର ବହନ କରିଥିବା ଗଳ୍ପ ହେଉଛି - 'ରାବଣ' । ନବଦମ୍ପତି ବୈକୁଣ୍ଠନାଥ ଓ କଲ୍ୟାଣୀ ସୁକୁମାର ଦାମ୍ପତ୍ୟର ଆଦିପର୍ବରେ ମସ୍‌ଗୁଲ ହୋଇଥିବା ଦୁଇଟି ପାରା ଭଳି ଘୁମୁରୁ ଥାନ୍ତି । ଉଭୟଙ୍କ ଆଖିରେ ଉଭୟେ ସୁନ୍ଦର । କଲ୍ୟାଣୀର ସୁନ୍ଦର ରୂପଯୋଗୁଁ ତାଙ୍କ ଘର ସାମ୍ନାରେ ବିଭିନ୍ନ ଆଳରେ ଭିଡ଼ ଜମେ । ଏ ଭିଡ଼ର କାରଣ ବୈକୁଣ୍ଠ ନାଥ ବୁଝିପାରେ । ତେଣୁ ସେ ପତ୍ନୀଙ୍କୁ ସତର୍କ କରିଥାଏ ...''ଦେଖ ସାବଧାନ; ଏ ଦୁଆର ବନ୍ଧର ସତୀଗାର କେବେ ଡେଇଁବ ନାହିଁ । ତୁମକୁ ଏକୁଟିଆ ଦେଖିଲେ ସେ ଧୂସର ନିମ୍ନଗଛ ବି ବାହୁ ଲମ୍ବେଇ ଝାଂପି ନେଇପାରେ... ।'' (ପୃ-୬୦) ଦିନେ କିନ୍ତୁ କଲ୍ୟାଣୀକୁ ସେହି ଦୁଆର ବନ୍ଧର ସତୀଗାରକୁ ଡେଇଁବାକୁ ପଡ଼ିଛି 'ରାବଣ' ମାନଙ୍କ ହୀନ ଚକ୍ରାନ୍ତରେ ଏବଂ ସେ ଆଉ କେବେ ରାବଣ ପୁରୀରୁ ଫେରି ନାହିଁ । ଉଭୟ ଗଳ୍ପନାୟକ ଓ ନାୟିକାଙ୍କ କରୁଣ ପରିଣତି ଗଳ୍ପଟିକୁ କାରୁଣ୍ୟରେ ଭରିଦେଇଛି ।

'ଚେର' ଗଳ୍ପ ଏକ ଭିନ୍ନ ସ୍ୱାଦର ଗଳ୍ପ । ଗଳ୍ପର ନାୟକ କିଶୋର ଭାର୍ଗବ କୋଟି କୋଟି ଟଙ୍କାର ମାଲିକ । ଐଶ୍ୱର୍ଯ୍ୟ ଓ ବିଳାସରେ ବଢ଼ିଥିବା କିଶୋର ଭାର୍ଗବଙ୍କର ବାହାଘର ଖୁବ୍ ଜାକଜକମରେ ହୋଇଥିଲା । ପତ୍ନୀ ମଧ୍ୟ ଅସାମାନ୍ୟା ସୁନ୍ଦରୀ । ଚଉଠି ରାତିରେ ବାପା ହରିଶ୍ ଭାର୍ଗବଙ୍କ ମୃତ୍ୟୁ ଏବଂ ତାଙ୍କ ମୃତ୍ୟୁର ଦଶଘଣ୍ଟା ପରେ ନୂଆ ବୋହୂର ଆତ୍ମହତ୍ୟା ହଠାତ୍ କିଶୋର ଭାର୍ଗବଙ୍କ ଜୀବନରେ ବିରାଟ ଶୂନ୍ୟତା ଭରି ଦେଇଚି । ମୃତ୍ୟୁ ପୂର୍ବରୁ ବାପା ତାଙ୍କୁ ଥଙ୍ଗେଇ ଥଙ୍ଗେଇ କିଛି କହିଥିଲେ । ଆଗଭଳି ଖାନାପିନା ଠିକ୍ ନାହିଁ, ଏକଦମ୍ ଗୁମ୍‌ସୁମ୍ ହୋଇ ଦପ୍ତରରେ କ'ଣ ସବୁ ପୁରୁଣା ଦଲିଲ ଖୋଜିବାରେ ବ୍ୟସ୍ତ । ହଠାତ୍ ଦିନେ କିଛିଦିନ ବାହାରକୁ ବୁଲିବାକୁ ମନସ୍ଥ କରି ବାହାରିଛନ୍ତି- ଏକାକୀ, ଟ୍ରେନ୍‌ରେ । ଏବଂ ପହଞ୍ଚିଛନ୍ତି କଟାପାଲି ନାମକ ଏକ ଗ୍ରାମରେ, ଯେଉଁଠି କୁଷ୍ଠାଶ୍ରମଟିଏ ଅଛି । ମେରୀ ସାଇବାଣୀ ବୁଢ଼ୀକୁ ସେଠାରେ ମିଶି କିଶୋର ଭାର୍ଗବ ନିଜର ଅସଲ ପରିଚୟ ପ୍ରାପ୍ତ ହୋଇଛି । ଶେଷରେ ସେ ଜାଣିବାକୁ ପାଇଛି ଯେ, ସେ ହରିଶ୍ ଭାର୍ଗବଙ୍କ ପୁତ୍ର ନୁହେଁ, ବରଂ ହରିଶ ଭାର୍ଗବଙ୍କ ଝିଅ ଇସାବେଲାର ପୁତ୍ର । ନିଜର ପୁତ୍ର ପରିଚୟ ଚେରଟିକୁ ସେ ସେଇଠି ଆବିଷ୍କାର କରିଛି । ଗଳ୍ପଟି ଶେଷପର୍ଯ୍ୟନ୍ତ ପାଠକକୁ ସସ୍‌ପେନସ୍ (Suspense)ରେ ଆଚ୍ଛନ୍ନକରି ରଖିଛି । 'ଦୃଶ୍ୟାନ୍ତର'- ଅନ୍ୟ ଏକ ଭିନ୍ନ ଚରିତ୍ରର କାହାଣୀ । ଜମିଦାର ପୁତ୍ର ଭ୍ରମରବର ବିଳଆର ସିଂ, ଜମିଦାରୀ ଆଦବ୍‌କାଏଦାକୁ ଛାଡ଼ି ଆସିଛି ସର୍କସରେ ମିଶିବାକୁ । ସେ ତିନି ଫୁଟ ଉଚ୍ଚତା ବିଶିଷ୍ଟ

ବାମନଟିଏ । ସର୍କସ୍‌ରେ ମିଶିଲା ପରେ ସେ ନିଜ ପୂର୍ବନାଁ ବଦଳରେ 'ପାବ୍ଲୋ' ଡାକିବାକୁ ଅନୁରୋଧ କରିଛି ସମସ୍ତଙ୍କୁ । ସେହିଦିନୁ ସେ ପାବ୍ଲୋ ଭାବରେ ପରିଚିତ ହୋଇଛି । ସର୍କସ୍‌ରେ ଯୋଗଦେଇ ସେ ଆପଣେଇ ନେଇଛି - ସେଠାକାର ବାଘ, ହାତୀ, ମାଙ୍କଡ଼ ତଥା ସମସ୍ତ କର୍ମଚାରୀ ଏପରିକି ସର୍କସରାଣୀଙ୍କୁ ମଧ୍ୟ । ପାବ୍ଲୋ 'ଭଲ ଇଂରାଜୀ କହିପାରେ, ଲେଖିପାରେ, ଟାଇପ୍ କରିପାରେ । ମାଉଥ୍ ଅରଗାନ୍ ବଜାଇପାରେ ''(ପୃ-୯୬) । ପାବ୍ଲୋର ଏହି ଇଂରାଜୀରେ ଦକ୍ଷତା ଯୋଗୁଁ ଅଫିସରଙ୍କୁ ମନେଇ ନୂଆ ଜାଗାରେ ସର୍କସ୍ ଖେଳାଇବା ପାଇଁ ଅନୁମତି ଆଣିପାରେ । ପାବ୍ଲୋର ଏହି ଗୁଣ ସବୁରେ ସର୍କସ ରାଣୀର ଦୁର୍ବଳତା, ବଢ଼ିଛି । ଏହା ଜାଣିପାରି ସର୍କସ ମାଲିକ କେସିଓ ପାତ୍ରୋ (କାଣିପାତ୍ର) ଜୋକର ପାର୍ଟ କରିବାକୁ କହିଛି । ସେଥିରେ ମଧ୍ୟ ସେ ଦର୍ଶକଙ୍କ ପ୍ରିୟଭାଜନ ହୋଇପାରିଛି । କିନ୍ତୁ ପୂର୍ବର ଜୋକର ଲଲ୍ଲା ପାବ୍ଲୋର ଏହି ଲୋକପ୍ରିୟତାରେ ଈର୍ଷାନ୍ୱିତ ହୋଇ ପାବ୍ଲୋର ପ୍ରିୟ ହାତୀ (ଜୁମ୍ବୋ)କୁ କୁଣ୍ଡାରେ ବିଷ ମିଶାଇ ମାରିବା ସହ ସର୍କସ୍‌ରେ ନିଆଁ ଲଗେଇ ଦେଇଚି । ତଥାପିବି ପାବ୍ଲୋ ଉପରେ ବିଶ୍ୱାସସ୍ଥାପନ କରିଛନ୍ତି । ତେଣୁ ସେ ଶେଷରେ କହିଛନ୍ତି -'' ତା' ସ୍ୱର ସକାଳର ଆଲୁଅ ଭଳି ପ୍ରାଞ୍ଜଳ । ତଲୁ ଅନେଇଲେ ଯନ୍ତା ଉପରେ ଠିଆ ହୋଇଥିବା ବାମନର ମୁଣ୍ଡ ସ୍ୱର୍ଗରେ ଲାଗିଥାଏ । ତା ବାହୁ ବିସ୍ତାରି ହୋଇ ରହିଥାଏ ସାରା ଆକାଶର ପୂର୍ବରୁ ପଶ୍ଚିମକୁ । ଏହାହିଁ ତ ଏକମାତ୍ର ଭରସା ।'' (ପୃ-୧୦୬)

'ପିତୃବଧ' ଗଳ୍ପରେ ''ପ୍ରଫେସର ଶାସ୍ତ୍ରୀ ଖୁବ୍ ବିଖ୍ୟାତ ଲୋକ । ତାଙ୍କରି ଯେ ପାଠ ପଢ଼ିଛି,ସେ ତାଙ୍କର ପାଦ ପୂଜାକରେ ।'' ସେ ଭଳି ଲୋକ ମଧ୍ୟ ବିନା କାରଣରେ ଷଡ଼ଯନ୍ତ୍ରର ଶିକାର ହୁଅନ୍ତି । ଅଧରାତିରେ ଦୁର୍ବୃତ୍ତଙ୍କ ହାତରୁ ସତ୍ ସାହାସର ସହ ତରୁଣଟିର ଜୀବନ ରକ୍ଷା କରିଥିବା ଶାସ୍ତ୍ରୀ ମହାଶୟ ସକାଳ ପାହିଲା ବେଳକୁ ଅଭିଯୁକ୍ତ ହୁଅନ୍ତି କୌଣସି ସ୍ତ୍ରୀଲୋକଙ୍କୁ ଅସଦାଚରଣ କରିଛନ୍ତି ବୋଲି । ପ୍ରତି ଖବର କାଗଜରେ ପ୍ରଥମ ପୃଷ୍ଠାରେ ସେ ଖବର । ପୋଲିସ୍ ହାଜତରେ ରହିବାକୁ ପଡ଼ିଛି ପ୍ରଫେସର ଶାସ୍ତ୍ରୀଙ୍କୁ । ତାଙ୍କର ଓକିଲ ଛାତ୍ରଟିଏ ଆସି ତାଙ୍କୁ ଜାମିନ୍‌ରେ ନେଇଛି । ସମସ୍ତେ ତାଙ୍କୁ ଭଦ୍ରତାର ଖୋଳପା ପିନ୍ଧା ଏକ ଲମ୍ପଟ ପୁରୁଷ ବୋଲି କହିଛନ୍ତି । ତାଙ୍କୁ ପ୍ରତାରକ, ହିପୋକ୍ରାଟ ବୋଲି ମଧ୍ୟ କୁହାଯାଇଛି । ତାଙ୍କର ଦୁଃଖ ଯେ, ତାଙ୍କୁ କେହି ମଧ୍ୟ ଚିହ୍ନିପାରିଲେ ନାହିଁ, ଚିହ୍ନିବାକୁ ଚେଷ୍ଟା କଲେ ନାହିଁ । ତାଙ୍କର ଛାତ୍ରମାନେ, ପୁତ୍ରକନ୍ୟା ଏପରିକି ତିରିଶି ବର୍ଷକାଳ ଘର କରିଥିବା ସ୍ତ୍ରୀ ମଧ୍ୟ । '' ମାତ୍ର ଗୋଟାଏ ଖବର ଉପରେ ସବୁ ସଞ୍ଚିତ ସଂପର୍କ ହୁଗୁଳି ଯାଉଛି କେମିତି ''- ସେ ଦେଖୁଥିଲେ ଏବଂ ଏମିତି ଗୋଟାଏ ଚୁଟ୍‌କିରେ ଜୀବନ ଯାକର ସୁନାମ ଭୁଷୁଡ଼ି ଯାଏ ବୋଲି

ସେ ଜାଣିପାରିନଥିଲେ ।'' (ପୃ-୧୧୪) ଏସବୁ ଷଡ଼ଯନ୍ତ୍ରରେ ନାୟକ ନେପଥ୍ୟରେ ହିଁ ରହିଯାଏ - ସାମ୍ବାଦିକ ଶଙ୍କର ଦାସ । ତରୁଣଟିକୁ ଦୁର୍ବୃତ୍ତଙ୍କ ହାତରୁ ବଞ୍ଚେଇବାର ସମସ୍ତ ସୁନାମ ନେଇ ପ୍ରଫେସର ଶାସ୍ତ୍ରୀଙ୍କୁ ଲମ୍ପଟ କରାଇବାରେ ସେହି ଚରିତ୍ରର ପ୍ରମୁଖ ଭୂମିକା ରହିଛି । ଗାଳ୍ପିକ ଅତି ଚତୁରତାର ସହ ଖଳନାୟକକୁ ଗଳ୍ପର ଭୂମିକୁ ନଆଣି ଅତି ଚମତ୍କାର ଭାବେ ପାଠକଙ୍କୁ ତାହାର ଭୂମିକାକୁ ଜଣେଇଦେଇଛନ୍ତି । ପ୍ରଫେସର ଶାସ୍ତ୍ରୀ ଅବିଶ୍ୱାସର ପରିବେଶରୁ ମୁକୁଳି ଶିମୂଳି ତୁଳାଟିଏ ପହଁରିଲା ପରି ଆସ୍ତେ ଆସ୍ତେ ଖସିଗଲାବେଳେ ତଥାକଥିତ ତରୁଣଟି ରାସ୍ତାରେ ଦେଖି ତାର ପ୍ରାଣଦାତା ଶଙ୍କରଦାସ ବୋଲି ଭାବି କୃତଜ୍ଞତା ଜଣାଇଲା ବେଳେ ପ୍ରଫେସର ଶାସ୍ତ୍ରୀ ବହୁବାର ଦେଖିଥିବା ରାଜଧାନୀକୁ ପୁଣିଥରେ ନୂଆ ଢ଼ଙ୍ଗରେ ଦେଖି ଭାବୁଥାନ୍ତି 'ଓ ଗଛରୁ ପତ୍ରଟାଏ ପଡ଼ିଲାପରି ସେ କଥା ଗୋଟିଏ ମୁହୂର୍ତ୍ତର ଘଟଣା... ସେମିତି ସ୍ତ୍ରୀଟିଏ ବିଭାହେବା ପୁତ୍ରଟିଏ ଜନ୍ମ ନେବା.... ଗୋଟିଏ ଗୋଟିଏ ଦୁର୍ଘଟଣା ।'' (ପୃ-୧୧୮)

ବୃଦ୍ଧ ଗନ୍ଧର୍ବ ଗୋଛେଇତର ତ୍ୟାଗର କଥାହିଁ 'ବୃକ୍ଷଜାତକ' ଗଳ୍ପର କଥାବସ୍ତୁ । ଜଣେ ମହାପୁରୁଷଙ୍କ ସଂପର୍କରେ ଗୋଟାଏ ଏ ଖଚ ଜୀବନ ସାରା କହି କହି ବୁଢ଼ାକୁ ସେଇଟା ସତ ପରିଲାଗିଛି । ଗାଁରେ ଥିବା ଏକ ବିରଳ ଆମ୍ବଗଛ ସେହି ମହାପୁରୁଷଙ୍କ ଦ୍ୱାରା ରୋପିତ । ସେଥିରେ ବଡ଼ ବଡ଼ ଆମ୍ବହୁଏ । ତାକୁ କେହି ଖାନ୍ତି ନାହିଁ । ସାବିତ୍ରୀ ଅମାବାସ୍ୟାରେ ଆଖପାଖ ୨୫ଟି ଗାଁକୁ ଆମ୍ବପଠାଯାଏ । ଯାହା ବଳିଲା ଗ୍ରାମର ବାଙ୍କଚୂଡ଼ ମାଧବଙ୍କୁ ଭୋଗହୁଏ । ସମସ୍ତେ ସମସ୍ତପ୍ରକାର ଚେଷ୍ଟା କରିଛନ୍ତି ସେହିଗଛର ଆମ୍ବଟାକୁଆରୁ ଅନ୍ୟ ଏକ ଗଛ କରିବାକୁ । କିନ୍ତୁ ସଫଳ ହୋଇପାରି ନାହାନ୍ତି । ସମସ୍ତେ ଆସ୍ତେ ଆସ୍ତେ ବିଶ୍ୱାସ କରିଛନ୍ତି ଆମ୍ବଗଛ ଏବଂ ସେହି ତଥାକଥିତ ମହାପୁରୁଷଙ୍କ ଅଲୌକିକତାକୁ । ଆମ୍ବଗଛ ସଂପର୍କରେ ଅନେକ କଥାଜାଣିଥିବା ଗନ୍ଧର୍ବ ଗୋଛେଇତଙ୍କୁ ବି ଗାଁ ଲୋକେ ଏକ ଇତିହାସ ଅବା ଦେବପୁରୁଷ ବୋଲି କହିବା ଆରମ୍ଭ କରିଦେଇଛନ୍ତି । ବୁଢ଼ା ମଧ୍ୟରେ ଉକ୍ତ ଗଛଟି ଏକ ସନ୍ନ୍ୟାସୀ ଗଛ । ତେଣୁ ସେ କହେ -''ହେଜିଚି...ଗଛରୁ ଫଳ ହବ, ଅଥଚ ଫଳରୁ ଗଛ ହେବ ନାହିଁ, ଏ କେମିତି ସୃଷ୍ଟିଛଡ଼ା କଥା । ..ହବ, ଗଛଟାଏ ହେବ ଯେ, ସେଥିପାଇଁ ମଣିଷଟାଏ ଯିବାକୁ ହବ... । (ପୃ୧୨୩) ଏବଂ ଶେଷରେ ନିଜେ ବୁଢ଼ାହିଁ ଖସିଯାଇଛି ସବୁଠାରୁ ବଡ଼ ଆମ୍ବର ଟାକୁଆକୁ ବଗିଚ୍ଚରେ ପୋତିଦେଇ ଶାବଳଟିକୁ ସେହି ସ୍ଥାନରେ ଦେଇ । ସେ ଯେ କୁଆଡ଼େ ଯାଇଛି କାହାକୁ ଜଣା ନାହିଁ ।

ସଂକଳନର ଶେଷତମ ଗଳ୍ପ 'କୁବୁଜା' । ପୁରାଣରେ କୁବୁଜା ଉପାଖ୍ୟାନ ସହ ଚ୍ଚତୁରୀର ଅନୁଭବର ସାମଞ୍ଜସ୍ୟ ଦେଖାଇ ଅଦମ୍ୟ ଯୌନ କାମନାକୁ ପ୍ରତିଫଳନ କରାଯାଇଛି । ଚ୍ଚତୁରୀ ପିତୃମାତୃହୀନା-ରାୟ ସାହେବଙ୍କ ଦୟାର ପାତ୍ରୀ । ରାୟ ସାହେବଙ୍କ ରୋଷଶାଳର ମସଲାବଟା କାର୍ଯ୍ୟରେ ସେ ନିଯୁକ୍ତ । ବର୍ଷ ବର୍ଷଧରି ପଥର ଉପରେ ପଥର ଘଷିବା ତାର ଏକମାତ୍ର କାର୍ଯ୍ୟ । ହଠାତ୍ ଦିନେ ରାୟ ସାହେବଙ୍କ ଘରକୁ ଅତିଥି ଆସିବେ ବୋଲି ସାଜସଜ୍ଜା ଚ୍ଚଲିଥାଏ । ସେହି ଅବସରରେ ଚ୍ଚତୁରୀକୁ ମସଲା ବଟାପରେ ଚନ୍ଦନ କସ୍ତୁରୀ ଘୋରିବାକୁ ଦିଆଯାଇଛି । ସମସ୍ତଙ୍କ ଉତ୍ସୁକତାସହ ଚ୍ଚତୁରୀ ମଧ୍ୟ ଉତ୍ସାହର ସହ ଅପେକ୍ଷା କରିଛି ସେହି ଅତିଥିମାନଙ୍କୁ । ଚନ୍ଦନକସ୍ତୁରୀ ଘୋରିବା ଭିତରେ ସେ ଅନୁଭବ କରିଛି ଅନେକ ଦିନରୁ ଶୋଇଥିବା ଏକ ଅଜଣା ଅନୁଭବକୁ । ଅତିଥିମାନେ ଅସିଛନ୍ତି - ସେମାନେ ହେଲେ ରାୟସାହେବଙ୍କ ଭଉଣୀ-ଭିଣୋଇ ଏବଂ ତାଙ୍କ ସାଙ୍ଗରେ ତେରିଲା ପରି ସୁନ୍ଦର ବୁକୁ, ଠିଆ ଠିଆ ଭୁରୁ, ବଡ଼ ବଡ଼ ଆଖି, ଥୋଳା ଥୋଳା ବାଳ- '' ସେ ହେଉଛନ୍ତି ଭଣଜା । ଏଇ ରୂପ ଦେଖି ଚ୍ଚତୁରୀର ଭାବାନ୍ତର ଦେଖାଦେଇଛି । ସ୍ୱପ୍ନରେ ପହଁରିଲା ଭଳି ସେ ଟଳମଳ ଅବସ୍ଥାରେ ତାର ଅନୁଭବ-''ଏଇ ପୁରୁଣା ଆକାଶଟା ଏତେ ନେଳି ବୋଲି ତ ସେ ଜାଣି ନଥିଲା । ପବନ ଏମିତି ଚନ୍ଦନ ଭଳି ଶୀତଳ, ଏମିତି ମହ ମହ ବସେ ବୋଲି ସେ ଜାଣିନଥିଲା । ସେ ବିଶ୍ୱାସ କରିପାରୁନଥାଏ ଯେ ପାହାଚ ଚଢ଼ିଗଲା ବେଳେ ସେ ଥରେ ମୁହଁବୁଲେଇ ତାକୁଚ୍ଚହିଁ ହସି ଦେଲେକି ?'' (ପୃ-୧୪୧) ଅନୁଭବର ଶୀର୍ଷରେ ଉପନୀତ ଚ୍ଚତୁରୀର ରାତିରେ ନିଦନାଇଁ । ସେଇ ଆଖି, ସେଇ ଓଠ, ସେ ଓ ସାରବୁକୁ ବାରମ୍ବାର ଦିଶୁଯାଉଥାଏ । ସେ ଘୋରିଥିବା ଚନ୍ଦନ କସ୍ତୁରୀ କଥା ସମସ୍ତେ ଭୁଲି ସାରିଛନ୍ତି । ରାତି ଅଧରେ ସେ ଅନୁଭବ କଲା କିଏ ଜଣେ ତାର ଛୋଟ କୋଠରୀକୁ ପଶି ଆସିଲା । ତା' ଦେହରେ କାର ସ୍ପର୍ଶ । ତାର ଭିତର ବାହାର ଉଲୁସି ଉଠିଲା । ସେ ସେମିତି ଆଖିବୁଜି ତାକୁ ବାହୁ ବଢ଼େଇ ଟାଣିନେଲା ବୁକୁ ଉପରକୁ । ତା ଦେହସାରା ଲେପିଦେଲା ଚନ୍ଦନ । ଚତୁରୀର ସ୍ୱପ୍ନ ଭୂମିରେ ପୁଲକହିଁ ପୁଲକ । ଚନ୍ଦନବନର ମତୁଆଲା ପବନରେ ମତ୍ତ ହେଉଥାଏ ତାର ପଦ୍ମବନ । କେତେ କାଳ ଚତୁରୀ ସେ ସ୍ୱପ୍ନପୁରୁଷକୁ ବାହୁ ବନ୍ଧନରେ ଯେ ଭୋଗିଛି; ଆଖି ବୁଜି ସେ ଅପୂର୍ବ ରୂପକୁ ପ୍ରାଣ ଭରି ପିଇଛି ସେ ଜାଣେ ନାହିଁ । (ପୃ-୧୪୧-୧୪୨) ସକାଳ ପାହିଲା ବେଳକୁ କିନ୍ତୁ ସେ ଜାଣିଛି ଗତରାତିରେ ତା ଆବେଶ ଭାବକୁ ନେଇ ଖେଳି ସାରିଛି ରୋଷଶାଳର ମିଆ ପୁଅ । ନିଛାଟିଆ ଚଂପାଗଛ ମୂଳରେ ଗତ ରାତିର ଅଭାବିତ ଘଟଣାପାଇଁ ଅନୁଶୋଚନା

କଲାବେଳେ ସେହି ମହାମହିମଙ୍କ ଅସ୍ପଷ୍ଟ ପାଦଶବ୍ଦ ଶୁଣି ପାରିଛି । କିନ୍ତୁ ସେ କ'ଣ କହିପାରିବ - ''ସେ ଗିନା ଯୋଡ଼ିକୁ ଆଉ ଥରେ ଚନ୍ଦନରେ ଭରିବାକୁ ଆଉରି ଗୋଟିଏ ଜନ୍ମପାଇଁ ତାକୁ ଅପେକ୍ଷାକରିବାକୁ ?'' (ପୃ-୧୪୪) ପଡ଼ିବ ବୋଲି । ଗ୍ୱତୁରୀର ଏହି ଅନୁଭବ କୁବୁଜାର ଅନୁଭବ ସହ ସାମଞ୍ଜସ୍ୟ କରାଇ ବର୍ଷବର୍ଷଧରି ଗ୍ୱପି ହୋଇ ରହିଥିବା ଅଦମ୍ୟ କାମନାର ଚିତ୍ରକୁ ଫୁଟାଇଛନ୍ତି ଗାଳ୍ପିକ ।

ମୋଟ ଉପରେ ସମ୍ରାଟ ଓ ଅନ୍ୟମାନେ ସଂକଳନରେ ସ୍ଥାନୀତ ଅଧିକାଂଶ ଚରିତ୍ରଙ୍କ ଏକ ଏକ ଭିନ୍ନ କରୁଣ କାହାଣୀ ରହିଛି । ପ୍ରାୟ ଅଧିକାଂଶ ଚରିତ୍ର ଶେଷରେ କରୁଣତାରେ ଜୁବୁବୁବୁ । ସେ କାରୁଣ୍ୟରେ କାରଣ ଶାରୀରିକ ମାନସିକ କିମ୍ବା ସ୍ୱପ୍ନଭଂଗ ମଧ୍ୟ ହୋଇପାରେ । ଏହି ସଂକଳନ ମାନବିକ ଆଦର୍ଶବୋଧ, ସ୍ୱପ୍ନ ଭଂଗ, ଆଧ୍ୟାତ୍ମିକ ଉତରଣ, ଅନୁଭବର ତୀବ୍ରତା, କ୍ଷମତା/ଐଶ୍ୱର୍ଯ୍ୟ ପାଇଁ ମୋହ, ଜୀବନ ସଂଗ୍ରାମରେ ବ୍ୟର୍ଥ ଓ ଗଭୀର ମନସ୍ତାତ୍ତ୍ୱିକ ରହସ୍ୟ ସହ ଅଲୌକିକ ଅନୁଭବ ତଥା ଭିନ୍ନ ଭିନ୍ନ ଚରିତ୍ରଙ୍କ ଏକ ଅନନ୍ୟ ଚିତ୍ରଶାଳା । ତଦ୍ ସହିତ ଗଳ୍ପ ଗୁଡ଼ିକର ନିଆରା ଉପସ୍ଥାପନା ଶୈଳୀ, ଗଳ୍ପଗୁଡ଼ିକୁ ଅଧିକ ଭାବଧର୍ମୀ କରିବାରେ ସହାୟ ହୋଇଛି । ପ୍ରସଂଗ ଅନୁଯାୟୀ ଶବ୍ଦର ପ୍ରୟୋଗ (ବିଶେଷତଃ ପାର୍ଶି ଓ ନିଛକ କଥିତ ଓଡ଼ିଆ ଶବ୍ଦର ବ୍ୟବହାର) ତଥା ଗଳ୍ପର ପରିବେଶ ଅନୁଯାୟୀ ବାତାବରଣ ସୃଷ୍ଟିରେ ଗାଳ୍ପିକଙ୍କ ସିଦ୍ଧିହସ୍ତତା ବାରିହୋଇପଡ଼ିଛି । ଚରିତ୍ର ଚିତ୍ରଣ ସମୟରେ ଗଭୀର ଅନ୍ତର୍ଦୃଷ୍ଟି ନେଇ ଚରିତ୍ର ଭିତରେ ପଶି ଚରିତ୍ରଗୁଡ଼ିକ ସହ ଏକାତ୍ମ ହୋଇ ପାଠକଙ୍କ ଆଗରେ ଜୀବନ୍ତ କରି ଗଢ଼ି ତୋଳି ଓଡ଼ିଆ ଗଳ୍ପ ସାହିତ୍ୟ ଜଗତର ଏକ ଏକ ଅନତିକ୍ରମ ମାଇଲ ଖୁଣ୍ଟ ଭାବେ ଠିଆ କରାଇ ପାରିଛନ୍ତି ଶ୍ରୀଯୁକ୍ତ ରଥ - ଏଥିରେ ସଂଦେହ ନାହିଁ । ତେଣୁ ହିଁ ପରବର୍ତ୍ତୀ ସମୟରେ ସଂକଳନଟି ଶାରଳା ପୁରସ୍କାର ପ୍ରାପ୍ତ ହେବାକୁ ଯୋଗ୍ୟ ବିବେଚିତ ହୋଇଛି ।

ଓଡ଼ିଆ ବିଭାଗ
ଲକ୍ଷ୍ମୀପୁର ମହାବିଦ୍ୟାଳୟ
ଲକ୍ଷ୍ମୀପୁର, କୋରାପୁଟ

***

# ମାନ ଉଦ୍ଧାରଣ ଚନ୍ଦ୍ରଶେଖର

*ନୀଳାଦ୍ରି ଭୂଷଣ ହରିଚନ୍ଦନ*

କଥାଟି ଆରମ୍ଭ କରୁଛି । ଏ ବର୍ଷ ବିଶ୍ୱଭାରତୀରେ ତୁଳନାତ୍ମକ ସାହିତ୍ୟର ଏକ ଜାତୀୟ ପାଠଚକ୍ରର ଉଦ୍‌ଘାଟନ ଉତ୍ସବରେ ମୁଖ୍ୟ ଅତିଥି ଥିଲେ ଆମ ସାହିତ୍ୟର ଅନ୍ୟତମ ତୁଂଗ ସାହିତ୍ୟିକ ଶ୍ରୀଚନ୍ଦ୍ରଶେଖର । ମୁଁ ସ୍ୱାଗତ ଭାଷଣ ଦେବା ଅବସରରେ ଚନ୍ଦ୍ରଶେଖର ରଥଙ୍କ ପରିଚୟ ଦେଇ କହିଥିଲି, 'A towering personality of Oriya Literature." ଆମେ ଓଡ଼ିଆମାନେ ତାଙ୍କୁ ଜାଣୁ ଜଣେ ବିରାଟ ପ୍ରତିଭାବାନ୍ ବ୍ୟକ୍ତିଭାବରେ । ସୃଷ୍ଟିଶୀଳ ପ୍ରତିଭାରେ ତ ସେ ଟାଓ୍ୱାର ନିଶ୍ଚେ, ବିଦ୍ୟାରେ ମଧ୍ୟ ସେ ସେହିପରି ଟାଓ୍ୱାର । ତାଙ୍କର ବକ୍ତୃତା ଥରେ ଶୁଣିଲେ ଅନୁମାନ କରି ହୋଇଯାଏ, ତାଙ୍କର ଜ୍ଞାନ କେତେ ଗଭୀର । ପାଠଚକ୍ରର ଅଣଓଡ଼ିଆ ଅଂଶଗ୍ରହଣକାରୀ ଓ ବିଦଗ୍ଧ ଶ୍ରୋତାମାନେ ସେ ଦିନ ଏହି ଜ୍ଞାନବୃଦ୍ଧ ବ୍ୟକ୍ତିଙ୍କ ବକ୍ତୃତା ଶୁଣି ମୋ କଥାର ସତ୍ୟତା ବୁଝିଥିବେ । (ବୁଝିଥିଲେ, ଉପଲବ୍ଧି କରିଥିଲେ, ପ୍ରଶଂସା କରିଥିଲେ ମଧ୍ୟ) ସେ ବକ୍ତୃତା ଦେଉଥିଲାବେଳେ ଜଣେ ଓଡ଼ିଆ ଭାବରେ ମୋ ମନରେ ବଡ଼ ଗର୍ବ ଆସୁଥିଲା ଏହି କଥା ଭାବି ଯେ ବଂଗୀୟ ଓ ଅନ୍ୟ ଭାଷାଭାଷୀ ବିଦଗ୍ଧମାନେ ମୁଗ୍ଧ ହୋଇଥିବେ କେବଳ ତାଙ୍କର ବିଦ୍‌ବତ୍ତା ଓ ବାକ୍‌ଚତୁରୀରେ ନୁହେଁ, ତଂଙ୍କ ଚେହେରାରେ । ସେତ କେବଳ ପ୍ରତିଭାବନ୍ତ କି ଜ୍ଞାନବନ୍ତ ନୁହଁନ୍ତି, ବପୁବନ୍ତ ମଧ୍ୟ । ତାଙ୍କ ମହାଶୋଭନ ଚେହେରାକୁ ଦେଖିଲେ (ଯେତେବେଳେ ସେ ଠିଆ ହୁଅନ୍ତି ବକ୍ତୃତା ଦେବା ଭଂଗୀରେ) ମୋର ମନେ ପଡ଼ିଯାଏ 'ରଘୁବଂଶ'ରେ ଦିଲ୍ଲୀପଙ୍କ ସମ୍ପର୍କରେ କାଳିଦାସଙ୍କ ବର୍ଣ୍ଣନା - ''ବ୍ୟୁଢୋରସ୍କୋ ବୃଷସ୍କନ୍ଧଃଶାଳ ପ୍ରାଂଶୁର୍ମହାଭୁଜ' । କାଳିଦାସ ତ କେବେ ଦିଲୀପଙ୍କୁ ଦେଖି ନଥିବେ, ଚନ୍ଦ୍ରଶେଖରଙ୍କ ଭଳି ପ୍ରଶସ୍ତ ଛାତି, ଉନ୍ନତ କାନ୍ଧ, ଶାଳଗଛ ଭଳି ଦୀର୍ଘ ଓ ସିଧାସଳଖ ଲମ୍ବ ହାତ ଥିବା ମଣିଷକୁ ଦେଖି ଏପରି ଲେଖି ପକାଇଛନ୍ତି ।

ଏଇଠି କହି ରଖେ ଗୋଟିଏ ଜାଗାରେ ତାଙ୍କୁ ଜ୍ଞାନବୃଦ୍ଧ କହିଛି ବୋଲି କେହି ଯେମିତି ନ ଭାବନ୍ତି ଏଇ ଜ୍ଞାନୀ ବ୍ୟକ୍ତି ଜଣକ ବୃଦ୍ଧ ହୋଇ ଯାଇଛନ୍ତି । ସେ ବୃଦ୍ଧ କି ଯୁବକ ତାଙ୍କୁ ଦେଖିଲେ ତାଙ୍କ କଥା ଶୁଣିଲେ ଜାଣି ହେବ । ସେ କେବେ ବୃଦ୍ଧ ହେବେ ବୋଲି ମୋର ବିଶ୍ୱାସ ହେଉନି । ଦେହରେ କେବେ ସିନା ବୃଦ୍ଧ ହୋଇ ଯାଇ ପାରନ୍ତି, ମନରେ କେବେ ହେବେ ନାହିଁ । ଏବେ ତାଙ୍କୁ ପଞ୍ଚସ୍ତରି ହେଲା କିନ୍ତୁ ଦେଖିବ କୋଡ଼ିଏ ବର୍ଷ କମ୍ କରି କହିବ ସିନା, ବେଶି ନୁହଁ । ମୁଁ ତ ତାଙ୍କ ଟିକେଟ୍ କଲାବେଳେ ରୀତିମତ

ସଂଦେହରେ ପଡ଼ିଯାଇଥିଲି, ସିଏ ସିନିଅର ସିଟିଜେନ୍ ହେଲେଣି ନା ନାହିଁ ଭାବି । ମୁଁ ଜାଣେ ତାଙ୍କ ପରି ଶରୀର ଓ ମନ ଉପରେ ନିୟନ୍ତ୍ରଣ ରଖି ପାରିଲେ ଜଣେ ଲେଖକ ବହୁକାଳ ଯୁବକ ରହିପାରିବ ଓ ସୁନ୍ଦର ସୃଷ୍ଟି ଦେଇ ପାରିବ ।

ଈଶ୍ୱରଦତ୍ତ ପ୍ରତିଭାଠାରୁ ଆରମ୍ଭ କରି ବିଦ୍ୟାବୁଦ୍ଧି, ବପୁରେ ସେ ଏତେ ବିରାଟ ଯେ ତାଙ୍କ ପାଖରେ ପହଞ୍ଚିବା ସହଜ ମନେ ହୁଏନି । କିନ୍ତୁ ଯେଉଁମାନେ ତାଙ୍କ ପାଖକୁ ଯାଇଛନ୍ତି, ତାଙ୍କ ସହିତ ମିଶିଛନ୍ତି ବା ତାଙ୍କର ନିକଟବର୍ତ୍ତୀ ହୋଇଛନ୍ତି ସେମାନେ ଜାଣିଛନ୍ତି ଏଡ଼େ ଅସହଜ, ଗମ୍ଭୀର ଦେଖାଯାଉଥିବା ମଣିଷଟି କେଡ଼େ ସହଜ, କେଡ଼େ ଅକୃତ୍ରିମ । ବଡ଼ ଜଣେ ସାହିତ୍ୟକାର ଅହଂକାରରେ ଅନ୍ୟମାନଙ୍କଠାରୁ ନିଜକୁ ଦୂରେଇ ରଖିବା କଥା ବୋଧହୁଏ ସେ ଭାବି ନାହାନ୍ତି କେବେ । ତେଣୁ ପିଲା ସାହିତ୍ୟକଙ୍କଠୁ ଆରମ୍ଭ କରି ବୁଢ଼ା ସାହିତ୍ୟିକଙ୍କ ପର୍ଯ୍ୟନ୍ତ ଖଡ଼ିଧରା ସାହିତ୍ୟିକଙ୍କଠାରୁ ଆରମ୍ଭ କରି ପର୍ବତିଆ ସାହିତ୍ୟକଙ୍କ ପର୍ଯ୍ୟନ୍ତ କିମ୍ବା ସବୁ ପ୍ରକାରର, ସବ ବିଗ୍ରରର, ସବୁ ବୟସର ପାଠକମାନଙ୍କ ସହିତ ସହଜେ ସେ ବଂଧୁପଣ ଆଚରି ପାରନ୍ତି ।

ଥରେ ତାଙ୍କ ଘରକୁ ଯାଇଥିଲି । ବିଶ୍ୱଭାରତୀକୁ ଆସିବା ପାଇଁ ତାଙ୍କୁ ନିମନ୍ତ୍ରଣ କରିବାକୁ । ଦେଖିଲି ଫତେଇ ପିନ୍ଧିଛନ୍ତି । ଚିତ୍ର ଆଙ୍କୁଛନ୍ତି । ନନ୍ଦଲାଲ୍ ବୋଷଙ୍କ ପରି କି ମୋ ଦେଖାର ଶିଳ୍ପୀ ରାମକିଙ୍କରଙ୍କ ପରି । ମୋର ତିନିଜଣ ନମସ୍ୟ ବ୍ୟକ୍ତିଙ୍କୁ ଦେଖିଛି ଘରେ ଫତେଇ ପିନ୍ଧି କିଛି ସାହିତ୍ୟ କାର୍ଯ୍ୟ କରୁଥିବାର । ସେ ତିନିଜଣ ହେଉଛନ୍ତି ସେ କାଳର ଲୋକ, ହରେକୃଷ୍ଣ ମହତାବ, ସୁରେନ୍ଦ୍ର ମହାନ୍ତି ଆଉ ମୋ ବାବା । ଆଜି କାଲିକାର ଜଣେ ବ୍ୟକ୍ତି ଫତେଇ ପିନ୍ଧିଥିବାର ଦେଖି ମୁଁ ସତକୁ ସତ ବିସ୍ମିତ ହୋଇ ପଡ଼ିଲି । ମୋମନରେ ସ୍ୱତଃ ଶ୍ରଦ୍ଧା ଓ ଭକ୍ତି ଆସି ଯାଇଥିଲା । ଅନେକ ସମୟ ମିଷ୍ଟାଳାପ ହେଲା, ଅବଶ୍ୟ ସାହିତ୍ୟ ସଂପର୍କିତ । ଭଲ ଲାଗେ ତାଙ୍କ ମୁହଁରୁ କଥା ଶୁଣିବାକୁ । କଥା କହିଲାବେଳେ ମନର ଭାବ ସବୁ ବିନା ବାଧାରେ ମୁହଁ ଭିତରୁ ତାଙ୍କର ବାହାରି ଆସେ । କିଛି ଲୁଚାଇବାକୁ ଚେଷ୍ଟା କରନ୍ତି ନି କି ମାପିଚୁପି କଥା କହନ୍ତିନି । କେତେକଥା କାହାକୁ କୁହାଯିବ, ସେମିତି ହିସାବ ନାହିଁ । ବଡ଼ ବେପରୁଆ ଭାବ, ଯେମିତି ଖାତିର ନାଇଁ, ଦୁନଆିରେ କାହାକୁ ।

ବହୁତ ସଭାସମିତିରେ ତ ତାଙ୍କ ସହିତ ଭେଟ ହୋଇଛି, କଥାବାର୍ତ୍ତା ହୋଇଛି, ତାଙ୍କ ବକ୍ତୃତା ଶୁଣି ବିସ୍ମିତ ହୋଇଛି, ତାଙ୍କୁ ପ୍ରକାଶ୍ୟରେ ପ୍ରଶଂସା କରିଛି, ପ୍ରତ୍ୟକ୍ଷ ଭାବରେ ମଧ୍ୟ । ସବୁବେଳେ କିନ୍ତୁ ତାଙ୍କ ଭିତରେ ପୂରି ରହିଥିବା ଉତ୍କଳୀୟ ଭାବ ଜାତିପ୍ରୀତି ଦେଖି ବେଶି ମୁଗ୍ଧ ହୋଇଛି । ପୁଣି ସେଇ ବିଶ୍ୱଭାରତୀ ଓଡ଼ିଆ ବିଭାଗର ତୁଳନାତ୍ମକ ସାହିତ୍ୟ ସଂପର୍କିତ ପାଠଚକ୍ର କଥା କହେ, ପ୍ରତିବର୍ଷ ଓଡ଼ିଆ ବିଭାଗ ଆୟୋଜିତ

ଜାତୀୟ ପାଠଚକ୍ର ଗୁଡ଼ିକରେ ମୁଖ୍ୟ ଅତିଥି ବା ମୁଖ୍ୟ ବକ୍ତା ଭାବରେ ଜଣେ ବିଶିଷ୍ଟ ବିଦ୍ୱାନକୁ ନିମନ୍ତ୍ରଣ କରାଯାଏ । ଏଥର ମଧ୍ୟ ଏହି ବିଷୟର ଜଣେ ବିଶେଷଜ୍ଞ, ବିଶିଷ୍ଟ ବିଦ୍ୱାନ୍ ପ୍ରଫେସର ମଧୁସୂଦନ ପତିଙ୍କୁ ନିମନ୍ତ୍ରଣ କରାଯାଇଥିଲା । ସେ ମୂଳରୁ ଆଗ୍ରହର ସହିତ ସମ୍ମତି ଦେଇଥିଲେ ମଧ୍ୟ ଶେଷ ମୁହୂର୍ତ୍ତରେ ତାଙ୍କର କନ୍ୟାର ବିବାହ ଯୋଗୁଁ ଆସିପାରିବେ ନାହିଁ ବୋଲି ଜଣାଇଲେ । ହଠାତ୍ ମୋ ମୁଣ୍ଡରେ ବଜ୍ରପାତ ହେଲାଭଳି ଲାଗିଲା । କଣ କରିବି ? ବଡ଼ ସଂକଟର କଥା । ଏଭଳି ଏକ ବିଶେଷ ସମାରୋହକୁ ଶୋଭା ପାଇଲା ଭଳି ଜଣେ ଅତିଥିଙ୍କର ଆବଶ୍ୟକତା ରହିଛି । ମୋ ଆଖିରେ ହଠାତ୍ ନାଚି ଉଠିଲା ବପୁଷ୍ମାନ୍ ବାଣୀପୁତ୍ର ଚନ୍ଦ୍ରଶେଖରଙ୍କ ଚେହେରା । ଆଗରୁ ବି ପ୍ରସ୍ତାବ ଥିଲା ତାଙ୍କୁ ବିଶ୍ୱଭାରତୀ ଓଡ଼ିଆ ସାହିତ୍ୟ ପରିଷଦର ବାର୍ଷିକ ଉତ୍ସବରେ ମୁଖ୍ୟ ଅତିଥି କରି ଡାକିବାକୁ । ସଂଧ୍ୟାରେ ଟେଲିଫୋନ୍ କଲି ଭୁବନେଶ୍ୱରକୁ । ମନରେ ଆଶାଆଶଙ୍କାର ଦ୍ୱନ୍ଦ୍ୱ । ଏତେ କମ୍ ସମୟ ଥାଇ ଯୋଗାଯୋଗ କରୁଛି; ସତରେ କଣ ମିଳିବେ ? କେତେ କୁଆଡ଼େ ତାଙ୍କର ଡାକରା ଥିବ । ଯଦି ନପାଇବି, ଏଠି ମୋ ନାକ ନିଶ ତଳେ ଘୁଷୁରିବ ସିନା ! ଫୋନ୍ କରିବା ପୂର୍ବରୁ ପ୍ରଭୁ ଜଗନ୍ନାଥଙ୍କୁ ମନେ ମନେ ଡାକିଲି- ପ୍ରଭୁ ହେ ମୋ ମାନ ରଖ । ସାର୍ ଚନ୍ଦ୍ରଶେଖରଙ୍କ ହୃଦୟରେ ବିଜେ କର । ଗୋଟେ ମୁହୂର୍ତ୍ତପାଇଁ ଶାନ୍ତିନିକେତନ ମୋହିନୀବେଶ ହୋଇ ଠିଆ ହୋଇଯାଉ ତାଙ୍କ ଆଗରେ । ମୋହିନୀମାୟାରେ ପଡ଼ି ପୁଣିଥରେ ଶାନ୍ତିନିକେତନ ଆସିଯାଆନ୍ତୁ । ସୁସଜ୍ଜିତ ମଂଚ ଉପରେ ଦମ୍ଭିଲା ଭଂଗୀରେ ଠିଆ ହୋଇ ବକ୍ତୃତା କରନ୍ତୁ । ଫୋନ୍ କଲି । ଯାହାହେଉ ମାହେନ୍ଦ୍ରବେଳା ଥିଲା ବୋଧହୁଏ । ସେଇଦିନ ହିଁ ସେ ଫେରିଥାନ୍ତି ପନ୍ଦରଦିନ ବ୍ୟାପୀ ଦାକ୍ଷିଣାତ୍ୟ ବିଜୟ ପରେ । ଭୁବନେଶ୍ୱରପଟୁ ଗମ୍ଭୀର ସ୍ୱର ଶୁଣାଗଲା । ଏପଟୁ କହିଲି "ନୀଳାଦ୍ରି କହୁଛି ସାର୍ ଶାନ୍ତିନିକେତନରୁ" । ଏଠି ଓଡ଼ିଆଙ୍କ ମାନ ଭୂଲୁଣ୍ଠିତ ହେବାକୁ ଯାଉଛି । ଆପଣ ହିଁ କେବଳ ସଂକଟରୁ ଉଦ୍ଧାର କରି ପାରିବେ । ଜଗନ୍ନାଥେ ଯେମିତି କାଞ୍ଚିଯୁଦ୍ଧରେ ଓଡ଼ିଆଙ୍କ ମାନ ରକ୍ଷା କରିଥିଲେ, ଆପଣ ସେମିତି ଦୟା ବହି ଆସନ୍ତୁ ଶାନ୍ତିନିକେତନରେ ଓଡ଼ିଆଙ୍କ ମାନ ରକ୍ଷା କରିବାକୁ । ମୋର ଏ ଗୌରଚନ୍ଦ୍ରିକା ଶୁଣି ପଗ୍ୱରିଲେ — କଥା କଣ କୁହ । ଏଇ ତ ମୁଁ ପନ୍ଦର ଦିନ ପରେ ଘରକୁ ଫେରୁଛି ସାଉଥରୁ । ଏଥର କଥାଟାକୁ ସବିସ୍ତାର କହିଲି । ସେ ବୋଧହୁଏ ମୋର ଆର୍ତ୍ତି, ବିଶେଷତଃ ଶାନ୍ତିନିକେତନର ଓଡ଼ିଆଙ୍କ ଆର୍ତ୍ତି ଅନୁଭବ କଲେ । କହିଲେ - ଏବେ ତ ମୁଁ କ୍ଳାନ୍ତ, ଯାପରେ ପୁଣି ଆହ୍ଲାବାଦ୍‌ରେ ଗୋଟିଏ ସେମିନାର୍ ଅଛି । ସେଠୁ ଘରକୁ ଫେରି ଆସିବା ପାଇଁ ଟିକେଟ୍ ହୋଇଯାଇଛି । ସେଠା ସେମିନାର ସରିବାର ଦିନକ ପରେ ସେମିନାର୍ । ତଥାପି ମୁଁ ଯିବି, ସମସ୍ତେ ଗ୍ୱହୁଛନ୍ତି ଯେତେବେଳେ ଯିବି । ତେବେ ମୋତେ ଆହ୍ଲାବାଦରୁ ସିଧାସଳଖ ଶାନ୍ତିନିକେତନ ଆସିବାକୁ

ପଡ଼ିବ । ଆଉ ଘରକୁ ଫେରି ପାରିବି ନାହିଁ । ଘରକୁ ଫେରିବା ଆଉ ଦିଦିନ ଡେରି ହୋଇଯିବ । ହଉ, ଆଉ କଣ କରିବା ତମକୁ ତ 'ନା' କରି ହେବନି !

ଯାହାହେଉ, ପ୍ରଭୁ ଜଗନ୍ନାଥଙ୍କ କୃପା ହେଉ କି ଚନ୍ଦ୍ରଶେଖରଙ୍କ କୃପା ହେଉ, ଅସମ୍ଭବ କଥା ସଂଭବ ହେଲା । ଚନ୍ଦ୍ରଶେଖରଙ୍କ ଉଦାରତା ଏବଂ ଗଭୀର ଉତ୍କଳୀୟ ଜାତିପ୍ରେମ ବଡ଼ ଅଭିଭୂତ କଲା ମୋତେ । ସତରେ ଓଡ଼ିଶା ବାହାରେ ଓଡ଼ିଆଙ୍କ ଗୌରବରକ୍ଷା କରିବାକୁ କିଏ ଏତେ କଷ୍ଟ କରିପାରେ ?

ପ୍ରଫେସର ଓ ପ୍ରାଧ୍ୟାପକ,
ଓଡ଼ିଆ ବିଭାଗ, ବିଶ୍ୱଭାରତୀ
ଶାନ୍ତିନିକେତନ - ୭୩୧୨୩୫ (ପଶ୍ଚିମ ବଙ୍ଗ)

* * *

# ପଞ୍ଚମ କନ୍ୟା

*ଶ୍ରୀମତୀ କଳ୍ପନାମୟୀ ଦାଶ*

କେହି ଜଣେ ମହାପୁରୁଷ କହିଥିଲେ ଯେ ଜୀବନର ବଡ଼ ସୁଖ ହେଉଛି ସତ୍‌ସଙ୍ଗ ଲାଭ । ମୋ ଜୀବନ କାଳରେ ଏହି କଥାର ସତ୍ୟତା ମୁଁ ଉପଲବ୍ଧି କରିଛି । ଏହାକୁ ବିଭୁଦତ୍ତ ଆଶୀର୍ବାଦ ବୋଲି ଗ୍ରହଣ କରିନେଇଛି । ଏହି ଆଶୀର୍ବାଦର ଅନ୍ୟତମ ପ୍ରତୀକ ହେଉଛନ୍ତି ପ୍ରଫେସର ଶ୍ରୀଯୁକ୍ତ ଚନ୍ଦ୍ର ଶେଖର ରଥ । ୧୯୯୯ ମସିହା, ଡଲାସର ଜଗନ୍ନାଥ ସୋସାଇଟି ତରଫରୁ ନିମନ୍ତ୍ରଣ ପାଇ ସିଏ ଆମେରିକା ଆସିଥିଲେ । ସେ ବର୍ଷ କାନାଡ଼ା (ଟରେଣ୍ଟୋ)ରେ ହେଉଥିବା OSA Conventionରେ ମଧ୍ୟ ତାଙ୍କୁ Key note speaker ଭାବରେ ଯୋଗ ଦେବାପାଇଁ ନିମନ୍ତ୍ରଣ କରାଯାଇଥାଏ । ଏହି OAS convention ପୂର୍ବ ସପ୍ତାହରେ ଆମ ସହର (ମିନିଆ ପଲିସ୍)ରେ ଥିବା Hindu Mandir ରେ ମଧ୍ୟ ତାଙ୍କର ବକ୍ତୃତା ଦବାର ସ୍ଥିର ହୋଇଥାଏ । ଏହି ଅବସରରେ ସେ ଆମର ଆତିଥ୍ୟ ଗ୍ରହଣ କରିଥିଲେ ।

ଜଣଙ୍କର ବ୍ୟକ୍ତିତ୍ୱକୁ ବୁଝିନେବା ପାଇଁ ବେଳେବେଳେ କେବଳ ଦୃଷ୍ଟି ବିନିମୟ୍ ହିଁ ଯଥେଷ୍ଟ ହୋଇଥାଏ । ପ୍ରଫେସର ରଥଙ୍କ ସହ ଆମେ ତ ସପ୍ତାହ-ବ୍ୟାପୀ ସମୟ ପାଇଥିଲୁ । ପ୍ରଥମେ ଏୟାର ପୋର୍ଟରୁ ଘରକୁ ଆସିବା ଦିନ ମୁଁ ଦୁଆର ମୁହଁରେ ଅପେକ୍ଷା କରିଥିଲି । ହାତଯୋଡ଼ି ଛିଡ଼ା ହୋଇଥିଲି ନମସ୍କାର କରିବା ପାଇଁ । ମୁଣ୍ଡ ନଇଁଗଲା ପାଦ ତଳକୁ ତାଙ୍କୁ ଦେଖିବା ମାତ୍ରକେ । ମୁହଁରେ ଗୋଟିଏ ଦେବତୁଲ୍ୟ ଭାବ ପରିଲକ୍ଷିତ ହେଉଥିଲା, ଯାହାର ପ୍ରଭାବରେ ଘରଟା ଯେପରି ଧନ୍ୟ ହୋଇଗଲା । ଆବଶ୍ୟକତାରୁ ଅଧିକା କଥା ସେ କହୁ ନଥିଲେ । କଥୋପକଥନ ସମୟରେ ଅନ୍ୟ ଲୋକଟିର କଥା ସେ ଶୁଣୁଥିଲେ ଏବଂ ଉପଯୁକ୍ତ ମତାମତ ଦେଉ ଥିଲେ । ସାତ୍ତ୍ୱିକ ଆହାର, ଶାଳୀନ ବ୍ୟବହାର, କ୍ଳାନ୍ତିହୀନ ଆଚରଣ, ନିୟମିତ ସାହିତ୍ୟ ସାଧନା ଏବଂ ପରିବାର ପ୍ରତି ଅତିମାତ୍ରାରେ ଶ୍ରଦ୍ଧା, ଆମ ସମସ୍ତଙ୍କୁ ମୁଗ୍ଧ କରିଥିଲା । ଏହିପରି ଯଶଗାନ କିଏ କେଉଁଠି କେତେ ଅବଶ୍ୟ କରିବେ ଏହି ଜନ୍ମ ଦିବସ ପାଳନ ଅବସରରେ । ମୁଁ ଅଧିକ ଭାଷା କେଉଁଠୁ ଅବା ପାଇବି ? ଏ କେବଳ ମୋର ଏବଂ ମୋ ପରିବାରର ନିଜସ୍ୱ ଅନୁଭୂତି ଯାହା କେବଳ ଅନୁଭବ କରି ହୁଏ, ବୁଝିହୁଏ, କିନ୍ତୁ ବୁଝାଇ ହୁଏ ନାହିଁ ।

ହିନ୍ଦୁ ମନ୍ଦିରର ରବିବାସରୀୟ ସତ୍‌ସଙ୍ଗରେ ଶ୍ରୀଯୁକ୍ତ ରଥ ଜଗନ୍ନାଥ ସଂସ୍କୃତି ଉପରେ ଏକ ଘଣ୍ଟା ଭାଷଣ ଦେଇଥିଲେ । ଏହା ପୂର୍ବରୁ ସ୍ୱର୍ଗତ କାହ୍ନୁଚରଣ ମିଶ୍ର,

ଗଜପତି ମହାରାଜା ଦିବ୍ୟସିଂହ ଦେବ, ଆଦି ଜ୍ଞାନୀ ଗୁଣୀମାନେ ଏହିପରି ଭାଷଣ ଦେଇ ଯାଇଥିଲେ ଅବଶ୍ୟ । ଏ ମଧ୍ୟରେ ହିନ୍ଦୁ ମନ୍ଦିରର ସଦସ୍ୟ ମାନଙ୍କ ମଧ୍ୟରେ ଜଗନ୍ନାଥଙ୍କ ବାବଦରେ ଜାଣିବା ପାଇଁ ବେଶ୍ ଆଗ୍ରହ ସୃଷ୍ଟି ହୋଇ ସାରିଥିଲା । ପ୍ରଫେସର ଶ୍ରୀଯୁକ୍ତ ରଥଙ୍କର ଭାଷଣ ଅତିପ୍ରାଞ୍ଜଳ ଓ ଅନନ୍ୟସାଧାରଣ । ଆଳତି ପରେ ସମସ୍ତ ଶ୍ରୋତା ବନ୍ଧୁ ଏ ଆୟୋଜନ ପାଇଁ ଆମକୁ ଧନ୍ୟବାଦ ଦେଇଗଲେ । କେତେ ଜଣ ବନ୍ଧୁ ପୂର୍ବରୁ ଜଗତର ନାଥ ଜଗନ୍ନାଥଙ୍କ ବାବଦରେ କିଛି ଜାଣି ନଥିଲେ । ସେମାନେ ପରମ ଆଗ୍ରହର ସହ ସପରିବାର ଓଡ଼ିଶା ଆସି ଜଗନ୍ନାଥ ଦର୍ଶନ କରି ନିକଟରେ ଫେରି ଯାଇଛନ୍ତି । ଏତଦ୍, ବ୍ୟତୀତ, ପ୍ରସ୍ତାବିତ ମନ୍ଦିରରେ ଚତୁର୍ଦ୍ଧା ମୂର୍ତ୍ତିଙ୍କର ସ୍ଥାପନା ଲାଗି ପୂର୍ବରୁ ସହଯୋଗ କରୁନଥିବା ବ୍ୟକ୍ତିମାନେ ଏବେ ମନ୍ଦିରର ଜମି ଉପରେ ଆସନ୍ତା ବର୍ଷ ରଥ ଯାତ୍ରା ଦେଖିବା ପାଇଁ ଆଦରର ସହ ଅପେକ୍ଷା କରିଅଛନ୍ତି । ଏହିଠାରେ କହିରଖେ ଯେ ଭାରତର ମନ୍ଦିର ପରି ମନ୍ଦିର ତୋଳା ହେବାର ପ୍ରସ୍ତାବ ଏବେ କାର୍ଯ୍ୟକାରୀ ହେବାକୁ ଯାଉଛି, ଅକ୍ଟୋବର ୪, ୨୦୦୩ରେ ଶୁଭାରମ୍ଭ । ତାଙ୍କର ଭାଷା ଓ ଭାଷଣର ପ୍ରଭାବ ଏହିପରିଥିଲା । ପ୍ରଫେସର ରଥଙ୍କର ଏହି ଭାଷଣ ଶୁଣି ମୋର ୨୦ ବର୍ଷର କମ୍ପୁଟର ସାଇନ୍ସରେ ପଢୁଥିବା ପୁଅ (ଏବେ ୨୪) ଆସି ମତେ କହିଲା ମା ! ଏଇ ଅଜାଙ୍କ ପରି ତୁ କାହିଁକି ଆମର ଧର୍ମ, ଆମର ଠାକୁରଙ୍କ କଥା ମତେ ବୁଝେଇ ପାରୁନୁ ? ହିନ୍ଦୁ ଧର୍ମରେ ଜନ୍ମ ହେଇଛି ବୋଲି ଏବଂ ଓଡ଼ିଆ ଘରର ପୁଅ ବୋଲି ମୋର ସାନ ପୁଅ ଦେବେଶ୍ ମନରେ ଆଜନ୍ମ ବହୁତ ଗର୍ବ । କିନ୍ତୁ ମୋର ବଡ଼ ପୁଅ ଏବଂ ବୋହୁ ମଧ୍ୟ ତା ସହ ମନ୍ତ୍ର ମୁଗ୍ଧ ହୋଇ ଭାଷଣ ଶୁଣୁ ଥିଲେ । ତାଙ୍କର କଥା କହିବାର ଶୈଳୀ ଏତେ ଉଚ୍ଚ କୋଟିର ଏବଂ ସହଜବୋଧ୍ୟ, ଏହା ପ୍ରତ୍ୟେକ ଶ୍ରୋତା ସମସ୍ୱରରେ ସ୍ୱୀକାର କରିଥିଲେ ।

ପ୍ରସଙ୍ଗକ୍ରମେ ଦିନେ କହିଥିଲେ, ବୁଝିଲୁ ମା, ଏ ଅପତ୍ୟ ସ୍ନେହ ହେଉଛି ପବିତ୍ର ଗଙ୍ଗାର ଧାରା ସଦୃଶ । ତୁ, ତୋର ଜେଜେ-ବାପା-ମାଙ୍କ ଠାରୁ ଯାହା ପାଇଛୁ ତାହା ତୋ ପିଲାଙ୍କୁ ଦେବୁ ସେମାନେ ତାଙ୍କ ପିଲାଙ୍କୁ —ଏହିପରି ଗ୍ଳିଥିବ । ସ୍ରୋତ କେବେ ଉଜାଣି ହବନି, ଏହା ଆଶା କରିବା ବୃଥା । ତାଙ୍କର ଏ ସ୍ପଷ୍ଟ ମତାମତରେ ମୋର ମନ ଦ୍ରବୀ-ଭୂତ ହୋଇଗଲା । ସନ୍ତାନ ଜନିତ ଏକ ମାନସିକ ଉଦ୍‌ବେଳନ ହଠାତ୍ ସ୍ଥିର ହୋଇଗଲା । ମା ବାପାଙ୍କର ଲାଳନ ପାଳନ, ଶିକ୍ଷାୟତନର ଶିକ୍ଷା, ସଂଯୋଗ ବଶତଃ ଜୀବନରେ ଲାଭ କରିଥିବା କୌଣସି ଅନୁଭୂତି ମତେ ଏହି ଉପଦେଶଟି ଦେଇ ନଥିଲା । ଏଠାରେ କହିରଖେ ଯେ ମୋର ପରଦେଶରେ ଜନ୍ମ ନେଇ ଥିବା ଓ ଶିକ୍ଷା ପାଇଥିବା ଦୁଇ ପୁଅ ବୋହୁ ଏବଂ ତାଙ୍କର ବାପା କାର୍ଯ୍ୟ ଉପଲକ୍ଷେ ବେଶ୍ କିଛି ସମୟ ବାହାରେ କଟାଉ ଥିଲେ ମଧ୍ୟ ମଦ୍ୟ-ମାଦକ ସିଗାରେଟ୍ ଅବା ଗୋ-ମାଂସ ଛୁଅଁନ୍ତି ନାହିଁ । ଅତିଥି ଅଭ୍ୟାଗତ

ତଥା ନିଜର ସଂପର୍କୀୟ-ମାନଙ୍କ ପ୍ରତି ସେମାନଙ୍କର ବ୍ୟବହାର ଅତ୍ୟନ୍ତ ମଧୁର ତଥାପି ସମୟ ହିଁ ସମୟ । ଜୀବନ ତ ଜୀବନ । ଏ ଜୀବନରେ କିଞ୍ଚିତ୍ ମାନସିକ ଅସନ୍ତୁଳନ ରହିବ ହିଁ ରହିବ । କିନ୍ତୁ ପ୍ରଫେସର ରଥଙ୍କର ଏ ଅଯାଚିତ ତଥା ଉପାଦେୟ ଉପଦେଶ ଆଜି ପର୍ଯ୍ୟନ୍ତ ମତେ ନାନା ଭାବରେ ଶୃଙ୍ଖଳିତ କରି ଆସିଛି ।

କୌଣସିମତେ ଆମେ ଜାଣିଥିଲୁ ଯେ ଶ୍ରୀଯୁକ୍ତ ରଥ ଯେକୌଣସି ବିଷୟ ବସ୍ତୁ ଉପରେ ଭାଷଣ ଦେଇ ପାରନ୍ତି । ପୂର୍ବରୁ ତ ଶୁଣିବାର ସୌଭାଗ୍ୟ ହୋଇ ନଥିଲା, ହିନ୍ଦୁ ମନ୍ଦିରର ଭାଷଣପରେ ଆମେ ବଡ଼ ଉତ୍କଣ୍ଠା ସହିତ ଅପେକ୍ଷା କରିଥିଲୁ OAS Convention ରେ ତାଙ୍କ ବକ୍ତୃତା ଶୁଣିବା ପାଇଁ । ଆମେ ଏକତ୍ର ମିନିଆ ପଲିସ୍‌ରୁ ଟରଣ୍ଟୋ ଯିବା କଥା । ସେ ଜଗନ୍ନାଥଙ୍କ ଉପରେ କିଛି କହିବା ପାଇଁ ପ୍ରସ୍ତୁତ କରୁଥିଲେ । ଯାତ୍ରାର ପୂର୍ବରାତ୍ରିରେ ହିଁ ଫୋନ୍ ଆସିଲା ସେ ବର୍ଷର convener ଙ୍କ ଠାରୁ-ଯେତିକି ସମୟ ଶ୍ରୀଯୁକ୍ତ ରଥଙ୍କ ପାଇଁ ଉଦ୍ଦିଷ୍ଟ ଥିଲା ସେତିକି ସମୟ ଭିତରେ ଆଉଜଣେ ବିଶିଷ୍ଟ ବକ୍ତାଙ୍କୁ ଏଡ଼ଯଷ୍ଟ କରିବା ପାଇଁ ହେବ । ଯେଉଁ ବିଷୟ ବସ୍ତୁଟି ସିଏ ବାଛି ନିଜକୁ ପ୍ରସ୍ତୁତ କରୁଥିଲେ ତାହା ଶୀଘ୍ର ସରି ପାରିବନି । ଏଥିରେ ବକ୍ତୃତାର ମୌଳିକତା କ୍ଷୁର୍ଣ୍ଣ ହେବ, ଆମ ସହରରୁ ଆମ ଘରୁ ସେ ବିଦାୟ ନେଇ ଯିବାର ଦୁଃଖ ସହ ଏହି ଅବ୍ୟବସ୍ଥାରେ ଆମେ ବହୁତ କ୍ଷୁବ୍ଧ ହେଲୁ । ଏବଂ ସମୟାନୁବର୍ତ୍ତିତାର ଏହି ଦିଗଟି ମଧ୍ୟ ମତେ ଏତେବେଳେ ଆଦୌ ଭଲ ଲାଗିଲାନି । ଯଥା ସମୟରେ ଏହି ପରି ବ୍ୟଥିତ ମନରେ ଆମେ ମିନିଆପଲିସ ଛାଡ଼ିଲୁ ।

Convention ରେ ପ୍ରଫେସର ରଥଙ୍କର ବକ୍ତୃତା ଦେବା ପୂର୍ବରୁ ଅନ୍ୟ ଅତିଥି ବକ୍ତାଙ୍କର ବକ୍ତୃତା ଦେବାର ବ୍ୟବସ୍ଥା କରାହେଲା । ସେ ମଧ୍ୟ ଜଗନ୍ନାଥ ଧର୍ମ ଉପରେ କହିଲେ ଏବଂ ତାହା ବେଶ୍ ରଚିକର ହୋଇଥିଲା । ତାଙ୍କ ପାଇଁ ମଧ୍ୟ ସମୟ ଅତିସୀମିତ ଥିଲା । ତାଙ୍କ ପରେ ପରେ ଶ୍ରୀ ଯୁକ୍ତ ରଥ ଏହି ପରିଭାବରେ ନିଜର ଭାଷଣ ଆରମ୍ଭ କଲେ, ମନେ ହେଲା ଗୋଟିଏ ବକ୍ତୃତାକୁ ଦୁଇଜଣ ବାଣ୍ଟି କରି କହିଲେ । ଶେଷ ହେବା ପର୍ଯ୍ୟନ୍ତ ଶ୍ରୋତାଗଣ ମୁଗ୍ଧ ହୋଇ ବସି ରହିଥିଲେ । ଆମେ ଦ୍ୱିତୀୟବାର ଶୁଣିବାର ବିରକ୍ତି ଅନୁଭବ କରିବୁ । ସମସ୍ତେ ବରଂ ଜଗନ୍ନାଥଙ୍କ ଭାବରେ ଅତି ବିହ୍ୱଳ ହୋଇ ଯାଇଥିଲେ । ବକ୍ତୃତା ସରି ହଲଟି ଅନ୍ୟ କାର୍ଯ୍ୟକ୍ରମ ପାଇଁ ପ୍ରସ୍ତୁତ କରିବା ସମୟରେ ମଧ୍ୟ ବହୁତ ବ୍ୟକ୍ତି ଯଥା ସ୍ଥାନରେ ବସି ରହିଥିଲେ ଏବଂ ଆଉ କହିବକି ହେବାଲି କୁହାକହି ହେଉଥିଲେ । ଏଇଅତ ବକ୍ତାଙ୍କର ବୈଶିଷ୍ଟ୍ୟ । ତାଙ୍କର ଏ ପ୍ରତିଭା ସର୍ବଜନ ବିଦିତ । ଯଦିଓ ମୋ ପାଇଁ ଏହା ପ୍ରଥମ । ଜୀବନରେ ଏ ସୌଭାଗ୍ୟ ଯଦି ଆଉ ନ ଆସେ, ତେବେ ଏହାହିଁ ଶେଷ ।

ଏମିତି କରି ଉଚ୍ଚ କୋଟିର ଲେଖୁଥିବା ମୁଁ ନୁହେଁ, ଓଡ଼ିଶାରେ ମୁଁ ରହୁନି । ମୋ ଠାରୁ ପ୍ରଫେସର ରଥଙ୍କୁ ପାଠକେ ବେଶୀ ଜାଣନ୍ତି । ତେଣୁ ଏହା ପଢ଼ି ହୁଏତ ବିରକ୍ତ ହେଉଥିବେ । ତାଙ୍କର ଜନ୍ମ ତିଥିରେ ଆଉ ଅତିବିସ୍ମୟକର କିଛି ନଲେଖି ବରଂ ଭଗବାନଙ୍କ ପାଖରେ କୃତଜ୍ଞତା ଜଣାଉଛି । ସେ ବର୍ଣ୍ଣନା ଚାତୁରୀ ସେ ଶୈଳୀ ସେ ଭାବର ଗାମ୍ଭୀର୍ଯ୍ୟ ଅନନ୍ୟ ସାଧାରଣ । ଆମର ଭାଷା ଆମର ମାଟି ଏବଂ ଆମ୍ଭେମାନେ ମଧ୍ୟ ତାଙ୍କ ଲାଗି ଅତିଶୟ ଗର୍ବିତ । ଭଗବାନଙ୍କ ପାଖରେ ତାଙ୍କର ଦୀର୍ଘ ଜୀବନ କାମନା କରୁଛି ଏବଂ ତାଙ୍କ ପରି ଆହୁରି ଅନେକ ଚିରକାଳ ଆମ ଦେଶରେ ଜନ୍ମ ନେଉଥାନ୍ତୁ । ଏହା କାମନା କରୁଛୁ ।

ଏହି ଆଲେଖ୍ୟ କିଏ ଏହିଠି ଶେଷ କରିବା ପୂର୍ବରୁ ବିଧାତାର ମୋ ପାଇଁ ଉଦ୍ଦିଷ୍ଟ ଏକ ମହାନ ଉପହାରକୁ ଉପସ୍ଥାପନା କରୁଛି । ଶ୍ରୀଯୁକ୍ତ ରଥଙ୍କସହ ପରିଣତ ହବା ପାଇଁ ଆମେ ଗୋଟିଏ ବଂଧୁ ମିଳନ କରି ନିକଟସ୍ଥ ଓଡ଼ିଆ ବଂଧୁମାନଙ୍କୁ ଡାକିଥିଲୁ । ମୋର ଜଣେ ସହ ପାଠୀଙ୍କ ପୁଅ ବୋହୂଙ୍କ ସହ କଥା ହେଉହେଉ ପ୍ରଧ୍ୟାପକ ରଥ କହି ପକାଇଲେ ବୁଝିଲୁ ରୁଦ୍ର ବୁଝିଲୁ ଚିନ୍ମୟୀ ମୋର ଚାରିଗୋଟି ଝିଅ, ଏ ବୁଢ଼ୀଟି ହେଉଛି ମୋର ପଞ୍ଚମ ଏମାନଙ୍କୁ ଛାଡ଼ି ଏଠାରୁ ଫେରିବା ପାଇଁ ଭାରି କଷ୍ଟ ଦାୟକ ହବ । ଲାଗି ପଡ଼ି ବୁଢ଼ା ବାବୁ ଏବଂ ବୁଢ଼ୀ - ମୋର ଯେଉଁ ସେବାକରି ଆସିଛନ୍ତି ତାହା ଭୁଲିବାର ନୁହେଁ । ସର୍ବ ସମୟରେ ତାଙ୍କର ଏ ସ୍ୱିକାରୋକ୍ତି ଯାବତ୍ ଜୀବନ ମନେ ରହିଥିବ । ଏହକାଧାରରେ ଗୁଣବନ୍ତ ଏବଂ ଗୁଣଗ୍ରାହୀ ଏ ଅତିଥିଙ୍କ ଉପସ୍ଥିତି ଆମ ପାଇଁ ଅତି ସୌଭାଗ୍ୟର କଥା । ଯେଉଁ ସ୍ଥାନଟିରେ ସେ ଠିଆ ହୋଇ ଏକଥା କହିଥିଲେ ତାହା ସେମିତି ଏକ ତୀର୍ଥସ୍ଥାନ ଆମ ପାଇଁ, କେଡ଼େ ଭାଗ୍ୟବାତୀ ମୁଁ ଆଜି, ଅପେକ୍ଷା କରି ରହିଛି- ପଞ୍ଚସ୍ତରୀତମ ତାଙ୍କର ଜନ୍ମତିଥିରେ ଚରଣ ଧୂଳି ମଥାରେ ଲଗାଇ ବାର ପରମ ମୁହୂର୍ତ୍ତଟିକୁ ମୁଁ ତାଙ୍କର ପଞ୍ଚମ କନ୍ୟା ।

**C/o Dr. S.K. Dash**
Minneapolis
U.S.A

***

# କବିଚନ୍ଦ୍ରଶେଖର ରଥ ଓ 'ତୁମ ପାଇଁ ପକ୍ଷୀଗାନ'

***ପ୍ରତ୍ୟୁଷ କୁମାର ମିଶ୍ର***

ତୁମପାଇଁ ପକ୍ଷୀଗାନ ଶ୍ରୀଚନ୍ଦ୍ରଶେଖର ରଥଙ୍କର ଏକ ଉଚ୍ଚକୋଟୀର କବିତା ସଂକଳନ । ପୂର୍ବରୁ ସେ ରମ୍ୟରଚନା, ପ୍ରବନ୍ଧ, ଉପନ୍ୟାସ ଓ କ୍ଷୁଦ୍ରଗଳ୍ପ ଯାହା ଲେଖିଛନ୍ତି ତାହା ଗଦ୍ୟରେ ଲିଖିତ ହୋଇଥିଲେ ସୁଦ୍ଧା ସେ ସବୁ କବିତ୍ୱପୂର୍ଣ୍ଣ ଗଦ୍ୟ । ସେଥିରେ ତାଙ୍କର କବି ସତ୍ତା ସର୍ବତ୍ର ପ୍ରକଟିତ । ତାଙ୍କ ଗଦ୍ୟକୁ ପଢ଼ିଲେ ଯେ କେହି କବିତାର ସ୍ୱାଦୁ ଅନୁଭବ କରିପାରିବ । ଆଲୋଚ୍ୟ କବିତା ସଂକଳନଟି ତାଙ୍କର ପ୍ରଥମ କବିତା ଗ୍ରନ୍ଥ । ସେଥିପାଇଁ ବଡ଼ ସଂକୋଚରେ ଗ୍ରନ୍ଥଟିର ନାଁ କବିତା ନଦେଇ ତୁମ ପାଇଁ ପକ୍ଷୀଗାନ ଦେବାକୁ ପସନ୍ଦ କରିଛନ୍ତି । ଏ ସଂପର୍କରେ ସେ ଗ୍ରନ୍ଥ ଆରମ୍ଭରେ କହନ୍ତି

''କବିତା ପାଇଁ କୈଫିୟତ୍ ନାହିଁ, କାରଣ
ତାରା ପାଇଁ ଅଛି ନା' ଫୁଲ ପାଇଁ ଅଛି ?
ଝରଣା ପାଇଁ ନା ସମୁଦ୍ର ପାଇଁ ?
ସେହିପରି ଉଦୋଦ୍‌ଘାତ ମଧ୍ୟ ନାହିଁ ।
ସୁଜାଣଙ୍କୁ ଜଣାଇବାର ଧୃଷ୍ଟତା କିମ୍ବା ଅବୁଝାଙ୍କୁ
ବୁଝାଇବାର ବ୍ୟର୍ଥତାରେ କାହିଁକି ମନ ଦେବା ?
ଆଉ ବନ୍ଧୁ, ତୁମ ପାଖରେ ମୋର ସମସ୍ତ
କୃତଜ୍ଞତା, ମୁ ଜାଣେ ଏ ତୁମର ଯୋଗ୍ୟ
ନୁହେଁ । ତଥାପି ଅର୍ପିଦେଉଛି - ବିନୟରେ,
ଶ୍ରଦ୍ଧାରେ, ସନ୍ତର୍ପଣରେ - ତୁମ ପାଇଁ
ପକ୍ଷୀଗାନ : ମୋ ପାଇଁ କବିତା !

ତାଙ୍କୁ ବିଶିଷ୍ଟ କବିମାନେ ମଧ୍ୟ ସମ୍ମାନର ସହ କବି ମର୍ଯ୍ୟାଦା ଦେଇଛନ୍ତି । କବି ରାଜେନ୍ଦ୍ର କିଶୋର ପଣ୍ଡାଙ୍କ ଭାଷାରେ ସେ କବିତାରେ କଲମ ବୁଡ଼ାଇ ଗଦ୍ୟ ଲେଖନ୍ତି । ଏମିତିରେ ବି ତ ସେ ଜଣେ ଗଦ୍ୟ-ସ୍ରଷ୍ଟା ଭାବେ ହିଁ ସୁପରିଚିତ । ତେବେ କବିତା କଥା କେଉଁଠୁ ଆସିଲା । ଆସିବନି ବା କେମିତି— 'କି ଭାଷା, କି ଭାବ, କି ପ୍ରକାଶଭଂଗୀ - ଏଇ ତ ଗଦ୍ୟ ନୁହେଁ ଖାଣ୍ଟି କବିତା । (ଚନ୍ଦ୍ରଶେଖର - ୭୦-ପୃ-୪୯) ତାଙ୍କର ପ୍ରତ୍ୟେକଟି ସୃଷ୍ଟି ପଦ୍ୟାତ୍ମକ ଗଦ୍ୟ । ସତେ ଯେପରି କବିତାର ଛନ୍ଦୋମୟତାରେ ସ୍ପନ୍ଦିତ ଆତ୍ମପ୍ରକାଶର ଆକାଂକ୍ଷା ଗଦ୍ୟ-ରୂପ ନେଇ ପ୍ରତ୍ୟକ୍ଷୀଭୂତ ହୋଇଛି । ଏପରି ଜଣେ ସ୍ରଷ୍ଟା କବି ରୂପେ

ଆବିର୍ଭୂତ ହେବା ଆଦୌ ବିଚିତ୍ର ନୁହେଁ; ବରଂ ସ୍ୱାଭାବିକ । କବିତାର ଭାବ ତାଙ୍କ ସୃଷ୍ଟି-ଚେତନାରେ ଉଜ୍ଜୀବିତ ହୋଇ ରହିଆସିଛି ଚିରକାଳ । ତାଙ୍କ କଥାସାହିତ୍ୟ ଓ ପ୍ରବନ୍ଧଗୁଡ଼ିକରୁ ଏହା ସ୍ପଷ୍ଟ ପ୍ରମାଣିତ ହୁଏ । କେତେବାଟ ବା ଆଉ ତା ସଂଗୋପିତ ହୋଇ ରହିପାରିବ, ଗଦ୍ୟର ଅରସାୟିତ ଭାଷାରେ ଆବଦ୍ଧ ହୋଇ ରହିବ ? ଲୋଡ଼ା ଥିଲା ଖାଲି ଅନୁକୂଳ ପରିବେଶ ଓ ପରିସ୍ଥିତିର ଆଗମନର; ଭାବର କାବ୍ୟମୟ ପରିପ୍ରକାଶ ପାଇଁ ସ୍ରଷ୍ଟାର ଉଦ୍ୟମର, ଯଦ୍ୱାରା କବିତାର ଉନ୍ମେଷ-ବୀଜ ରୋପିତ ହେବ; ପ୍ରବହମାନ ଧାରାର ଧରାବତରଣ ହେବ । ସ୍ରଷ୍ଟା-କଳ୍ପସୃଜନ ଜୀବନର ଉତ୍ତରଣ କାଳରେ ଗଦ୍ୟଶିଳ୍ପୀ ଚନ୍ଦ୍ରଶେଖର ରଥଙ୍କର କବିତାର ରାଜ୍ୟକୁ ହୋଇଛି ଏହିପରି ପ୍ରବେଶ । ଆପାତତଃ ପ୍ରତ୍ୟେକ ଲେଖକର ଅନ୍ତର୍ଚେତନାରେ ଥାଏ କବିପ୍ରାଣ ଆତ୍ମାଟିଏ । କବିପ୍ରାଣ ଲେଖକର ସରଳ ଭାବ ଓ ଆବେଦନ ହିଁ ପାଠକକୁ କବିତ୍ୱ ପ୍ରତି ଆକୃଷ୍ଟ କରିଥାଏ । ଚନ୍ଦ୍ରଶେଖର ରଥଙ୍କ ଗଦ୍ୟସୃଷ୍ଟିରେ ମଧ୍ୟ କବିତାର ସ୍ପନ୍ଦନ ଅନୁଭବ୍ୟ । ସାରସ୍ୱତ ସାଧନା ସେ ଗଦ୍ୟରୁ ଆରମ୍ଭ କରିଥିଲେ ହେଁ ପରିଣତ ବୟସରେ ଆପଣାର ବକ୍ତବ୍ୟକୁ କବିତା ମାଧ୍ୟମରେ ଉପସ୍ଥାପନା କରିବାକୁ ଚାହିଁଛନ୍ତି । ଅବଶ୍ୟ ଗଦ୍ୟଧାରାରୁ ପଦ୍ୟମୟତାକୁ ଏ ଆଗମନ ଆକସ୍ମିକ ନୁହେଁ । ପୂର୍ବରୁ ସେ ଓଡ଼ିଆ ଓ ଇଂରାଜିରେ କବିତା ଲେଖୁଥିଲେ ମାତ୍ର ସେଗୁଡ଼ିକ ଅପ୍ରକାଶିତ ଥିଲା । କବିତା ଲେଖିବାର ସେହି ପୂର୍ବ ଉଦ୍ୟମର ସଫଳ ପରିଣତି ରୂପେ ସୃଷ୍ଟ 'ତୁମପାଇଁ ପକ୍ଷୀଗାନ' ।

ଗଦ୍ୟ-ସ୍ରଷ୍ଟା ଭାବେ ସୁବିପୁଳ ସଫଳତା ଲାଭ କରିବା ପରେ ସାହିତ୍ୟିକ ଚନ୍ଦ୍ରଶେଖର ରଥ କବିତା ଲେଖିବାରେ ମନୋନିବେଶ କରିବାର ମୁଖ୍ୟ କାରଣ ହେଉଛି, ସ୍ରଷ୍ଟାମାନସର କବିତ୍ୱମୟ ଆତ୍ମାଭିବ୍ୟକ୍ତି । ତାଙ୍କୁ ଲେଖିବାରୁ ଆନନ୍ଦ ମିଳେ, 'ଆତ୍ମପ୍ରକାଶର ଆନନ୍ଦ, ବୀଜରୁ ଅଙ୍କୁରର ଉଦ୍‌ଗମ ପରି' । ଗଛରେ ଫୁଲର ପ୍ରସ୍ଫୁଟନ ପରି, ଫୁଲରେ ସୌରଭର ସଂଗ୍ରହ ପରି ସାଧାରଣତଃ ପ୍ରତ୍ୟେକ ଲେଖକ ନିଜ ସୃଜନ କଳାର ପ୍ରକାଶ ଓ ପ୍ରଚାର କରିବାକୁ ଚାହିଁଥାଏ । ନିଜ ଲେଖାଟି ପାଠକ ପାଖରେ ଆଦୃତ ହେଉ ବୋଲି କାମନା କରିଥାଏ । ମାତ୍ର ଶ୍ରୀରଥଙ୍କ ପାଇଁ 'ଲେଖିବା ଲେଖକର ସୂର୍ଯ୍ୟ ଧର୍ମ । ସେ ଆଲୋକ ଦିଏ କି ଉତ୍ତାପ ଦିଏ ଜାଣେନା; ତା'ର ଫଳାଭିସାନ୍ଧି ନ ଥାଏ । ତା' ପାଇଁ ଗୋଟିଏ ମାତ୍ର ସତ୍ୟ; ନିଷ୍ଠାର ସହିତ ଜଳିଯିବା । ତା'ପରେ ନିରାଲୋକ ମୌନତା, ସେଇଟା ସତ୍ୟ ନୁହେଁ କି ମିଥ୍ୟା ନୁହେଁ ।' ଚନ୍ଦ୍ରଶେଖର - ୭୦ ପୃ-୧୫୮) ପାଠକ ପାଖରେ ଲେଖାଟି ଆଦୃତ ହେବ କି ନହେବ, ଶ୍ରୀରଥଙ୍କ ପାଇଁ ତା ଯେତିକି ଗୁରୁତ୍ୱପୂର୍ଣ୍ଣ ନୁହେଁ, ପରିଦୃଶ୍ୟମାନ ଜାଗତିକ ଘଟଣାଂଶ ତାଙ୍କ ଚେତନାରେ ଯେଉଁ ପ୍ରତିକ୍ରିୟା, ଉଦ୍‌ବେଳନ ସୃଷ୍ଟିକରେ, ଅନୁଭୂତି ଓ ଅନୁଭବରୁ ଯେଉଁ ଆବେଦନ ଜନ୍ମନିଏ, ସେଇଟା ତାଙ୍କ ପକ୍ଷେ

ସେତିକି ମହତ୍ତ୍ୱପୂର୍ଣ୍ଣ । ଲେଖାରେ ଯେଉଁ ଉପାଦାନଟି ଅଧିକ ଥାଏ, ସେ ସେହି ପ୍ରକାର ଲେଖା ଲେଖନ୍ତି । (ଚନ୍ଦ୍ରଶେଖର ୭୦-ପୃ-୧୫୬)ଅତଏବ ସୃଜନ-ଜୀବନର ଆଦିକାଳରୁ କବିତାର ପ୍ରାଣଧର୍ମିତା ତାଙ୍କ ଠାରେ ଆରୋପିତ ହୋଇଥିଲେ ସୁଦ୍ଧା ଉପନ୍ୟାସ, ଗଳ୍ପ ଆଦିର ଉପାଦାନର ଆଧିକ୍ୟ ଯୋଗୁଁ ସେଗୁଡ଼ିକ ସେ ଲେଖିଚାଲିଛନ୍ତି । ମାତ୍ର ଉତ୍ତର କାଳରେ ସେ କବିତାର ଉପାଦାନ ବୋଧହୁଏ ବେଶୀ ଉପଲବ୍‌ଧି କରିଛନ୍ତି । କବିତାରେ ସ୍ୱପ୍ରକାଶ ସକାଶେ ଉଦ୍ୟମ କରିଛନ୍ତି । ପ୍ରକାଶ ଥାଉ ଯେ, କବି ଚନ୍ଦ୍ରଶେଖରଙ୍କ ଏହି ପ୍ରଥମ କବିତା ସଂକଳନ ଏକ କ୍ରମବିବର୍ତ୍ତିତ ପରିପକ୍ୱ ସ୍ରଷ୍ଟା-ମାନସର ଉତ୍ତରିତ ପ୍ରତିଭାର ପ୍ରୟାସ ଅଙ୍ଗ । ପୂର୍ବରୁ ଜଣେ ସାହିତ୍ୟିକ ଭାବେ ସେ ବହୁ ଅଭିଜ୍ଞତା ନେଇ ଗତିକରି ସାରିଛନ୍ତି । ତେଣୁ ପ୍ରାଥମିକ ସ୍ତରରେ କବିତା ଲେଖୁଥିବା କବି ପରି ତାଙ୍କ ଲେଖାରେ ରୋମାଣ୍ଟିକ ଭାବଧର୍ମୀ ପ୍ରେମକବିତା କିମ୍ବା ସମାନ ସମସ୍ୟାର ସରଳ ଉପସ୍ଥାପନା ପରିଲକ୍ଷିତ ନ ହୋଇପାରେ । କବିତା ଏଠି କବିତର ସ୍ୱତଃସ୍ଫୂର୍ତ୍ତ ଅଭିବ୍ୟକ୍ତି ପରିବର୍ତ୍ତେ ପ୍ରଯତ୍ନସିଦ୍ଧ ସୃଷ୍ଟି ରୂପେ ପ୍ରତିଭାତ ହେବା ଅସମ୍ଭବ ନୁହେଁ । କୌଣସି ନିର୍ଦ୍ଦିଷ୍ଟ ଆଭିମୁଖ୍ୟ ନେଇ ଅଥବା ସାମ୍ପ୍ରତିକ କାଳର କୌଣସି ସାହିତ୍ୟିକ ମତବାଦ ଯେପରି ଉତ୍ତର ଆଧୁନିକତା (Post modernism)କୁ ଦୃଷ୍ଟିରେ ରଖି ସେ କବିତା ଲେଖିନାହାନ୍ତି । ଶ୍ରୀ ରଥଙ୍କ ଦୃଷ୍ଟିରେ ଅବଶ୍ୟ କବିତା ପାଇଁ କୌଣସି କୈଫିୟତ ନାହିଁ ତଥାପି, କବି ମାତ୍ରେ ପ୍ରେମାବେଦନ ଓ ପ୍ରକୃତିର ରୂପସୌନ୍ଦର୍ଯ୍ୟ ପ୍ରତି ଆକୃଷ୍ଟ ରହିବା ସ୍ୱାଭାବିକ । କବିତାର ଆତ୍ମପ୍ରକାଶର ଅଭିଳାଷ ଉତ୍ତରରଣ କାଳରେ ମଧ୍ୟ ପାର୍ଥିବ ପ୍ରେମାନୁଭବରୁ ଅପାର୍ଥିବ ପ୍ରେମଚେତନାକୁ ମୃତ୍ୟୁସଚେତନତା ତଥା ଆଧ୍ୟାତ୍ମ ଅନ୍ୱେଷାକୁ କ୍ରମଶଃ ଗତିଶୀଳ ହୋଇଥାଏ । ସେ ମଧ୍ୟ କବିତାରେ ସମାଜ ସମସ୍ୟା ଜର୍ଜରିତ ବ୍ୟକ୍ତିର ଚିତ୍ର ଦେଇନାହାନ୍ତି । ବ୍ୟକ୍ତିର ମାନସିକ, ଆବେଗିକ, ସମସ୍ୟା, ଗୋଟିଏ ଗୋଟିଏ ମୁହୂର୍ତ୍ତର ପ୍ରତିକ୍ରିୟା, ଦାର୍ଶନିକ, ଦୃଷ୍ଟିଭଙ୍ଗୀ ତାଙ୍କ କବିତାରେ ପ୍ରାଣବନ୍ତ ରୂପଲାଭ କରିଛି । ଆଲୋଚ୍ୟ କବିତା ସଂକଳନରୁ ଏହା ଲକ୍ଷ୍ୟ କରାଯାଇପାରେ ।

ସର୍ବମୋଟ ୮୪ଟି କବିତାକୁ ନେଇ 'ତୁମ ପାଇଁ ପକ୍ଷୀଗାନ'ର କଳେବର ପରିପ୍ଳୁତ ସଂକଳନଟି ପର୍ଯ୍ୟାୟରେ ବିଭକ୍ତ ହୋଇଛି ଯଥା - ଆତ୍ମାହୁତି, ଅର୍ଦ୍ଧନାରୀଶ୍ୱର, ଈଶ୍ୱରଠୁ ବଡ଼ ଓ ନୀଳ ସମୁଦ୍ର । ଗ୍ରନ୍ଥଟିର ନାମକରଣ ମଧ୍ୟ ବେଶ ତାତ୍ପର୍ଯ୍ୟପୂର୍ଣ୍ଣ । ପକ୍ଷୀର କୂଜନ ପକ୍ଷୀପାଇଁ ସଂଗୀତ ମାତ୍ର ଶ୍ରୋତା ପାଇଁ ଏକ ସ୍ୱର । ସେପରି କବିଙ୍କ ସକାଶେ ଏହା କବିତା, ପାଠକ ପାଇଁ ପକ୍ଷୀଗାନ । ପ୍ରାୟ ସମସ୍ତ କବିତାରେ କବିଙ୍କର ଆତ୍ମମୁଖୀନତା ଦେଖାଯାଏ । ଏହି ଏଠି ସଚେତନ ନିଜ ସୃଷ୍ଟି ସମ୍ପର୍କରେ । ତେଣୁ ଆତ୍ମାହୁତିର କବିତାଗୁଡ଼ିକ ପରବର୍ତ୍ତୀ ପର୍ଯ୍ୟାୟର କବିତାଗୁଡ଼ିକର ମୁଖବନ୍ଧ ସଦୃଶ ପ୍ରତୀତ ହେଉଅଛି ।

ସତରେ ବି, କବିର ବେଦନା କିଏ ବୁଝିପାରିଛି ? ଜୀବନର ସମସ୍ତ ଆୟୁ, ପ୍ରାଣପବନ ବ୍ୟୟରେ, ନିଜ ଲହୁଲୁହରେ ରଂଜିତ କରି କବି ଯେଉଁ କବିତା କାଗଜ ପୃଷ୍ଠାରେ ଲେଖିଦିଏ, ତାକୁ କ'ଣ ସବୁ ପାଠକ ବୁଝିପାରନ୍ତି ? କବିର ବେଦନା କବିଟିଏ ହିଁ ଯଥାର୍ଥରେ ବୁଝିପାରେ । ଅତଏବ ସହୃଦୟ କବିପ୍ରାଣ-ସମଧର୍ମୀ ପାଠକଟିଏ ହିଁ କବିତାର ଭାବଧର୍ମକୁ ଉପଲବ୍ଧି କରିପାରିବ । କବିତାରେ କବି ନିଜର ଆତ୍ମାହୁତି ଦିଏ । ସେ ଅତିକ୍ରମ କରିଯାଏ ସମସ୍ତ ଜୀବନକୁ ଯୌବନକୁ, ପ୍ରେମକୁ, ବ୍ୟର୍ଥତାକୁ, ଆୟକୁ, ପରମାୟୁକୁ, କବିତାକୁ । ଦିଗରୁ ଦିଗ୍‌ବଳୟକୁ ମାଟିରୁ ଆକାଶକୁ, ବାରମ୍ବାର ଏବଂ ପୁଣି ଫେରିଆସେ ସେହି ପ୍ରାରମ୍ଭକୁ । କବିତାର କବି ପ୍ରତି ମୃତ୍ୟୁପରେ ଜୀବନକୁ, ଯୌବନକୁ ପ୍ରାପ୍ତ ହୁଏ । କବିର ଏହି ଶ୍ରମକୁ ସହୃଦୟ ଗୁଣଗ୍ରାହୀ ପାଠକ ହିଁ ହୃଦୟଙ୍ଗମ କରିପାରିବ । ''ଆତ୍ମାହୁତି''ରେ କବି କବିତା-ଅବଗାହନ ପୂର୍ବରୁ ପାଠକକୁ ସତର୍କ କରିଦେଇଛନ୍ତି । ଆଗରୁ ଆମେ କହିସାରିଛୁ ଯେ, ଆଲୋଚ୍ୟ କବିତାଗୁଡ଼ିକ କବିଙ୍କ ସ୍ୱତଃସ୍ଫୁର୍ତ୍ତ ପ୍ରାଣାବେଦନ ବଦଳରେ ଯତ୍ନ ପ୍ରଚେଷ୍ଟା ହେବାର ସମ୍ଭାବନା ରହିବି । ଯାହାକୁ କବିଙ୍କ ଆତ୍ମାହୁତି କବିତାଟି ଆହୁରି ସ୍ପଷ୍ଟ କରିଦେଉଛି । 'ନିଷ୍ଫଳ କବିତା'ଟି ମଧ୍ୟ କବିଙ୍କ କବିତା ସୃଜନର ପ୍ରସ୍ୱେଦନା ଓ ଅନ୍ତର୍ବେଦନାର କଥା ଶୁଣାଉଛି । କବିତାର ବିଶାଳ, ଗଭୀର, ବିସ୍ମୟ ସାଗରରେ ସେ ପ୍ରବେଶତ କରିଯାଇଛନ୍ତି, ମାତ୍ର ସବୁଠାରେ କବିତାର ଭାବକୁ ପାଇଲା ପାଇଲା ପରି ବୋଧ କରିଛନ୍ତି ସିନା ଭେଟିଛନ୍ତି, ବିଡ଼ମ୍ବିତ ବିଫଳତାକୁ । ତଥାପି ତାଙ୍କ ସକାଶେ କଳା-ସୃଷ୍ଟି ଏକ ସୂର୍ଯ୍ୟଧର୍ମ, ତେଣୁ ଆତ୍ମପ୍ରକାଶ କରିବାକୁ ସେ ବାଧ୍ୟ । କବିତା କେବଳ ମାଧ୍ୟମ ମାତ୍ର । କବିତା-ସାଗରରୁ କବିର ଭାଷା-ଜାଲରେ ଗୋଟିଏ ଦୁଇଟି ଉପାଦାନ ଆସିପାରନ୍ତି; ସମଗ୍ର ସାଗର ନୁହେଁ । ସେଥିପାଇଁ କବିତା ଲେଖିବାର ନିଜ ଉଦ୍ୟମକୁ ନିଷ୍ଫଳ ପ୍ରୟାସ ବୋଲି ସେ ଅନୁମାନ କରନ୍ତି । କବିଙ୍କ ଭାଷାରେ—

''ସେଇ ମୋ ସମୁଦ୍ର ଧରିବା କଥା
ସେଇ ମୋ କବିତା
ଆ' ଡାକ ଶୁଣି ନ ଥିଲେ
ମୁଁ କାହିଁକି ମାତି ଥାନ୍ତି
ଏ ନିଷ୍ଫଳ ପ୍ରୟାସରେ ?—
ନ ମାତି ବା କ'ଣ କରିଥାନ୍ତି ?
(ନିଷ୍ଫଳ କବିତା-ପୃ-୮)

ଆତ୍ମପ୍ରକାଶର ସ୍ୱଭାବ ଧର୍ମ ଭାବେ କବିଙ୍କ ପାଇଁ କବିତା ଲେଖିବା ଏକ ଅନିବାର୍ଯ୍ୟ ଆବଶ୍ୟକତା । ଲେଖିବାର ସେଇ ପ୍ରଚେଷ୍ଟାରୁ ସଂକଳନର ପରବର୍ତ୍ତୀ କବିତାଗୁଡ଼ିକର

ଅବତାରଣା । 'ଅର୍ଧନାରୀଶ୍ୱର'ରେ କବିତା ସୃଷ୍ଟି ପ୍ରେରଣା କବି ନିଜ ଠାରେ ଅନୁଭବ କରିଛନ୍ତି । କବିତାର ଆତ୍ମସତ୍ତା ସହ ନିଜ ଆତ୍ମସତ୍ତାର ମିଳନକୁ ସେ ହୃଦୟଙ୍ଗମ କରିଛନ୍ତି । କବିତା ଲେଖିବାର ଯେଉଁ ପ୍ରଣୋଦନା ସେ ହଠାତ୍ ଲାଭ କରିଛନ୍ତି । ତନ୍ମଧ୍ୟରେ କବି-ଆତ୍ମା ବର୍ତ୍ତମାନ ନିମଗ୍ନ । କବିଠାରେ ଏହା ଏକ ଅପୂର୍ବ ଅନୁଭବ, ଉତ୍ତରଣ ସମୟରେ ଆବିର୍ଭୂତ ଅଦିନ ବର୍ଷା ସଦୃଶ ଏବଂ ଯେବେ କବିତା-ସୃଷ୍ଟିର ବ୍ୟାକୁଳତା ବଢ଼େ, କବିତାର ଧାରା ବୋହିଯାଏ କବି କଲମରୁ, ଉଜାଣି ଯମୁନାର ରୂପ ନେଇ । ସମ୍ବୋଧନାତ୍ମକ ଶୈଳୀରେ ଅର୍ଧନାରୀଶ୍ୱର ବିଭାଗର କବିତାଗୁଡ଼ିକ ସୃଷ୍ଟ । କୌଣସି ନିର୍ଦ୍ଦିଷ୍ଟ ଆବେଗ ପରିବର୍ତ୍ତେ ବିଭିନ୍ନ ସମୟରେ କବି-ଚେତନାରେ ଯେଉଁ ଆବେଗ ଓ ଭାବ-ସ୍ପନ୍ଦନ ଜନ୍ମ ନେଇଛି, ତା'ର ପ୍ରମୂର୍ତ୍ତ ରୂପ କବିତାରେ ଲକ୍ଷଣୀୟ । ଅର୍ଧନାରୀଶ୍ୱରର କେତୋଟି କବିତା ଅବଶ୍ୟ ରୋମାଣ୍ଟିକ ଧର୍ମୀ । ମାତ୍ର ସେଥିରେ ପ୍ରେମର ଉଚ୍ଛଳ ପ୍ଳାବନ ନାହିଁ କିମ୍ବା କାବ୍ୟପୁରୁଷର ରୋମାଣ୍ଟିକ ପ୍ରେମୋଚ୍ଛ୍ୱାସର ଅଭିବ୍ୟକ୍ତି ନାହିଁ । ଯଦି ବା ଅଛି, ତେବେ କ୍ୱଚିତ୍ । କାବ୍ୟପୁରୁଷର ପ୍ରଣୟାନୁଭବ ଭିତରେ କବିର ଦିବ୍ୟପ୍ରେମଚେତନା ସଂକେତିତ ହେଉଛି । କବିଙ୍କ ପ୍ରେମାନୁଶୀଳନ କବିତାରେ ପରିଲକ୍ଷିତ ହୁଏ ବିଭିନ୍ନ ବୌଦ୍ଧିକତାରେ, ବିଭିନ୍ନ ମୁଦ୍ରାରେ, ବିଭିନ୍ନ ସ୍ତରରେ । ମାତ୍ର ବହୁକବିତାରେ ପ୍ରକୃତି ପ୍ରୀତି, ମୃତ୍ୟୁଚେତନା ତଥା ପୌରାଣିକ ବିଶ୍ୱାସ ସ୍ପଷ୍ଟ ବାରିହୋଇପଡ଼େ । ଗୋଟିଏ କବିତାର ସୃଷ୍ଟି । ଏଠି କବିର ଦୃଷ୍ଟିଭଙ୍ଗୀରେ ଯେତିକି ବ୍ୟାପ୍ତି, ସେତିକି ଦ୍ୟୁତି ସମନ୍ୱିତ । କେଉଁଠି କାବ୍ୟପୁରୁଷ ପ୍ରେୟସୀ ସହ ବାଲିଘର ଗଢ଼ିବାର ଓ ଭାଙ୍ଗିବାର କଳ୍ପନାରେ ବିଭୋର, ତ କେଉଁଠି ପ୍ରେୟସୀ ପାଖରେ ନିଜର ଅସାମର୍ଥ୍ୟ ଭାବକୁ ସ୍ୱୀକାର କରେ । ଅସମର୍ଥାରେ କାବ୍ୟପୁରୁଷ ପ୍ରେୟସୀର ଆଗମନ ଓ ସମର୍ପଣରେ ନିଜକୁ କିଂକର୍ତ୍ତବ୍ୟବିମୂଢ଼ ବୋଧ କରିଛି । ନିଜ ଅସହାୟତାକୁ ସାମ୍ନା କରିଛି । ସମସ୍ତଙ୍କ ଅଜ୍ଞାତରେ (ଗୋରୁମାନେ ଘୁମେଇଲାବେଳେ / ଚଢ଼େଇଟି ଚୁପ୍‌ଚାପ୍ ଧକେଇଲା ବେଳେ) କାବ୍ୟ-ପ୍ରେୟସୀର ଆସିବାରେ କାବ୍ୟପୁରୁଷ ନିଜ ଅଯୋଗ୍ୟତାରେ, ଅଭାବରେ, ଦୌନ୍ୟରେ ସଢ଼ିଯାଇଛି । କିପରି ଚର୍ଚ୍ଚା କରିବ, ଭାବିପାରେନି । ଅବଶ୍ୟ କାବ୍ୟ ପୁରୁଷ ପାଇଁ ସେ ନ ଆସିବାର ବଡ଼ପଣ ନେଇ ଅମର୍ଥା ।

''ତୁମେ ଯଦି ଛୁଇଁ ଦିଅ, ମୂର୍ଚ୍ଛାଯିବି
ଅସ୍ତ ହୋଇଯିବି ତୁମ ପାଇଁ ଆହା ଆହା କହି ।
ଏ ଆମିଷ ଦେହ ମୋର କମ୍ପୁଥିବ,
କମ୍ପୁଥିବ ଚିରକାଳ ବିସ୍ମୟରେ,
ବିମୂଢ଼ ଅଯୋଗ୍ୟତାରେ,

ଆଷାଢ଼ର ନିରନ୍ଧ୍ର ବର୍ଷାରେ
ଅତିସିକ୍ତ କାତର ଗୃତକ ପରି ।
(ଅସମର୍ଥା ପୃଷ୍ଠ-୨୨)

କବି ଚନ୍ଦ୍ରଶେଖର ରଥଙ୍କ କବିତାଗୁଡ଼ିକରେ ଅନ୍ୱେଷୀ ଆତ୍ମାର ଅନୁଶୀଳନ କ୍ରମବିବର୍ତ୍ତନ ପ୍ରକ୍ରିୟାରେ ରୋମାଣ୍ଟିକ ପ୍ରେମାନୁଭବରୁ ପ୍ରକୃତି ପ୍ରାଣତାର ନୈସର୍ଗିକ ଆବେଦନକୁ ଗତିକରିଛି । କବିଙ୍କର ପ୍ରକୃତି ସହ ତଲ୍ଲୀନ ଭାବ ବିହ୍ୱଳତାର ଚିତ୍ର ଦେଖିହୁଏ 'ବାର୍ଦ୍ଧୁ ଆସିଛନ୍ତି' । କବିତାରୁ । ଏଠାରେ କାବ୍ୟ ପୁରୁଷ ପ୍ରଣୟିନୀ ସହ, ବର୍ଷାକାଳୀନ ପ୍ରକୃତିର ଅପୂର୍ବ ରୂପବିଭା ସହ ଅନ୍ତରଂଗ ଏକାତ୍ମ ଭାବ ପୋଷଣ କରିଥିବା ଦେଖାଯାଏ । ପ୍ରେମିକାର ଅଭିମାନ ସ ବର୍ଷା ମଧ୍ୟରେ ଅଭିନ୍ନତା ଓ ଅନୁମେୟ । କାବ୍ୟପୁରୁଷ ସକାଶେ ତାର ଆଗମନ ଓ ଅଧିକାର ପରମ ସୌଭାଗ୍ୟ । ବର୍ଷାଋତୁ ପରି ସେ ଚୁପ୍‌ଚାପ୍ କିନ୍ତୁ ମେଘ ପରି ଆଖିପତା ଭିତରେ ଥାଏ । ବ୍ୟଥାତୁର ଗୃହାଣି । ସତେ ଯେପରି ଛୁଇଁଦେଲେ ବର୍ଷିଯିବ । କିଏ ? ବର୍ଷା ନ କାବ୍ୟ ପୁରୁଷର ବାର୍ଦ୍ଧୁ ? ବନ୍ଧୁ

"ବହିଯିବ କାଳେ ବୋଲି
ମୋର ଅକାତ ଭୟ
x x x x
ଫୁଁଫୁଁକାର କରିବ ବିଜୁଳି
ବଜ୍ରନାଦ ହେବ, ଶୂନ୍ୟ ମଣ୍ଡଳରେ
ହୁଏତ ମୁଁ ଜଳିଯିବି
ଆସ ତେବେ ବନ୍ଧୁ
ମନ ହେଲେ ଗୁଣଗୁଣ ହେବା
ମେଘ ମହ୍ଲାରରେ
x x x x
ବର୍ଷିଯିବା, ବୋହିଯିବା ।
(ବନ୍ଧୁ ଆସିଛନ୍ତି -ପୃ-୩୦-୩୧)

'ଶୋଷ' କବିତାରେ ମଧ୍ୟ କାବ୍ୟ ପୁରୁଷର ଅନ୍ତର୍ବାଣୀ ଓ ତୃଷାର ଚିତ୍ରଣ ଦେଖାଯାଏ । ଏଠାରେ କିନ୍ତୁ ପ୍ରଣୟାବେଦନ ଓ ପ୍ରତିକ୍ରିୟା ସ୍ପଷ୍ଟ । 'ଦାତା'ରେ ସେ ନିଜକୁ ଦାତା ଭାବେ ବିଗ୍ରହ କରିଛନ୍ତି । ଏପରିବି ସମୟ ଆସେ ଯେବେ ଜଣେ ସବୁକିଛି ଦେଇଦେଇପାରେ, ସମର୍ପଣ କରିଦେଇପାରେ । ଅଥଚ ସେତେବେଳକୁ ତାକୁ ଗ୍ରହଣ କରିବାକୁ କେହି ସମର୍ଥ ନ ଥିବେ । କବି ମଧ୍ୟ ଦେଇପାରନ୍ତି ଆକାଶେ ଜହ୍ନ, ବର୍ତ୍ତୁଳ ପୃଥିବୀ, ମେରୁରୁ ମେରୁ ଲମ୍ବିଥିବା ମଲ୍ଲିକାମାଳ । ଏତେ ସାମାନ୍ୟ କଥା ସେ ଦେଇପାରନ୍ତି

ସର୍ବଶେଷ ଦାନ, ଯା'ପରେ ଆଉ ନିଜର ବୋଲି କିଛି ରହିବ ନାହିଁ । ମାତ୍ର କିଏ ହେବ ଗ୍ରହୀତା ? ଯେ ଗ୍ରହଣ କରିବା କଥା,ସିଏ ବର୍ତ୍ତମାନ ସତ୍ତାରହିତ ।

''ଅଥଚ ଏ ଚୂଡ଼ାନ୍ତ ନିରବଶେଷ
ଦାନ ଦେବାବେଳେ ତୁମେ
ସ୍ଥିର ହୋଇଗଲ !
x x x x
ଆଉ ସତ୍ତାହୀନ, ଯାହା ହୋଇଥାନ୍ତି ମୁହିଁ
ଦାନ ଦେଲାପରେ ?''
(ଦାତା-ପୃ-୩୫)

ନିଜର ସମସ୍ତ ତ୍ୟାଗ ଭିତରେ ଅନ୍ୟପ୍ରତି ନିଃସ୍ୱାର୍ଥ ପ୍ରେମଭାବ ସଂଜାତ ହୁଏ ଓ ପ୍ରତିଦାନରେ ମିଳେ ଦିବ୍ୟ ପ୍ରେମର ବନ୍ଦନା । ଆବାହନ କବିତାରେ ସୂର୍ଯ୍ୟୋଦୟର ଆଗମନକୁ କବି ସ୍ୱାଗତ କରୁଛନ୍ତି । ସଂସାରର ତମସା ବିଦୂରିତ କରି, ଆଲୋକର ବର୍ତ୍ତିକା ପ୍ରଜ୍ୱଳିତ କରି, ସୂର୍ଯ୍ୟ ମାନବ କଲ୍ୟାଣ କରେ । ମଣିଷଠାରେ ମଧ୍ୟ ଏହି ସୂର୍ଯ୍ୟ ଧର୍ମ ଦେଖାଯିବା ଦରକାର । କବିଙ୍କ ପ୍ରକୃତି ସୌନ୍ଦର୍ଯ୍ୟରେ ତଲ୍ଲୀନ ଭାବର କବିତ୍ୱପୂର୍ଣ୍ଣ ପ୍ରକାଶ ଏଠାରେ ହୃଦ୍‌ଗ୍ରାହ୍ୟ ହୋଇଛି । 'ମୁଗ୍ଧ'ରେ କିନ୍ତୁ କାବ୍ୟପୁରୁଷର ପ୍ରଣୟ ଆବେଦନର ସ୍ୱରୂପ ଦେଖିହୁଏ । ସେ ଗମନକରିବାକୁ ଗୃହେଁ, ଭୂ ରୁ ଭୂମାକୁ, ସମୟରୁ ସମାୟନ୍ତରକୁ, କାଳରୁ କାଳାନ୍ତରକୁ ।

ଚନ୍ଦ୍ରଶେଖର ରଥଙ୍କ କବି-ଅନ୍ତର୍ଦୃଷ୍ଟି 'ଅର୍ଦ୍ଧନାରୀଶ୍ୱର'ରେ ପ୍ରେମାନୁଭବ, ପ୍ରକୃତି ପ୍ରାଣତା ଦେଇ ଗତି କରୁଥିଲେ ମଧ୍ୟ କ୍ରମବିବର୍ତ୍ତିତ ଚେତନା କ୍ରମଶଃ ମୃତ୍ୟୁ ଚିନ୍ତା, ଆଧ୍ୟାତ୍ମ ଆସ୍ପୃହା ତଥା ପୌରାଣିକ ବିଶ୍ୱାସକୁ ଗତି କରୁଥିବା କବିତାଗୁଡ଼ିକରୁ ଅନୁମିତ ହୁଏ । ସେ ଏକ ଦୀର୍ଘପଥ, ତା ପୁଣି ବୁଲାଣି ବାଟ । ଫେରିବାର ସମ୍ଭାବନା ରହିପାରେ କିନ୍ତୁ ପ୍ରତ୍ୟାବର୍ତ୍ତନ ହୁଏନା ('ମୋର ଦୀର୍ଘପଥ') ଅତଏବ କବିର ଅନୁଗମନ ହୁଏ ଆଧ୍ୟାତ୍ମ ଅନ୍ୱେଷା ଦିଗରେ । ପ୍ରାୟତଃ ପ୍ରତ୍ୟେକ କବିର କବିତାରେ ଥାଏ ପ୍ରେମ ଓ ମୃତ୍ୟୁର କାହାଣୀ । ଏହି ପ୍ରେମ ଚେତନା ଜୀବନର ବ୍ୟର୍ଥତା ଭିତରେ କାବ୍ୟପୁରୁଷକୁ କରେ ମୃତ୍ୟୁ ସଚେତନ । ବ୍ୟକ୍ତି ସତ୍ତାଟି ଯେବେ ଜୀବନର ସ୍ୱାଭାବିକ ଧାରାରୁ ଭିନ୍ନ ହୋଇଆସେ, ଉଚ୍ଚାରଣ ପର୍ଯ୍ୟାୟରେ ସେହି ସତ୍ତାଠାରେ ମୃତ୍ୟୁଚିନ୍ତାର ସ୍ୱାଭାବିକ ହୋଇଯାଏ । ତତ୍ ସହିତ ଆଧ୍ୟାତ୍ମ ଅନ୍ୱେଷା ମଧ୍ୟ ଜନ୍ମ ନିଏ । ଚନ୍ଦ୍ରଶେଖର ରଥଙ୍କ କବିତାରେ ପ୍ରେମ ଚିତ୍ରଣ ପରିମିତ ରୂପ ନେଇ ଆତ୍ମପ୍ରକାଶ କଲାପରି ମୃତ୍ୟୁ ଚେତନାର ମଧ୍ୟ ସଂଯତ ବିନ୍ୟାସ ପରିଲକ୍ଷ୍ୟ । ତୁମପାଇଁ ପକ୍ଷୀଗାନର 'ଈଶ୍ୱରଠୁ ବଡ଼' ଓ 'ନୀଳସମୁଦ୍ର' ବିଭାଗର କବିତାଗୁଡ଼ିକରୁ ଏହା ଅବଲୋକନୀୟ ।

ଜୀବନର ସବୁଠୁ ବଡ଼ ସତ୍ୟ ହେଉଛି ମୃତ୍ୟୁ । କାବ୍ୟ ପୁରୁଷ ସକାଶେ ମୃତ୍ୟୁ ଈଶ୍ୱରଠୁ ବଡ଼, ଯେହେତୁ ଏହା ଚିରନ୍ତନ ସତ୍ୟ । ଜନ୍ମ ହେଲେ ମୃତ୍ୟୁ । ଯେବେ ମୃତ୍ୟୁ ଅନିବାର୍ଯ୍ୟ ତା'ହେଲେ କାହିଁକି ତାକୁ ନିର୍ମମ ସତ୍ୟ ବୋଲି ଗ୍ରହଣ ନକରାଯିବ ? ତେଣୁ କୁରଙ୍ଗ ଶିଶୁପକ୍ଷେ ଅଗ୍ନିର ଆଶ୍ଳେଷକୁ ଗ୍ରହିଯିବା କାବ୍ୟପୁରୁଷ ଦୃଷ୍ଟିରେ ଯଥାର୍ଥ ('ଈଶ୍ୱରଠୁ ବଡ଼') କେବେ କେଉଁ ଭଗବାନ ମୃତ୍ୟୁକୁ ପରାହତ କରି ମଣିଷକୁ ଅମୃତ ଦେଇ ନାହିଁ । ଏଠାରେ କବିଙ୍କ ମୃତ୍ୟୁଚେତନାର ସ୍ୱର ସ୍ପଷ୍ଟ ଅନୁମେୟ ।

ମୃତ୍ୟୁସଚେତନ କବିର ସାଂସାରିକ ମୋହମାୟା ପ୍ରତି ଅଭିବ୍ୟକ୍ତି ଓ ପ୍ରତିକ୍ରିୟା ସୂଚୀତ ହେଉଛି ଚଢ଼େଇ କବିତାରେ । କାଣ୍ଡିଆ (ଅଠାକାଠିର ଅଠା)ରେ ଆବଦ୍ଧ-ପକ୍ଷୀର ମୁକ୍ତି ପାଇଁ ବ୍ୟାକୁଳ ପ୍ରଚେଷ୍ଟା ମାତ୍ର ସେ ସଫଳ ହୋଇପାରେନି । ପକ୍ଷୀ, ସେ ଆକାଶର ପକ୍ଷିଣୀର, ଶାବକର, ନୀଡ଼ର । ଅଠାକାଠି ରୂପୀ ମାୟାଜାଲରେ ସେପରି ମଣିଷ ଜୀବନ ଆବଦ୍ଧ । ମୁକ୍ତି କେବଳ ମୃତ୍ୟୁ ମାଧ୍ୟମରେ । ନିର୍ବୋଧ ପକ୍ଷୀ ପରି ମଣିଷ ମଧ୍ୟ ନିଜେ ସଂସାର ମୋହରେ ପଡ଼ି ଫଶିଯାଇଛି ବୋଲି ଭାବେ । ନିଜ ନିର୍ବୋଧତାରୁ ଜୀବନ ଜଂଜାଳରୁ ମୁକ୍ତ ହୋଇପାରେନି ।

''ବାନ୍ଧେ ନାହିଁ କେବେ; ମୁଁ ଥାଏ କେବଳ
ତୁ ତୋର ନିର୍ବୋଧପଣରେ ଧରାପଡୁ
ଖସିଯିବାକୁ, ଭିଡ଼ିହୋଇ ଜଡ଼ିଯାଉ, ବୁଡ଼ିଯାଉ
ତୁ ଜାଣୁନା ରେ ପକ୍ଷୀ ।'' (ଚଢ଼େଇ-ପୃ-୬୫)

ଏହିପରି ସାମ୍ପ୍ରତିକ ମଣିଷ ସଂସାର ଜାଲରେ ଆବଦ୍ଧ । ମୃତ୍ୟୁ ଏଠି ଅନିବାର୍ଯ୍ୟ । ତେବେ ଏ ମୃତ୍ୟୁଟି କିପରି ? କବି ଦୃଷ୍ଟିରେ କେଉଁଠି ଏହା ଶୋଇବା ଘରେ ଅଙ୍ଗାରର ଚିତ୍ରଟିଏ, କୁହୁଡ଼ିଆ ଅନ୍ଧାରରେ ଛାଇ ନିଦ ପରି ଅଥବା କେଉଁଠି ଲଇଁ ଲଇଁ ଯାଉଥିବା ହାଲିଆ ବାଟୋଇଟିଏ । ଏ ମୃତ୍ୟୁ ପୁଣି ଆକାଶ, ପୃଥିବୀ, ଅତୀତ, ବର୍ତ୍ତମାନରୁ ଲୀନ ହେବାପରେ ବି ସର୍ବଦିଗ ବ୍ୟାପୃତ । ଘଟରୁ ଘଟାନ୍ତର, ପ୍ରଳୟରୁ ପ୍ରଳୟାନ୍ତର ଯାଏଁ । ମୃତ୍ୟୁ ଏଠି ଋତୁଚକ୍ର । ମୃତ୍ୟୁରେ କବି ପୁରାତନର ଅବଲୁପ୍ତି ଓ ନୂତନର ଆବିର୍ଭାବର ସମ୍ଭାବନାକୁ ସୂଚାଇଛନ୍ତି । କିନ୍ତୁ ସବୁଠି ମୃତ୍ୟୁ ଏପରି ଆସେନା । ସଂସାରରେ କେହି ମଧ୍ୟ ଆପଣାର ନୁହେଁ ତଥାପି ନିର୍ବୋଧ ଶିଶୁ ପରି ବ୍ୟକ୍ତି ସମସ୍ତଙ୍କୁ ଆପଣାର ଭାବେ । 'ତୁମକୁ ମୋ ରାଣରେ' କବି ନୀଳସିନ୍ଧୁକୁ ସମ୍ବୋଧନ କରି ଏହି କଥାଟି ହିଁ କହୁଛନ୍ତି, ଏକ ଆଧ୍ୟାତ୍ମ ବିଶ୍ୱାସକୁ ଅନ୍ତଃକରଣରେ ଧାରଣ କରି । ବସ୍ତୁତଃ ମୃତ୍ୟୁସଚେତନ କବି-ବ୍ୟକ୍ତିଚେତନା ଜୀବନର ହତାଶା ଓ ନିରର୍ଥକତାକୁ କେଉଁଠି ନା କେଉଁଠି ଅବଶ୍ୟ ଉପଲବ୍ଧି କରିଥାଏ । ମଣିଷ ଜୀବନ ମଧ୍ୟ ଋଣଗ୍ରସ୍ତ । ଏ ଋଣ କେବଳ ତେଲ, ଲୁଣର ଦୁନିଆ ଭିତରେ ସୀମିତ ନୁହେଁ । ବରଂ ଏହା ମଣିଷର ଆବେଗିକ ଓ ଆଧ୍ୟାତ୍ମିକ

ଦିଗରେ ମଧ୍ୟ ସଂଚରିତ । ଗଛର ପତ୍ରଟି ମଧ୍ୟ ମାଟିକୁ ଝଡ଼ିପଡ଼େ, ମାଟି ପ୍ରତି ତା ଋଣ ଟିକକ ଶୁଝିଦେବା ପାଇଁ, ନୂତନ ପତ୍ରର ନବଜନ୍ମ ପାଇଁ । ('ଋଣ' ପୃ-୯୦)ମଣିଷ ଜୀବନ ମଧ୍ୟ ସେହି ଏକ ସୂତ୍ରରେ ଋଣୀ । ମାତ୍ର ସେ ଋଣରୁ ମୁକ୍ତି କଣ' ପାଇହୁଏ କି ? ତେଣୁ କବି ପରମାରାଧ୍ୟ ପରମେଶ୍ୱରଙ୍କର ପ୍ରତୀକ୍ଷା କରିଛନ୍ତି । ଯୁଗ ଯୁଗର ଏ ପ୍ରତୀକ୍ଷା । କେବଳ ସେହି ଇପ୍ସିତତମଙ୍କ ଗୋଟିଏ ଡାକକୁ । ମୃତ୍ୟୁ ଉପରାନ୍ତ ମୁକ୍ତି ସକାଶେ କବି କାମନା ଏଠି ସ୍ପଷ୍ଟ । ଯେମିତି ମେଘ ଢ଼ାଙ୍କି ହେଲେ, ବର୍ଷା ରାତିରେ ପଥର ଉହାଡ଼ରେ ଅଂଧାରରେ ବଂଶୀ ସ୍ୱନ ନିନାଦିତ ହୁଏ । ଖାଲି ଯାହା ତାଙ୍କ ନାମଟି ଧରୁ ବୋଲି କବିର ଅଭିଳାଷ ଓ ଆକାଙ୍କ୍ଷା ।

"ମୋ ନାଁ ଧରି ମୋତେ ଡାକି ଦେଇପାରୁ
ସେତିକିରେ ମୋ ପ୍ରଳୟ
ମୋର ସପ୍ତରନ୍ଧ୍ର ଦେଇ ଏକମାତ୍ର ନାଦ
ବିଳସିତ ହୋଇପାରେ
ବାଉଁଶର ପବଟିଏ ପରି
ଉନ୍ମୁଖ ଉଛାଟେ
ମୁଁ ଅପେକ୍ଷା କରିଥିବି ତୋହରି ଡାକକୁ ।
(ପ୍ରତୀକ୍ଷା ପୃ-୧୪୪)

ଅତଏବ ନିରୁପାୟ ଏଠି କବି-ଜୀବନ । ସେ କେବଳ ପ୍ରତୀକ୍ଷା କରିଛି ସେହି ଅଲଂଘ୍ୟ ବାସ୍ତବତାକୁ, ମୃତ୍ୟୁକୁ । ନିର୍ଦ୍ଧାରିତ ସମୟରେ ତାର ଆଗମନ ଭିନ୍ନ ହେବନାହିଁ । ସବୁକିଛି ଏଠାରେ ପୂର୍ବନିର୍ଦ୍ଦିଷ୍ଟ । ନିର୍ଦ୍ଧାରିତ ସମୟ ବିନ୍ଦୁରେ ସେ ଉଭାହୁଏ । ସୂର୍ଯ୍ୟଙ୍କ ଉଦୟ ଅସ୍ତ ଧ୍ରୁବସତ୍ୟ ପରି ସେ (ମୃତ୍ୟୁ ?) ଅତିକ୍ରମ କରେନି କ୍ଷଣିକ ମୁହୂର୍ତ୍ତ ଏପଟ ସେପଟ । କବିଙ୍କ ବ୍ୟକ୍ତିଚେତନା କିନ୍ତୁ ତଥାପି ସଂସାର ମୋହ ଓ ଜ୍ଞାନ ଭିତରେ ଦ୍ୱନ୍ଦାୟିତ ହୋଇରହିଛି । ସେ ନିରୁପାୟ ।

"ଏ ପାଖରେ କଂସ ଆଉ
ସେ ପାଖରେ ଉଦ୍ଧବ
ଭିଡ଼ି ଧରିଛନ୍ତି ମୋର ଖେଳସାଥୀମାନେ
ମୋର କିନ୍ତୁ ଭାରି ଇଚ୍ଛା
ନମସ୍କାର କରନ୍ତି ତମକୁ ।
(ନିରୁପାୟ -ପୃ-୧୪୬)

ଆପାତତଃ ମୃତ୍ୟୁଚିନ୍ତାରେ ଆତ୍ମନିମଗ୍ନ ହୋଇଥିଲେ ହେଁ ଶ୍ରୀରଥଙ୍କ ବହୁ କବିତା କବିଙ୍କ ଆଧ୍ୟାତ୍ମିକ ଅନ୍ୱେଷାକୁ ବ୍ୟକ୍ତ କରୁଅଛି । ତେବେ ମୃତ୍ୟୁ ସଚେତନ ସ୍ରଷ୍ଟାମାନସ

ଜୀବନର ବିଡ଼ମ୍ବନାରେ ନିଜର ବ୍ୟର୍ଥତାକୁ ଭେଟିଥାଏ ଅନେକତ୍ର । ସାମାଜିକ ଜୀବନର ଜଟିଳ ପରିସ୍ଥିତିକୁ ସାମ୍ନା କରୁଥିବା ବ୍ୟକ୍ତି ନିଜର ନିରର୍ଥକତା, ବିଚ୍ଛିନ୍ନତା ତଥା ଆତ୍ମନୈରାଶ୍ୟ ଯୋଗୁଁ ମୃତ୍ୟୁ ସଚେତନ ହୁଏ । ବିଡ଼ମ୍ବିତ ଜୀବନର ଅସହାୟ ବାସ୍ତବତା ତଥା ହତାଶ ବିଫଳ ଚିନ୍ତାନେଇ ବ୍ୟକ୍ତିଠାରେ ନୈରାଶ୍ୟଭାବ ଜନ୍ମ ନିଏ । ଶ୍ରୀରଥଙ୍କ କବିତାରୁ ଏହା ଲକ୍ଷ୍ୟକରାଯାଇପାରେ । ''କାହାକୁ କହିବା' ରେ କବିଙ୍କ ନୈରାଶ୍ୟ ଭାବ ପ୍ରକଟିତ । ସାଧାରଣରେ ଯାହା କିଛି ଜଣକର ଖରାପ ଘଟିଲେ ତାକୁ ଆମେ ଦୁର୍ଭାଗ୍ୟ କହୁ । କବି ମଧ୍ୟ ବିଫଳତାକୁ ବହୁସ୍ତରରେ ସାମ୍ନା କରିଛନ୍ତି । କାବ୍ୟପୁରୁଷର ଜନ୍ମ ହୁଏ କୁଆଁର ପୁନେଇରେ, ବୃଷ ଲଗ୍ନେ, ରେବତୀ ମାନରେ । (ପ୍ରକାଶ୍ୟ, ଶ୍ରୀଚନ୍ଦ୍ରଶେଖର ରଥଙ୍କ ଜନ୍ମ କୁମାର ପୂର୍ଣ୍ଣିମାରେ) ଜନ୍ମ ସହ କିନ୍ତୁ ଲିଖିତ ହୋଇଯାଏ ମଣିଷ ଶିଶୁର ଭବିଷ୍ୟତ । ଅଙ୍କାବଙ୍କା ଦନ୍ତୁରିତ ବ୍ୟର୍ଥତାର ଲିପି । ଜୀବନରେ ସବୁକିଛି ପାଇ ମଧ୍ୟ କେଉଁଠି ଯେପରି ଏକ ରିକ୍ତତା ରହିଯାଇଚି । ସବୁ ହୁଏ କିନ୍ତୁ ମନ ଛୁଇଁଲା ପରି କାମଟିଏ ହୁଏନି । କବିଙ୍କ ଭାଷାରେ —

''ଯେଉଁ ଡାଳ ଧଇଲେ ମୁଁ
ସେ ଡାଳ ଭାଙ୍ଗୁଛି
x x x x
ଗୋଟିଏ ହେଲେ ଡାଳରେ
ନ ଫୁଟିଲା ମନଲାଖି ଫୁଲ
ସବୁ ଥାଇ କିଛି ବି ନହେଲା
ଫୁଲ ମଲା, ଫୁଲଗଛ ମଲା
x x x x
ତୁମେ କହ ଭାଗ୍ୟ ଊଣା ହେଲା ।
(କାହାକୁ କହିବା -ପୃ-୧୧୧)

ଭାଗ୍ୟବତୀ ହେବା ବ୍ୟତୀତ ଯେପରି ଗତ୍ୟନ୍ତର ନାହିଁ । ବ୍ୟର୍ଥାନୁଭବ ଜୀବନର ଭାଗ୍ୟବାଦୀ ଚିନ୍ତା କବିଙ୍କୁ ମୃତ୍ୟୁ ସଚେତନ କରାଏ ଏବଂ ମୃତ୍ୟୁଚେତନା ଉତ୍ତରଣ କାଳରେ କ୍ରମବିବର୍ତ୍ତନ ହୁଏ ଆଧ୍ୟାତ୍ମ ବିଶ୍ୱାସରେ; ଭିନ୍ନ ଇଲାକାର ଅନ୍ୱେଷାରେ । ଆଧ୍ୟାତ୍ମ ପ୍ରାଣ କବି-ଚେତନା ଏ ପର୍ଯ୍ୟାୟରେ ପାରମ୍ପରିକ ଜୀବନର ମିଥ୍ ଧର୍ମୀ କାହାଣୀଗୁଡ଼ିକୁ ଅବଲମ୍ବନ କରି ସାମ୍ପ୍ରତିକ ଜୀବନର ବିଶ୍ୱାସବୋଧକୁ ବ୍ୟକ୍ତ କରିଛନ୍ତି । ଶାଶ୍ୱତ ମୂଲ୍ୟବୋଧ ତଥା ଚିରନ୍ତନ ଆବେଦନକୁ ପ୍ରକାଶ କରିଛନ୍ତି ।

ଚନ୍ଦ୍ରଶେଖର ରଥଙ୍କ କବିତାରେ ଏହି ଧର୍ମ ଆରୋପିତ ହୋଇଛି ବୋଲି କୁହାଯାଇପାରେ । ଉଲ୍ଲେଖ୍ୟ ଯେ, ମିଥ୍ ଧର୍ମୀ ଗଳ୍ପ ସୃଷ୍ଟିରେ ଶ୍ରୀରଥ ପୂର୍ବରୁ ଥିଲେ

ସିଦ୍ଧହସ୍ତ । ତେଣୁ କବିତାରେ ଏହି ସଂଫଳତାର ଚିହ୍ନ ପରିଲକ୍ଷ୍ୟ । ଅବତାର, ଯାଚକ, ଅପରପକ୍ଷ, ପଛକୁ ଗ୍ରହିଁବା ମନା-ଆଦି ଏହି ଶ୍ରେଣୀର କବିତା ।

'ଅବତାର' କବିତାରେ କବି ଏକ ଅନନୁଭୂତ କଳ୍ପନାରେ ଉପନୀତ । ବେଳେବେଳେ ସୃଷ୍ଟି ସ୍ରଷ୍ଟଠାରୁ ବହୁ ଊର୍ଦ୍ଧ୍ୱକୁ ଗ୍ଲିଯାଏ । ଯେଉଁଥିରେ ସ୍ରଷ୍ଟା ମଧ୍ୟ ଆଚମ୍ବିତ । ନିଜକୁ ସେ ଅବିଶ୍ୱାସ କରିଛନ୍ତି । ଶ୍ରୀକୃଷ୍ଣ ଜନ୍ମର ଏହି ମିଥ୍‌କୁ ଆଶ୍ରୟ କରି କବି ସାମ୍ପ୍ରତିକ ଯୁଗଯନ୍ତ୍ରଣାକୁ ପ୍ରତୀକିତ କରିଛନ୍ତି । ସଂସାର ମାୟାରେ ଦେବତା କାୟାବିସ୍ତାର ସହ ଯେପରି ମାୟ-ଜଡ଼ିତ ନ ହୁଅନ୍ତି । ଯୁଗେ ଯୁଗେ ସେହି ଅବତାରର ଆବିର୍ଭାବ ହିଁ ତାଙ୍କର କାମ୍ୟ । କବି ତ ନାମକୁ ମାତ୍ର ବସୁଦେବ । ଅବତାର ହିଁ ସଂହାର କରିବ ଛଳନାମୟ ପୃଥିବୀର ଅବତାରୀମାନଙ୍କୁ, ଯେଉଁମାନେ ନିଜକୁ ଈଶ୍ୱର ମନେ କରନ୍ତି ।

''ଭ୍ରୁଣରୁ ସେମାନେ ବଧ୍ୟ
ଚକ୍ରପେଶି ନାଶିବୁ ସେ ଅନାଗତ ଅଶୁଭମାନଙ୍କୁ
x x x x
ପର୍ବତ ଆକାର କଳା ଘୋଡ଼ାଟାଏ
ଚମକି ଯାଉଛି ବୋଲି ସମସ୍ତେ କହିବେ ।
(ଅବତାର-ପୃ-୯୯)

'ଅପର ପକ୍ଷରେ କବି ଦେଖାଇଛନ୍ତି ଦୁର୍ଯ୍ୟୋଧନର ସ୍ୱଗତୋକ୍ତି ଭିତରେ ସାଂପ୍ରତିକ ମଣିଷର କାର୍ଯ୍ୟସିଦ୍ଧି ନିମିତ୍ତ ମୂଳଭିତ୍ତିହୀନ ହୋଇଯିବାର ଉଦ୍ୟମକୁ । ଦୁର୍ଯ୍ୟୋଧନକୁ ହରାଇବା ପାଇଁ ଭୀମର ଛଳନା ଦୁର୍ଯ୍ୟୋଧନୋଚିତ କାର୍ଯ୍ୟରୂପେ ସୂଚୀତ । ତେଣୁ ଦୁର୍ଯ୍ୟୋଧନ-ଦୃଷ୍ଟିରେ—

''ତୋତେ ମୁଁ ଉପାଡ଼ିଦେଲି ତୋ ଭୂମିରୁ
ଭାଙ୍ଗୁଥା ତୁ ' ଯେତେ ଇଚ୍ଛା ଉରୁ
x x x x
ଆଜି ମୋର ହାରିବାର ଦିନ,
ମରିବାର ଦିନ,
ତଥାପି ଖୁସିର ଦିନ
ତୋତେ ଦେଖି କୌରବ ପକ୍ଷରେ ।
(ଅପର ପକ୍ଷ-ପୃ-୧୦୧)

କବିଙ୍କ ଈଶ୍ୱରୀୟ ଅନୁଚିନ୍ତା ଯାଚକ କବିତାରେ ଅପୂର୍ବ । ପଛକୁ ଗ୍ରହିଁବା ମନାରେ ସେ ସାକ୍ଷୀଗୋପାଳ ଉପାଖ୍ୟାନ ମାଧ୍ୟମରେ ଯୁଗେ ଯୁଗେ ସେହି ରହସ୍ୟମୟତାକୁ ବୁଝିବାରେ ଅସମର୍ଥ ମଣିଷର ଅନ୍ତର୍ବେଦନା ତଥା ଈଶ୍ୱର ପ୍ରାପ୍ତି ଚିନ୍ତାକୁ କବିତ୍ୱପୂର୍ଣ୍ଣ ତଥା ମଞ୍ଜୁଳ

ରୂପରେ ପ୍ରକାଶ କରିଛନ୍ତି । କବି ଏଠାରେ ମୁକ୍ତି ଗ୍ରହୁଁନ୍ତିନି, ବରଂ ଚାହାନ୍ତି ସେହି ସର୍ବମୟ ଈଶ୍ୱରଙ୍କ ସାନ୍ନିଧ୍ୟ । ସେଇ ଅଧ୍ୟାତ୍ମ ପ୍ରାଣତା ନେଇ କବି ଚନ୍ଦ୍ରଶେଖର ରଥଙ୍କ ଉତ୍ତରିତ ପ୍ରାଣର ଅଭିବ୍ୟକ୍ତି ଏ କବିତାରେ ପ୍ରମୂର୍ତ୍ତ, ଭାସ୍ୱର ।

"ମୁଁ ସାକ୍ଷୀ ଗ୍ରହେଁନା
ମୋପାଇଁ ଗୋପୀନାଥ ହୁଅ
ମୋତେ ଗ୍ରହିଁବାକୁ ଦିଅ ଚିରକାଳ
x x x x
ପଞ୍ଚପ୍ରାଣ ଠୁଳ କରି ମୁଁ ଏକତ୍ର ହେବାଯାଏ
x x x x
ମୋତେ କିଛି କାଳ ଗ୍ରହିଁ ରହ
ମୋତେ ଥରେ ଗ୍ରହିଁବାକୁ ଦିଅ ।
(ପଛକୁ ଫେରିବା ମନା-ପୃ-୧୪୮)

କବି ଚନ୍ଦ୍ରଶେଖର ରଥଙ୍କ କବିତାର ବ୍ୟାପ୍ତି ଯେତିକି ବିସ୍ତୃତ, ସେତିକି ଗଭୀର ମଧ୍ୟ । ଏ ସଂକ୍ଷିପ୍ତ ଆଲୋଚନାରେ ତାଙ୍କର ଆଲୋଚ୍ୟ ସଂକଳନର ସମସ୍ତ କବିତାକୁ ପର୍ଯ୍ୟାଲୋଚନା ପୂର୍ବକ କୌଣସି ନିର୍ଦ୍ଦିଷ୍ଟ, ମତାମତ ଦେବା ସମ୍ଭବପର ନୁହେଁ । ତଥାପି ମତବ୍ୟକ୍ତ କରାଯାଇପାରେ ଯେ 'ତୁମ ପାଇଁ ପକ୍ଷୀଗାନ'ରେ କବି-ଅନୁଚିନ୍ତା କ୍ରମଶଃ ପ୍ରେମ ଓ ପ୍ରଣୟର ଦିବ୍ୟାନୁଭବରୁ ମୃତ୍ୟୁଚେତନାକୁ ସଂଚରିଯାଇଛି । ପୁଣି ମୃତ୍ୟୁଚେତନାରୁ ଉତ୍ତରଣ ହୋଇଛି ମିଥ୍‌ଧର୍ମୀ କାବ୍ୟାବେଦନ ମାଧ୍ୟମରେ ଆଧ୍ୟାତ୍ମିକ ଆସ୍ପୃହାକୁ । ତାଙ୍କର ଭାଷା ଗାମ୍ଭୀର୍ଯ୍ୟ ଓ ଅପୂର୍ବ ଚିତ୍ରକଳ୍ପର ପ୍ରୟୋଗ ବହୁ କବିତାକୁ ଉଚ୍ଚକୋଟୀର କାବ୍ୟଗୁଣରେ ବିଭୂଷିତ୍ କରିଛି । ସଂକଳନଟି କବିଙ୍କ ପ୍ରତିଭାର ଉନ୍ମେଷ ଧାରାକୁ ଅଭିବ୍ୟକ୍ତ କରୁଛି । ଉତ୍ତରଣ ଧାରାରେ କିନ୍ତୁ କବିତାର ଗହନ, ଗଭୀର ପୃଥିବୀ ଆଗକୁ ଘଞ୍ଚ, ନିକାଞ୍ଚନ ବନସ୍ତ ସଦୃଶ । ତେଣୁ ଚନ୍ଦ୍ରଶେଖର ରଥଙ୍କ ଦ୍ୱିତୀୟ କବିତା ସଂକଳନ । 'ଆଗକୁ ବନସ୍ତ'ର ସୃଷ୍ଟି । ପୁଣି ସେ ପରବର୍ତ୍ତୀ ସମାନଧର୍ମୀ ପାଇଁ ଅପେକ୍ଷାରତ ମଧ୍ୟ । 'ତୁମ ପାଇଁ ପକ୍ଷୀଗାନ' ତାଙ୍କର ପରବର୍ତ୍ତୀ କବିତା ସଂକଳନଗୁଡ଼ିକ ପାଇଁ ଏକ ବୌଦ୍ଧିକ ପୃଷ୍ଠଭୂମି ନିଶ୍ଚୟ । ଗଦ୍ୟଶିଳ୍ପରୁ କାବ୍ୟଶିଳ୍ପକୁ ଉତ୍ତରିତ ଚନ୍ଦ୍ରଶେଖର ରଥଙ୍କ ପ୍ରତିଭାର ଉଜ୍ଜ୍ୱଳ ସ୍ୱାକ୍ଷର ବହନ କରି 'ତୁମ ପାଇଁ ପକ୍ଷୀଗାନ' ହୋଇଛି ଆବିର୍ଭୂତ ।

ଗଜପତି ନଗର - ୯
ବ୍ରହ୍ମପୁର - ୧୦

***

**୪**

# ତା'ପରେ..........

ଡ଼ଃ ଶ୍ରୀନିବାସ ଉଦ୍‌ଗାତା

ସେତେବେଳେ ସେମାନେ ତ ସମବେତ ହେଲେ
ବ୍ରାହ୍ମ ମୁହୂର୍ତ୍ତରେ,
ପକ୍ଷୀକଣ୍ଠର
ଆଦ୍ୟ ପ୍ରଣବ ଉଚ୍ଚାରଣରେ
ଉଷାର ପଦପଖଳା ଅଳତାରେ
ରଞ୍ଜିତ ହେଲା ପ୍ରାଚୀତଟ
ମୂର୍ଚ୍ଛିତ ହେଲା କି ଅପୂର୍ବ ନଟଭୈରବ ଯେ....
କ୍ରମଶଃ ଅବତରିତ ହେବାକୁ ଲାଗିଲେ
ଜିଜ୍ଞାସା-ସମ୍ମୋହିତ, ଲୟବତୀ ରଶ୍ମିମାନେ.... !

ସେମାନେ ପାଛୋଟି ଆଣିଲେ ସୂର୍ଯ୍ୟଙ୍କୁ,
ଅରୁଣାଭା ପୀତାଭ ହେଲା,
ଅନନ୍ତ ନୀଳିମାରେ ଏକାକାର ହୋଇ
ଉଦ୍‌ଭାସିତ ହେଲା,
ପ୍ରତିଫଳିତ ହେଲା ଧରିତ୍ରୀରେ ଯେ
ଶ୍ୟାମଳ ହେଲା ବିଷ୍ଣୁପ୍ରିୟା ବସୁନ୍ଧରା ।
ଋଷି, ଆପଣ ତା'ର ଦ୍ରଷ୍ଟା,
ତପସ୍ୟାରତ, ବିଶାଳ ବଟବୃକ୍ଷ
ଧ୍ୟାନସ୍ଥ,
ଆତ୍ମସ୍ଥ କରି ନେବାକୁ ସମ୍ପୂର୍ଣ୍ଣ ଆକଶକୁ,
ପ୍ରଶାନ୍ତ ନୀଳିମାକୁ,
ଶବ୍ଦକୁ.....
ଆଉ ସେହି ପ୍ରଜ୍ଞାମୟ ବଟବୃକ୍ଷର
ଅପୂର୍ବ ଶ୍ୟାମଳ ପଲ୍ଲବନ-ମୁଗ୍ଧ

ଦିବ୍ୟାତ୍ମାମାନେ
ସ୍ଥିରପକ୍ଷ ପକ୍ଷୀବତ୍
ଦୋଳାୟିତ ପ୍ରମୁଦିତ ଛନ୍ଦରେ
ଆସି ବସିଗଲେ
ଉଲ୍ଲସି ଉଠେ ଆପଣଙ୍କର ସର୍ବାନ୍ତର ଆତ୍ମା....
ସମୀପରେ ଥାଇ ଦୂରସ୍ଥ
ଆକାଶର ବ୍ୟାପ୍ତିରେ ସମ୍ପୂର୍ଣ୍ଣ ଜଗତକୁ
ଆବୋରି ରହି, ଜଗତରେ, ସୂକ୍ଷ୍ମ ସୂକ୍ଷ୍ମତରରେ
ବିଦ୍ୟମାନ !
ମଧୁମଣ୍ଡିତ କରି ଦେବାର କେଡ଼େ ଆତୁର ଅନୁରାଗରେ
ବିଶ୍ୱକୁ ଦେଖିଲେ ସିନା, ସେ ତା'ର କରିନିଏ
ତା'ର ହୋଇଯିବାପରେ ହିଁ ଦେଖିହୁଏ
ତା'ର କୋଟିସୂର୍ଯ୍ୟସମପ୍ରଭ ତେଜୋମୟ ରୂପକୁ
ଆଉ ନିବିଡ଼ କୃଷ୍ଣାଭାକୁ, ଅନ୍ଧକାରର ବର୍ଣ୍ଣମୟ ପ୍ରକାଶକୁ !
ତା'ପରେ ଯାଇଁ ସୁଗନ୍ଧ ଚହଟି ଯାଏ
ଆପଣା ଆତ୍ମାର ଆତ୍ମୀୟତାର ସୁବାସ
ସର୍ବାତ୍ମାରେ...... !

ସେପରି କବିଟିଏ ହେବା କ'ଣ ସହଜ କଥା
ଯା'ର ଆଖିରେ ଦେଖି ହେଉଥିବ ସାରା ଆକାଶକୁ
ସମୁଦ୍ରକୁ.... ନେତ ଆଉ ନୀଳଚକ୍ରକୁ,
ମେଘକୁ, ପ୍ରୀତକଙ୍କୁ
ବଡ଼ଦାଣ୍ଡ ଆଉ ସ୍ୱର୍ଗଦ୍ୱାରକୁ....
ଆନନ୍ଦକୁ
ତୁଳସୀ ଦୟଣାର ବାସ୍ନାକୁ
ମନ୍ଦହାସ
ଆଉ ତା'ର ଅପଲକ ଆଖିକୁ
ସ୍ନେହାତୁର ।

କୋଳାଗ୍ରତ କରିନେବାର ପୁଲକିତ ମୁଦ୍ରାରେ
ପ୍ରସାରିତ ତା'
ଅନନ୍ତ ଭୁଜକୁ !

ତାକୁ ଦେଖିଲେ ମନେ ପଡ଼ନ୍ତି ଆପଣ
ଆପଣଙ୍କୁ ଦେଖିଲେ ଆପେ ମନ
ଟାଣି ହୋଇଯାଏ ତା' ପାଖକୁ........

କବି କୁଟୀର, ବଲାଙ୍ଗୀର

* * *

# ନିଆରା ନକ୍ଷତ୍ର

ବୀଣାପାଣି ପଣ୍ଡା

ଗୋଟିଏ ରାତିର କପାଳରେ
ସାତୋଟି ରାତିର ଆୟୁଷ ପାଲଟିଯାଏ,
ତେବେ ମାତ୍ର ଗୋଟିଏ ପଲକକୁ
ସବୁଠାରୁ ଦୀର୍ଘ ରାତିରେ ପରିଣତ କରିପାରୁଥିବା
ଅଦ୍ୱିତୀୟ କଳାକାରକୁ କୁହାଯାଏ,
ଈଶ୍ୱର ନା ଯାଦୁକର !

ମୁଁ ଜାଣେ ତୁମକୁ ଈଶ୍ୱର କହିଲେ
ତୁମେ ଘୁଂଚିଯିବ ଅନେକ ଦୂରକୁ
ହାତ ଅପହଂଚ ଆଖି ଅପହଂଚ
ମନ ଅପହଂଚ ଆଖି ଅପହଂଚ
ମନ ଅପହଂଚ ସ୍ୱପ୍ନ ଅପହଂଚ ଇଲାକାକୁ,
ଯୋଉଁଠି ଅନ୍ୟମାନଙ୍କ ପାଇଁ
ପ୍ରବେଶ ନିଷେଧର ଫଳକ ଝୁଲୁଥିବ ।
ତୁମକୁ ଯାଦୁକର କହିଲେ
ଏଇ ନିତିଦେଖା ପୃଥିବୀର
ରୂପ, ରଂଗ, ବ୍ୟାପ୍ତି ଓ ଗଭୀରତା
ନିତି ଜିଆଁ ଜୀବନର
ସ୍ୱର, ଛଂଦ, ପ୍ରାପ୍ତି ଓ ଆକୁଳତା
ସବୁ ମୁହୂର୍ତ୍ତକେ ମିଥ୍ୟା-ହୋଇଯିବ ।

ମାଟି ଉପରେ ବିଛାଡ଼ି ହୋଇ ପଡ଼ିଥିବା
ଅସୁମାରି ହୃଦୟର ସୁଖ, ଦୁଃଖ,
ହସ, ଲୁହ, ପ୍ରେମ, ଶୋକ,
ଆର୍ତ୍ତି ଓ କାରୁଣ୍ୟକୁ
ଦି'ହାତର ଅଂଜଳିରେ ତୋଳିନେଇ
ଛାତିର ରକ୍ତରେ ଧୋଇଦେଇ

ଯିଏ ଫୁଲ ପରି ଫୁଟେଇପାରେ
ଶବ୍ଦର ଗଛ ଡାଳରେ,
ଦୀପଟିଏ କରି ଜାଳିଦେଇପାରେ,
ଅସୂର୍ଯ୍ୟ ଉପନିବେଶର ଅଁଧାରି ଭୂଇଁରେ,
ତାକୁ କୋଉ ସଁଜ୍ଞାରେ ବାନ୍ଧି ହେବ
କୋଉ ସଂପର୍କରେ ଗୁଂଥି ହେବ କୁହ ?

ସପ୍ତରଥୀର ବ୍ୟୁହ ମଧ୍ୟରେ ସଂଗ୍ରାମରତ
ସେ ଏକାକୀ ଅଭିମନ୍ୟୁ
ଅଟଳ ସାଧନାର ନିବୁଜ ଗଂଭୀରତାରେ
ତପସ୍ୟାରତ ସ୍ଥିତପ୍ରଜ୍ଞ ଉପମନ୍ୟୁ
ଧରାବଂଧା ଧାରଣାର ବାହାରେ
ଚିହ୍ନା ଚିହ୍ନା ବିଶ୍ୱାସର ଊର୍ଦ୍ଧ୍ୱରେ
ସୃଜନର ଆକାଶରେ
ସେ ଏକ ନିଆରା ନକ୍ଷତ୍ର,
ଯା ଭିତରେ ଈଶ୍ୱର ଓ ଯାଦୁକର
ଏକତ୍ର କରନ୍ତି ଲୀଳା
ଆଲୋକିତ କରିଦେଇ ଦିଗରୁ ଦିଗନ୍ତ ।

'ଆଶ୍ରୟ'
ଜହ୍ନ ବଗିଗ୍ଚ, ଯାଜପୁର - ୧

***

# ଗଦ୍ୟ -ଗୀତିକାର

*ନିମାଇଁ ମହାନ୍ତି*

ତୁମକୁ ପଢ଼ିଲେ
ଆକାଶକୁ ପଢ଼ିହୁଏ
ଘାସ ଘେରା ମାଟିକୁବି ଛୁଇଁ ହୁଏ ।

ଅନେକ ବର୍ଷ ତଳେ ତୁମକୁ ପ୍ରଥମେ
ଛପାକାଳିର ପୃଷ୍ଠାରେ ଚିହ୍ନିଲି,
ଆମ 'ଶଶୀ' ତୁମ 'ଭୁଷଣ' କରିଆରେ ।
ସେଦିନ 'କଣ୍ଟାର ମୁକୁଟ' ପିନ୍ଧିଥିଲ ତୁମେ
ହେଲେ, ମୋ ଛାତିରୁ ରକ୍ତ ଝରିଥିଲା ।
ତାପରେ ତୁମକୁ ଆହୁରି ଆହୁରି ଚିହ୍ନିଲି
କାହାଣୀରେ, ଉପନ୍ୟାସରେ ଲଳିତ ନିବନ୍ଧରେ
ଗଦ୍ୟରେ ବି ଗୀତ ଲେଖି ହୁଏ !
ଭାବୁଥିଲି କିଏ ତୁମେ ସେଇ
ଗଦ୍ୟ-ଗୀତିକାର ?
ଶୁଖିଲା ଶାଖାରେ ତୁମେ ମୁଗ୍ଧ ପ୍ରଜାପତି
ନା,
ଦଗ୍ଧ ବନସ୍ତରେ ତୁମେ ବିଦଗ୍ଧ କୋଇଲି ?

ବହୁବର୍ଷ ପରେ
ତୁମକୁ ଭେଟିଲି ଦିନେ ଶୀତ ଆସରରେ
ତୁମେ ଇ'ନା କହିଥିଲ ଗୀତ ମୋର ଶୁଣି
"ଆଖୁଳାଏ ଯୁଇ ଫୁଲ ବିଞ୍ଚିଦେଲା କିଏ ଅଗଣାରେ ?"
ସେ ଯୁଇର ବାସ୍ନା ଆଉ ଲିଭିଲାନି
ଝଡ଼ ପବନରେ ।
ଏବେ ବି ମହକି ଉଠେ ରହିରହି
କୋଟି କୋଟି ଯୁଇ ଫୁଲ ହୋଇ
ମୋ ଅନ୍ତର ତଳେ ।

କେତେ ଅବା ଦୂରେ ତୁମ-
ବଳିଆର ଭୁଜ, ନୀଳାଚଳ ନାଥ ?
ତୁମେ ତ' ଲଭିଚ ତାଙ୍କ ଦେହ ଘସା ଖଣ୍ଡା,
କୃପା ଧଣ୍ଡା ମାଳ,
'ରଥ ସପ୍ତକ'ରେ ଢ଼ାଳି ଅନ୍ତର ଗୁହାରି;
ଅଯୁତ ଆକୁତି ।
କାହିଁକି ଡାକିବି ତାଙ୍କୁ ତୁମ ଲାଗି ଆଉ,
କି ସାହସ ନେଇ ?
ତେଣୁ ଏଇ ପାବନ ବେଳାରେ
ଡାକେ ଆଜି ନତଜାନୁ ହୋଇ
ସ୍ତୁତିର ଶଙ୍ଖାଳି ତୁମ ଗେହ୍ଲା ଠାକୁରଙ୍କୁ
''ହୋ ବାଣ୍ଡିଆ  ଜଗନ୍ନାଥେ !
ଗ୍ରହିଁଥିବ ଟିକେ ତୁମ
ପ୍ରବାସୀ ପୁଅକୁ
ପ୍ରିୟ ଭଗତକୁ ।''

ପୁରୁଣାହାଟ ସାହି
ବାରିପଦା - ୭୫୭୦୦୧

***ବାଣ୍ଡିଆ ଜଗନ୍ନାଥ :*** ବାରିପଦାର ସାନ ଜଗନ୍ନାଥ ପ୍ରତିମା, ଯାହାଙ୍କ ପରିସର ଓ ସମ୍ମୁଖ ରାସ୍ତା ଲେଖକ ଚନ୍ଦ୍ରଶେଖରଙ୍କର ଭ୍ରମଣ ଭୂମି ଥିଲା । ବାରିପଦା ହିଁ ଥିଲା ତାଙ୍କର ସାରସ୍ୱତ ଜନ୍ମଭୂମି ।

***

୫

# ଚନ୍ଦ୍ରଶେଖର ରଥଙ୍କର ତିଳକ

*ରାଜେନ୍ଦ୍ର କିଶୋର ପଣ୍ଡା*

ଚନ୍ଦ୍ରଶେଖର ରଥ ମୋର ଜଣେ ଅଗ୍ରଜ ଆତ୍ମୀୟ, ତାଙ୍କ ସହିତ ମୋର ସଂପର୍କ ପ୍ରତ୍ୟକ୍ଷ ଭାବରେ ଯେତେ, ଅଂତଃସ୍ଥ ଭାବରେ ତା'ଠୁ ବହୁଗୁଣ ।

ଟିଟିଲାଗଡ଼ରେ ଆମର ପ୍ରଥମ ଚକ୍ଷୁଷ ସାକ୍ଷାତ ୧୯୭୧ରେ, ସାକ୍ଷାତ୍ ମାତ୍ରେଇ ଜାଣିହେଲା ଆମେ ବହୁଦିନର ଆତ୍ମୀୟ ସେ ଡି.ଏ.ଭି. କଲେଜର ଅଧ୍ୟକ୍ଷ, ମୁଁ ଥାଏ ଉପଜିଲ୍ଲାପାଳ । ସଦ୍ୟ ପ୍ରକାଶ ପାଇଥିବା 'ମନ ଅରଣ୍ୟ' ଗ୍ରଂଥଟିଏ ମୋତେ ସେ ଦେଲେ ଏବଂ ଉପହାର-ବାଣୀରେ ଲେଖିଲେ (ଅନ୍ୟ ବାକ୍ୟ ସହିତ) : ''ଯେ କୌଣସି ସୃଜନଧର୍ମୀ ଆତ୍ମପ୍ରକାଶ ଭିତରେ କବିତାର ପ୍ରାଣସଂଗ୍ରର ନ ହେଲେ ସେ ସଂଜୀବିତ ହୋଇପାରେ ନାହିଁ ବୋଲି ମୋର ବିଶ୍ୱାସ ।''

ଚନ୍ଦ୍ରଶେଖରଙ୍କର ସର୍ଜନକର୍ମ ବହୁମାତ୍ରିକ : ରଚନା (ଲଳିତ ନିବନ୍ଧ), ଉପନ୍ୟାସ, କ୍ଷୁଦ୍ରଗଳ୍ପ ଚିତ୍ର, ଭାସ୍କର୍ଯ୍ୟ । ଏବଂ ତାହା ସର୍ବଦା କବିତାୟିତ ଏବେ ତ ତାଂକର କବିତା ଗ୍ରଂଥ ବି ପ୍ରକାଶିତ ।

ଗଳ୍ପ-ଉପନ୍ୟାସ କ୍ଷେତ୍ରରେ ସେ ଉଚ୍ଚତାକୁ ଗମିଛଂତି । ସେଇ ଭୂମିରେ ତାଂକ ସହିତ ଅନେକ ଶୃଂଗ ଅଛଂତି । ମାତ୍ର ସର୍ଜନାତ୍ମକ ରଚନା (ଲଳିତ ନିବଂଧ) କ୍ଷେତ୍ରରେ ଚନ୍ଦ୍ରଶେଖର ରଥ ଅଦ୍ୱିତୀୟ, ଏଯାବତ୍ ଅନତିକ୍ରମ୍ୟ । ଏବେ, କିଛି କାଳ ଧରି, ରଚନା ଲିଖନ ପ୍ରକ୍ରିୟା ମଂଥର ହୋଇଛି । କଥା ସୃଷ୍ଟି ସହିତ 'ରଚନା' ସୃଷ୍ଟି ଉଜ୍ଜୀବିତ ହେଲେ ଚନ୍ଦ୍ରଶେଖର ରଥଂକର ଜ୍ଞାନ, ଉପଲବ୍ଧି ଓ ଚିଦ୍‌ଦୃଷ୍ଟିର ବିକୀରଣ ଶୁଭଂକର ହୁଅନ୍ତା ପରା !

କେହି କେହି ତାଙ୍କର ଗଳ୍ପ-ଉପନ୍ୟାସରେ ନୀତିବାଦର ଛାପ ଲଗାଇ ଦେଇ ଆମୋଦିତ ହୁଅନ୍ତି । ଏହା ଏକ ସୀମିତ ଦୃଷ୍ଟିକୋଣ । କଳାକୃତିର ବିଗ୍ରର ନାନ୍ଦନିକତାରେ ହୁଏ । ଭାବସତ୍ତା, ଭାଷାନିଯୋଗ ଏବଂ ସାମଗ୍ରିକ ନାନ୍ଦନିକ ପ୍ରଭାବ ଦୃଷ୍ଟିରୁ ତାଙ୍କର କଥାସମ୍ଭାର ସମୁତ୍ତୀର୍ଣ୍ଣ । ଚିନ୍ତକ ଓ ମନୋବିଜ୍ଞାନୀ ଆର୍ନୋଲଡ୍ ଲୁଡ୍‌ୱିଗ୍ କହିଛନ୍ତି : କଳା ବିଜ୍ଞାନ ସର୍ଜନ କ୍ଷେତ୍ରରେ ଯାହାକୁ ମହାନ୍ (ଗ୍ରେଟ୍) କୁହାଯାଏ, ତାର ଏକ ବିଶେଷ ଲକ୍ଷଣ ହେଉଛି ନିଜ କର୍ମରେ ଏକ ସ୍ପଷ୍ଟ ''ନିଜସ୍ୱ ସଂତକ'' (ପର୍ସନାଲ ସୀଲ୍) ରଖିଯିବା । ନାନ୍ଦନିକ ଉତ୍କର୍ଷ ସହିତ ସୂକ୍ଷ୍ମରେ ନିହିତ ଆଦର୍ଶବାଦ (ତାହା ଆର୍ଷ ହେଉ ବା କ୍ଷାତ୍ର, ଦୈବ ହେଉ ବା ମାନବୀୟ) ଚନ୍ଦ୍ରଶେଖରୀୟ ମହାନତାର ନିଜସ୍ୱ ସନ୍ତକ । ଏହା କଳଙ୍କ ନୁହେଁ, ତିଳକ ।

ତାଙ୍କର ଜନ୍ମଦିବସ ଉପଲକ୍ଷେ ମୋର ଅସୀମ ଶୁଭେଚ୍ଛା ।

ସଦସ୍ୟ, ରେଭେନ୍ୟୁବୋର୍ଡ୍,
ଓଡ଼ିଶା କଟକ



## My contact with Chandrasekhar Dada

***Ananda Reddy***

We were both sitting on the stage - to give talks on Sri Aurobindo. It was the occasion of the Annual Meeting of the Sri Aurobindo Study Circle in Orissa, held on the 4th 5th 6th of April every year. It was first his turn to speak. He was indeed a stalwart—not only in the physical appearance but in his intellectual personality too. His talk was scholarly, punctuated with humour and he was reaching out to the people's mind. I saw in the eyes of the audience great attention coupled with admiration !

My mind and heart too leaped out in deep appreciation which slowly turned into an humble admiration for him. Obviously, to speak on the stage after him was indeed very difficult for me -for his overshadowing presence and his overpowering influence were too pervasive for me to be able to make any dent in the minds of the audience. Subsequently, whenever we met on the stage, my only prayer to the divine Organiser was "may my turn to speak on the stage come before his'.

Well, as years passed, I came to know about his scholarship and deep dedication to Sri Aurobindo's work. I felt that it would be an honour to be associated with him and as soon as I could, I invited him to be one of the Resource Persons for our Sri Aurobindo Centre for Advanced Research. His acceptance to be part of SACAR"s dream was a great boost for our work.

He is supposed to be 75 years now -whoever would accept that ? He looks not a day more than 60 years and I hope that fifteen years later he celebrates his Diamond Jubilee !!

With deep regards.

Director SACAR<br>Pandicherry

❋❋❋

***Dear Friend,***

I am so happy to know that you are going to celebrate 75th birth anniversary of Professor Chandrasekhar Rath on 10 October 2003 in Orissa. I had the privilege to work with him for five years when he was the convener of the Oriya Advisory Board of the Sahitya Akademi. He chaired a number of Advisory board meetings as well as literary meetings like seminar and symposium. It was a matter of great astonishment for me how he could excel in both the roles. I have a rare experience of a long travel with him by car from Bhubaneswar to Sonepur to attend a literary meet there. The journey was strenuous as the summer temperature escalated to nearly $45^0$ around noon but Professor Rath's profound tete-a-tete in the car, made the journey not only tolerable but enjoyable. His eminence as a fiction writer, poet, scholar, critic and orator has already been established but I feel that he is basically a philosopher. Whenever I think of him, I am tempted to remember the Greek Philosopher whose mental canvas was as big as the sky.

With kind regards,

Yours sincerely
**(Dr. Ramkumar Mukhopadhyay)**
Regional Secretary
Sahitya Akademi
Kolkata

***

## Regards from a friend

***Prashant Khanna***

It has been rightly said " Chance encounters are the best".

My first meeting with Prof. Rath was one such. It took place about 3 years ago in Delhi and it produced two strong but opposite reactions.

The first one was of a very great and happy surprise. Here was a person-of a rare kind these days-who conformed closely to the Socratic dictum that an unexamined life was not worth living. I felt he was a kindred soul who had delved deep into the ultimate questions of existence, answers to which he had found in a profound study of our ancient scriptures. Yet because he had thought on such issues on his own, his was more of a discovery than a mere ability to understand and reiterate. Even his masterly expositions reflected an originality and newness, clear outcomes of individual reflection and self-questioning.

The second reaction was one of regret tinged with sadness-sadness at the fact that I had met him so late in life and that too in circumstances which would not permit more frequent and longer meetings. However over the years, at least in his case, familiarity in a happy departure from usual practice, has bred admiration and fondness.

I have also had the privilege of listening to Prof. Rath recite some of his poems composed either directly in English or translated from the original Oriya and they reveal a strong streak of humanism and sensitivity to pain and misery.

Thinker, poet, exponent, a source of inspiration for his associates- Prof. Rath is all this and much more.

I am very happy that a felicitation volume is being brought out on his 75th birthday-an honour he richly deserves.

May God grant him many more years of fruitfulness and fulfillment, such is my earnest wish and sincere prayer.

Sri Aurobindo Ashram
Delhi Branch
New Delhi - 110 016

* * *

# PROF. CHANDRASEKHAR RATH - A TRIBUTE

***Ravindra Joshi***

Although he was known to our founder Shri Surendra Nath Jauhar, Prof. Rath's close association with the Ashram took place comparatively recently when we discovered in him an excellent speaker on the Aurobindonian lore and on spiritual themes in general. He has been one of our brilliant speakers, especially for the Sri Aurobindo Study Camps organized by us at Nainital.

In the year 1998, the theme for one of the Study Camps was Sri Aurobindo's magnum opus The Life Divine- a formidable subject ! The challenge was accepted by Prof. Rath. The difficult metapysical concepts taken up in the different chapters of th book were made comperatively easier to grasp in his brilliant and lucid discourses, using apt analogies and parables. It was perhaps the first time that such a difficult subject was handled so ably. He quoted copiously from ancient scriptures while building up an argument. Although the limited time made a hurried survery of the relatively easier parts of the rather bulky book unavoidable, he was able to bring out the basic ideas.

In 1999, the theme for his camp was 'The Mother as a Guidebook for the Practice of Sri Aurobindo's Yoga'. With his lucid and insightful exposition, illustrated with apt images and anecdotes, Prof. Rath made a deep impression on his intense audience. There was a lively interaction and he gave satisfying answers to participants' quetsions. We were able to study the 'great small book' of Sri Aurobindo in its entirety, enjoy its poetic beauty and benefit from the revelations and guidance of the Master.

In the year 2000, the participants of the first camp studied the Supramental Mafifestation upon Earth, a collection of essays written by Sri Aurobindo, perhaps one of his last writings. Prof . Rath took up the challenge of expounding on the rather difficult subject -matter through his lucid discourses. He has a way of putting across subtle and abstruse concepts through effective illustrations. He could hold the attention of

his audience with the help of his all-around knowledge and his vast store of parables.

He has also been a valued contributor to our quarterly magazine The Call Beyond.

Despite his knowledge and brilliance as a speaker, Prof. Rath has genuine humility, He is affable and has a sunny temperament. With his sharp wit and humour he is always good company.

Sri Aurobindo Ashram,<br>Delhi Branch<br>New Delhi - 110016

***

# ସେହି ଅନନ୍ୟ ବ୍ୟକ୍ତିତ୍ୱ

*ପ୍ରବୀଣା ମହାନ୍ତି*

ଦିନ, ବାର, ତିଥି ମୋର ମନେ ନାହିଁ । ଭୁବନେଶ୍ୱରସ୍ଥିତ ସର୍ଦ୍ଦାର ପଟେଲ୍ ହଲ୍ ପରିସରରେ ସେତେବେଳେ ଶ୍ରୀଅରବିନ୍ଦ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ର ଥାଏ । ସେଦିନ ପଟେଲ୍ ହଲରେ ଏକ ସଭା ଚାଲିଥାଏ । ବକ୍ତାଥାଆନ୍ତି ଶ୍ରୀଯୁକ୍ତ ଚନ୍ଦ୍ରଶେଖର ରଥ । ଶ୍ରୋତା ମଣ୍ଡଳୀରେ ଅନେକ ବିଶିଷ୍ଟ ବିଜ୍ଞଜନଙ୍କ ସହିତ ଥାଆନ୍ତି ଆମ ଅନୁଷ୍ଠାନ (ଶ୍ରୀଅରବିନ୍ଦ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ର)ର ଛାତ୍ରଛାତ୍ରୀମାନେ । ବକ୍ତାଙ୍କର ସୁଗମ୍ଭୀର ଭବ୍ୟ ଉପସ୍ଥିତି, ଗୁରୁଗମ୍ଭୀର କଣ୍ଠସ୍ୱର ଶ୍ରୋତାମାନଙ୍କୁ ଯେମିତି ମନ୍ତ୍ରମୁଗ୍ଧ କରିଦେଇଥାଏ । ମୁଁ ମଧ୍ୟ ଅଭିଭୂତ ହୋଇ ଶୁଣୁଥାଏ ତାଙ୍କର ଭାବୋଦ୍ଦୀପକ ଅଭିଭାଷଣ । ମୋ ପାଖରେ ବସିଥିବା ନର୍ସରୀ କ୍ଲାସରେ କୁନିଝିଅଟିଏ ମୋତେ ହଲାଇଦେଇ ବଡ଼ ବ୍ୟାକୁଳ କଣ୍ଠରେ କହିଲା, "ଅପା, ଇଏ କି ଗପ କହୁଛନ୍ତି, ମୁଁ କିଛି ବୁଝିପାରୁନାହିଁ ।" ମୁଁ ଓଠରେ ଆଙ୍ଗୁଠି ରଖି ତାକୁ ଚୁପ ରହିବାକୁ ଇଙ୍ଗିତ କରିଥିଲି । ବିସ୍ମିତ ହୋଇଥିଲି ଶ୍ରୋତାମଣ୍ଡଳୀ ମଧ୍ୟରେ ବସିଥିବା ଛୋଟ ଛୋଟ ପିଲାମାନଙ୍କର ମୁହଁକୁ ଚାହିଁ । ବକ୍ତାଙ୍କର ବକ୍ତବ୍ୟକୁ ହୃଦୟଙ୍ଗମ କରିବାର ସାମର୍ଥ୍ୟ ହୁଏତ ସେମାନଙ୍କର ନାହିଁ । କିନ୍ତୁ ସମଗ୍ର ପରିବେଶ ଯେଉଁଭଳି ଭାବରେ ମନ୍ତ୍ରମୟ ହୋଇଯାଉଛି—ସେଥିରେ ସମସ୍ତେ ସ୍ତମ୍ଭିତ, ଅଭିଭୂତ, ଏଥିରେ ସନ୍ଦେହ ନାହିଁ ।

ସେତେବେଳେ ମୁଁ ଅନୁଷ୍ଠାନରେ ଯୋଗ ଦେବାର ବେଶିଦିନ ହୋଇନଥାଏ । ଆମ ଶିକ୍ଷାନୁଷ୍ଠାନ ପରିସର ମଧ୍ୟରେ ଶ୍ରୀଯୁକ୍ତ ଚନ୍ଦ୍ରଶେଖର ରଥଙ୍କୁ ବିଭିନ୍ନ ସମୟରେ ଭେଟେ । ଅନୁଷ୍ଠାନର ପରିଚାଳନା ସହିତ ସଂପୃକ୍ତ ଥାଆନ୍ତି ସେ । ତାଙ୍କ ସହିତ ଦେଖାହେଲେ ମନରେ ସଂଭ୍ରମ ଜାତ ହୁଏ । ସଶ୍ରଦ୍ଧ ପ୍ରଣାମଟିଏ ଜଣାଇ ଆଡ଼େଇ ହୋଇ ଚାଲିଯାଏ ମୁଁ । ବାପ୍‌ରେ- କେଡ଼େ ବଡ଼ ମଣିଷଟିଏ —ଆକାର ପ୍ରକାରରେ, ଜ୍ଞାନ ଗାରିମାରେ, କୃତିତ୍ୱରେ, ବ୍ୟକ୍ତିତ୍ୱରେ ! ନିଜକୁ ବାମନଟିଏ ଭଳି ମନେହୁଏ ତାଙ୍କ ଆଗରେ । ଭରଷି କରି କଥା ପଦେ କହିବାକୁ ସାହସ ହୁଏନାହିଁ ।

ବିଶିଷ୍ଟ ସାହିତ୍ୟିକ ଶ୍ରୀଯୁକ୍ତ ମନୋଜ ଦାସଙ୍କର ଏକ ଭାଷଣ କାର୍ଯ୍ୟକ୍ରମ ଥାଏ ଆମ ବିଦ୍ୟାଳୟ ପରିସରରେ । ମନୋଜ ଦାସଙ୍କୁ ଶୁଣିବାପାଇଁ ଶ୍ରୋତାଙ୍କର ଅଜସ୍ର ଭିଡ଼ ହୋଇଥାଏ । ସେହି ସଭାରେ ସଭାପତିତ୍ୱ କରୁଥାଆନ୍ତି ଶ୍ରୀଯୁକ୍ତ ଚନ୍ଦ୍ରଶେଖର ରଥ । ମୋର ପରମ ସୌଭାଗ୍ୟ, ସେହି ସଭାମଞ୍ଚରେ ମୋର ଗୋଟିଏ ଉପନ୍ୟାସ 'ଏବେ ବି

ସୁନ୍ଦର ଧରା' ଶ୍ରୀଯୁକ୍ତ ମନୋଜ ଦାସଙ୍କ ଦ୍ୱାରା ଉନ୍ମୋଚିତ ହେଲା । ଆନନ୍ଦ ଓ ସଂକୋଚର ଫେଣ୍ଟାଫେଣ୍ଟି ଭାବ ନେଇ ମୁଁ ମଞ୍ଚ ଉପରକୁ ଯାଇ ମଞ୍ଚାସୀନ ଅତିଥିମାନଙ୍କୁ ପ୍ରଣାମ ଜଣାଇ ସେହି ପୁସ୍ତକର ପ୍ରଥମ କପିଟି ଗ୍ରହଣ କରିଥିଲି । ସେମାନଙ୍କୁ ମଧ୍ୟ ମୋର ସେହି ପୁସ୍ତକ ଖଣ୍ଡିଏ ଲେଖାଏଁ ଧରିଥିବାର ଦେଖିଲି । ଏଡ଼େ ବଡ଼ ବଡ଼ ସାହିତ୍ୟକ—ସେମାନେ କ'ଣ ମୋ ବହିଟି ପଢ଼ିବେ ? ପଢ଼ିବାପରେ ମୋତେ କିଛି କହିବେ କି ? ମନ ଭିତରେ ପ୍ରବଳ ଉତ୍କଣ୍ଠାଟିଏ ରହିଥାଏ । ମନୋଜ ଦାସ ତ ଦୂରରେ ରହନ୍ତି—ପଣ୍ଡିଚେରୀରେ । ତାଙ୍କ ସହିତ ଭେଟ ହୁଏନା ମୋର । କିନ୍ତୁ ଚନ୍ଦ୍ରଶେଖର ରଥଙ୍କ ସହିତ ବିଭିନ୍ନ ସମୟରେ ଭେଟ ହୁଏ । ଆମ ବିଦ୍ୟାଳୟର ପରିସରରେ ହେଉ ବା କୌଣସି ସାହିତ୍ୟ ସଭାରେ ହେଉ କିମ୍ବା ଅନ୍ୟ କେଉଁଠି—ତାଙ୍କୁ ଦେଖିଲା ମାତ୍ରେ ଭାବେ —ଏଇନା ବୋଧହୁଏ ସେ କହିବେ ମୋ ଉପନ୍ୟାସ ବିଷୟରେ । ସେ କିନ୍ତୁ ହସହସ ମୁହଁରେ ମୋର ସଭକ୍ତି ପ୍ରଣାମ ଗ୍ରହଣ କରନ୍ତି । ବିଭିନ୍ନ ପ୍ରସଂଗରେ କଥାବାର୍ତ୍ତା କରନ୍ତି । ମୁଁ ମଧ୍ୟ କ୍ରମେ ସାହସ କରି ନିକଟରେ ପ୍ରକାଶ ପାଉଥିବା ତାଙ୍କର କୌଣସି ଗଳ୍ପ ବିଷୟରେ ମୋର ପାଠକୀୟ ମନ୍ତବ୍ୟ ପ୍ରଦାନ କରେ । ଉଦାର ହୃଦୟରେ ସେ ତାହା ଗ୍ରହଣ କରନ୍ତି । ତାଙ୍କ ଗଳ୍ପ ଭଲ ଲାଗେ ବୋଲି ତାଙ୍କର ବହି କିଣେ । ପତ୍ରିକାମାନଙ୍କରୁ ତାଙ୍କର ଗଳ୍ପ ପଢ଼ି ମତାମତ ଜଣାଇବାରେ ମୁଁ ଆଦୌ ହେଳା କରେନାହିଁ । ମାତ୍ର ସେ ମୋର କୌଣସି ଲେଖା ବାବଦରେ କିଛି କହନ୍ତି ନାହିଁ ।

ମନ ଭିତରେ ଅଭିମାନ ଜମି ଜମି ଏତେ ପ୍ରଚଣ୍ଡ ହୋଇଯାଉଥିଲା ଯେ ଥରେ ପୁସ୍ତକମେଳା ପରିସରରେ ଅନ୍ୟମାନଙ୍କ ଉପସ୍ଥିତିରେ ମୋର କ୍ଷୋଭ ପ୍ରକାଶ ନକରି ରହିପାରିନଥିଲି । କହିଥିଲି,"ଆପଣମାନଙ୍କର ବହୁତ ଅହଂକାର । ଆପଣମାନେ ବଡ଼ ଲେଖକ ବୋଲି । ଆମେ ଆପଣଙ୍କୁ ମନ ଦେଇ ପଢ଼ିବୁ, ଆପଣଙ୍କର ଲେଖା ବିଷୟରେ ଆମର ମତାମତ ଜଣାଇବୁ । ମାତ୍ର ଆମମାନଙ୍କ ଭଳି ସାନ ଲେଖକମାନଙ୍କୁ ଆପଣମାନେ ଆଦୌ ପଢ଼ନ୍ତି ନାହିଁ । ପଢ଼ିଲେ ମଧ୍ୟ କେବେ ମୁହଁରେ ଭଲମନ୍ଦ ପଦେ ପ୍ରକାଶ କରନ୍ତି ନାହିଁ । ଜାଣିଛନ୍ତି—ଆପଣମାନଙ୍କର ପଦେ କଥାରେ ଛୋଟିଆ ଲେଖକଟିଏ କେତେ ଉତ୍ସାହିତ ହେବ—କେତେ ପ୍ରେରଣା ପାଇବ ? କାହିଁକି କରନ୍ତି ନାହିଁ ଏତିକି ?" ଗୋଟାଏ ଆବେଗରେ ତାଙ୍କୁ ଏଭଳି କହିଦେଇ ମୁଁ ନିଜେ ସଂକୁଚିତ ହୋଇଗଲି । ଏମିତି କଥା ମୁଁ ତାଙ୍କ ଭଳି ମଣିଷକୁ କେମିତି କହି ପାରିଲି ନିଜେ ବି ବିଶ୍ୱାସ କରିପାରୁନଥିଲି । ସାର୍ ହୁଏତ ଅବାକ୍ ହୋଇ ଯାଇଥିବେ । ସେ ପର୍ଯ୍ୟନ୍ତ ମୋତେ ସେ ଗୋଟେ ଶାନ୍ତଶିଷ୍ଟ, ଲଜ୍ଜାଶୀଳା ଝିଅ ବୋଲି ଭାବି ଆସିଥିବେ । ଡରି ଡରି ତାଙ୍କ ମୁହଁକୁ ଚାହିଁଲି । ଭାବିଥିଲି ପ୍ରଚଣ୍ଡ କ୍ରୋଧରେ ଲାଲ ପଡ଼ିଯାଇଥିବ ତାଙ୍କର ତୋଫା ଗୋରା ମୁହଁ । ସାର କିନ୍ତୁ

ହସୁଥିଲେ ଅମାୟିକ ଭାବରେ । ହସି ହସି କହିଲେ, ''ଏଥର ପଢ଼ିବି । ପଢ଼ି ସାରି କହିବି ।''

ସାର ଯେ ସତରେ ମୋ ବହି ପଢ଼ିବେ ଏବଂ ପଢ଼ିସାରି କିଛି ମନ୍ତବ୍ୟ ଦେବେ, ଏ ଆଶା ମୁଁ ରଖି ନଥିଲି, କୋଉ ଏମିତି ବିରାଟ ପ୍ରତିଭାମୟୀ ଲେଖିକାଟେ ଯେ ସାର୍ ସମୟ ନଷ୍ଟ କରି ମୋ ବହି ପଢ଼ିବେ, ପୁଣି ମୋତେ କହିବେ ! ମନରୁ ପୋଛି ଦେଇଥିଲି ସେ କଥା । ଥରେ ସ୍ୱର୍ଗତଃ ଗୋପାଳ ପଟ୍ଟନାୟକଙ୍କ ଘରେ ବାର୍ଷିକ ପାଠଚକ୍ର ସମ୍ମିଳନୀ ହେଉଥାଏ । ସେଇଠିକୁ ଶ୍ରୀଯୁକ୍ତ ଚନ୍ଦ୍ରଶେଖର ରଥ ଯାଇଥାଆନ୍ତି ବକ୍ତା ହୋଇ, ଶ୍ରୀଅରବିନ୍ଦଙ୍କ ଦର୍ଶନ ଏବଂ ସାହିତ୍ୟର ଜଣେ ବିଶିଷ୍ଟ ପ୍ରବକ୍ତା ସେ । ସଭାକାର୍ଯ୍ୟ ଆରମ୍ଭ ହେବାର ପ୍ରସ୍ତୁତି ଚାଲିଥାଏ । ମୋର ବନ୍ଧୁମାନଙ୍କ ସହିତ ମୁଁ ବସିଥାଏ ସାରଙ୍କଠାରୁ କିଛି ଦୂରରେ । ସାର୍ ମୋତେ ପାଖକୁ ଡାକିଲେ । ହସିଦେଇ କହିଲେ, ''ତୁମର ଉପନ୍ୟାସଟି ପଢ଼ିଲି । ଏକା ନିଃଶ୍ୱାସରେ ପଢ଼ି ଶେଷ କରିଦେଲି । ଏତିକି କହିଲେ ଯଥେଷ୍ଟ ହେବ ନା ଆଉ କହିବି ? ତୁମର ପୁରୁଷାୟିତ ନାରୀଚରିତ୍ରଟି ସତରେ ଖୁବ୍ ଚମତ୍କାର ହୋଇଛି ।'' ସାର୍ ଆଉ କ'ଣ କହୁଥିଲେ ମୁଁ ଶୁଣିବା ପୂର୍ବରୁ ତାଙ୍କର ପାଦଛୁଇଁ ପ୍ରଣାମ କଲି । ମୋର ଦୁଇ ଆଖି ଝାପସା ହୋଇଯାଇଥିଲା ଆନନ୍ଦାଶ୍ରୁର ଆବେଗରେ । କୃତଜ୍ଞ ବୋଧ କରୁଥିଲି ।

ଏ ଘଟଣାର କେତେଗୁଡାଏ ବର୍ଷ ଅତିକ୍ରାନ୍ତ ହୋଇଯାଇଛି । ସାରଙ୍କୁ ଦେଖିଲେ ଏଣିକି ମୋତେ ଭୟ ଲାଗେ ନାହିଁ କି ମନରେ ଅଭିମାନ ଆସେ ନାହିଁ । ଏକ ସ୍ୱତଃସ୍ଫୂର୍ତ୍ତ ଶ୍ରଦ୍ଧା ଏବଂ ଭକ୍ତିରେ ମଥା ନଇଁଯାଏ ତାଙ୍କ ନିକଟରେ । ଯେଉଁଦିନ ଠାରୁ ଜାଣିଲି ତାଙ୍କର ଜନ୍ମଦିନ କୁମାର ପୂର୍ଣ୍ଣମୀରେ ସେହିବର୍ଷ ଠାରୁ ତାଙ୍କୁ ଜନ୍ମଦିନରେ ଶୁଭକାମନା ଜଣାଇବାକୁ ପ୍ରତ୍ୟେକ ବର୍ଷ ଆମେ ପହଞ୍ଚୁ । ନିମନ୍ତ୍ରଣର ଅପେକ୍ଷା ରଖୁନାହୁଁ । ଚନ୍ଦ୍ରଶେଖର ରଥ କେବଳ ତାଙ୍କ ପରିବାରର ନୁହଁନ୍ତି- ସେ ଆମ ସମସ୍ତଙ୍କର ଅତି ଆପଣାର । ଆମ ସମସ୍ତଙ୍କର ଅତ୍ୟନ୍ତ ଗର୍ବ ଆଉ ଗୌରବର ହେତୁ ସେ । ତାଙ୍କର ମଙ୍ଗଳକାମନା କରିବା ପାଇଁ କାହାରି ଅପେକ୍ଷା କରିବାକୁ ପଡ଼େନାହିଁ । ଆମମାନଙ୍କୁ ଦେଖିଲେ ସେ ମଧ୍ୟ ଖୁବ୍ ଖୁସି ହୁଅନ୍ତି- ନିଜ ପିଲାଙ୍କୁ ଭେଟିବା ପରି ମନେ ହୁଅନ୍ତି ।

ନିକଟ ଅତୀତରେ ମୋର ଏକ ଗଳ୍ପସଂକଳନ ''ଜହ୍ନର ଠିକଣା''ର ଉନ୍ମୋଚନ ଉତ୍ସବରେ ଉନ୍ମୋଚକ ହୋଇଥିଲେ ଶ୍ରୀଯୁକ୍ତ ଚନ୍ଦ୍ରଶେଖର ରଥ । 'ଚନ୍ଦ୍ରଶେଖର'ଙ୍କ ବ୍ୟତୀତ ଜହ୍ନର ଠିକଣା ଆଉ କିଏ କହିପାରିବ ? ଯୋଉଦିନ ସାରଙ୍କୁ ପୁସ୍ତକ ଉନ୍ମୋଚନ କରିବାକୁ ଅନୁରୋଧ କରିବାକୁ ଯାଇଥିଲି ସାର୍‌ଙ୍କର ସ୍ୱାସ୍ଥ୍ୟର ଅବସ୍ଥା ଭଲ ନଥିଲା । ସୁସ୍ଥ ହୋଇଗଲେ

ଉତ୍ସବରେ ପହଞ୍ଚିବେ ବୋଲି ସେ କହିଥିଲେ ଏବଂ କୌଣସି ଭାଷଣ ଦେବେନାହିଁ ବୋଲି ମଧ୍ୟ ଜଣାଇ ଦେଇଥିଲେ । "ଆପଣଙ୍କର ଉପସ୍ଥିତି ହିଁ ଆମ ପାଇଁ ଯଥେଷ୍ଟ" ବୋଲି ମୁଁ କହିଥିଲି । ଆମ ସମସ୍ତଙ୍କୁ ଆଶ୍ଚର୍ଯ୍ୟ କରି ଉତ୍ସବ ଆରମ୍ଭ ହେବାର ଯଥେଷ୍ଟ ପୂର୍ବରୁ ସାର୍ ପହଞ୍ଚିଯାଇଥିଲେ ଇଉ୍କଲ୍ ହାଉସ୍ ଅଡିଟୋରିୟମ୍‌ରେ । ସେଦିନ ଯେଉଁମାନେ ସେଠାରେ ଉପସ୍ଥିତ ଥିଲେ ସେହି ଉତ୍ସବର ଅନନ୍ୟତା ବିଷୟରେ ଉପଲବ୍ଧି କରିଥିବେ । ବର୍ଷଣମୁଖର ସେହି ସନ୍ଧ୍ୟାରେ ପ୍ରଦୀପ ପ୍ରଜ୍ୱଳନ କରି ଉତ୍ସବର ଅୟମାରମ୍ଭ କରିଥିଲେ ସାର୍ । ଶାସ୍ତ୍ରୀୟ ସଙ୍ଗୀତ ଶିଳ୍ପୀ ଦେବେନ୍ଦ୍ର ନାରାୟଣ ଶତପଥୀଙ୍କର ଭାବଗମ୍ଭୀର କଣ୍ଠରେ ସରସ୍ୱତୀ ବନ୍ଦନା ସମସ୍ତଙ୍କୁ ସମ୍ମୋହିତ କରି ଦେଇଥିଲା । ତା'ପରେ ଫୁଲମାନଙ୍କ ଗହଣରୁ 'ଜହ୍ନର ଠିକଣା' ବାହାର କରିଥିଲେ ଚନ୍ଦ୍ରଶେଖର । ଆଦୌ କିଛି କହିବେ ନାହିଁ ବୋଲି ପୂର୍ବରୁ ଜଣାଇଦେଇଥିବା ସତ୍ତ୍ୱେ ତାଙ୍କର ସେଦିନର ସଂକ୍ଷିପ୍ତ ଭାଷଣ ଥିଲା ଅପୂର୍ବ, ଅସାମାନ୍ୟ । ପାଠକମାନଙ୍କର ଅବଗତି ନିମନ୍ତେ ସେହି ଚମତ୍କାର ଭାଷଣଟିକୁ ମୁଁ ଏଠାରେ ଉପସ୍ଥାପିତ କରିବାର ଲୋଭ ସମ୍ବରଣ କରିପାରୁନାହିଁ ।

ଅଭିଭାଷଣଃ (ଟେପ୍‌ରେକର୍ଡରରୁ ସଂଗୃହୀତ) ତା ୨୪.୬.୨୦୦୧

ଏ ସାରସ୍ୱତ ସମବେଶରେ ସମବେତ ସୁଧୀବର୍ଗ-ସମଗ୍ର ପରିବେଶଟି ଏତେ କବିତାମୟ ହୋଇଛି, ଏତେ ମନ୍ମୟ ହୋଇଛି ଯେ ତାହା ଏଠାରେ ଉପସ୍ଥିତ ଯେ କେହି ବ୍ୟକ୍ତି ମଧ୍ୟ ଅନୁଭବ କରୁଥିବ ବୋଲି ମୋର ବିଶ୍ୱାସ । ଯଦି ଆକାଶରୁ କିଛି ମେଘର ଅବଗୁଣ୍ଠନ ଅପସାରିତ କରିନିଆଯାଏ ତାହେଲେ ନୀଳାକାଶରେ ଆପଣ ଜହ୍ନର ଠିକଣା ପାଇବେ । ଏଣୁ ଏ ପୁସ୍ତକର ଉନ୍ମୋଚନ ମେଘାବରଣକୁ ଅପସାରିତ କଲାପରି । ସେ କାର୍ଯ୍ୟଟି ଯିଏ କରିଥାଆନ୍ତା ସେ ହେଉଛି ଗନ୍ଧବହ, ବାୟୁ । ସେ ଭୂମିକା ଆଜି ମୋତେ ଦିଆଯାଇଛି ଏବଂ ଭୂପୃଷ୍ଠରେ ଥାଇ ମୁଁ ସେ ଭୂମିକା ନିର୍ବାହ କରୁଛି-ସୁଧୀଜନେ, ତାକୁ ସ୍ୱୀକାର କରିବେ ।

ଗଳ୍ପ ରଚନା କଲାବେଳେ ସ୍ରଷ୍ଟା ତା ନିଜ ଭିତରୁ ଉପାଦାନ ନେଇ ଯାହା ଗଢ଼େ-ତା'ର ସଂକଳ୍ପ ଦେଇ ଯାହାକୁ ଠିଆ କରାଏ, ସେ ଏକ ସ୍ୱତନ୍ତ୍ର ପରିଚୟ ନେଇ ସ୍ୱୀକୃତି ଦାବି କରେ । ବହୁ ଚରିତ୍ର ଏହିପରି ସାହିତ୍ୟ ଭୂମିରେ ଆସି ଉଭା ହୋଇଛନ୍ତି । ସେମାନଙ୍କୁ ସ୍ୱୀକୃତି ବି ମିଳିଛି । ସ୍ରଷ୍ଟା ସେମାନଙ୍କୁ ଆପଣେଇ ନିଏ ଅପତ୍ୟରେ; କାରଣ ସେମାନେ ତା'ର ଉପାଦାନରେ ତିଆରି, ତା'ର ଅଂଶବିଶେଷ । ବେଳେବେଳେ ଏମିତି ହୁଏ ଯେ ସୃଷ୍ଟି କିଛି ମାତ୍ରାରେ ତା'ର ସ୍ରଷ୍ଟାକୁ ଅତିକ୍ରମ କରିଯାଏ । ଆମେ ଯଦି କହୁ ଏଇ ନୀଳ

ପାହାଡ଼ର ସ୍ରଷ୍ଟା, ଏଇ ଝରଣାର ସ୍ରଷ୍ଟା, ଏଇ ଉପତ୍ୟକା, ଏଇ ଫୁଲର ସ୍ରଷ୍ଟା ହେଉଛନ୍ତି ସିଏ, ତାଙ୍କର ନାଁ, ଗାଆଁ, ଠିକଣା କିଛି ନାହିଁ, ଏଇ ସୃଷ୍ଟି ମାଧ୍ୟମରେ ହିଁ ଆମେ ତାଙ୍କର ପରିଚୟ ଦେଉଛୁ; ସେତେବେଳେ ସେହି ପରମସ୍ରଷ୍ଟା ମୁଗ୍ଧ ହୁଅନ୍ତି ସତ, କିଛିମାତ୍ରାରେ ବିସ୍ମିତ ମଧ୍ୟ ହୁଅନ୍ତି । କାରଣ ସ୍ରଷ୍ଟା ଭିତରେ ଯେଉଁ ଅନନ୍ତ ସମ୍ଭାବନା ଥାଏ, ସେ ସମ୍ଭାବନା ଭିତରୁ କାଣିଚ୍ଏ ମାତ୍ର ପ୍ରକାଶିତ ହୋଇଥାଏ ସୃଷ୍ଟି ମାଧ୍ୟମରେ । ସୃଷ୍ଟି ରୂପାୟିତ ହୁଏ, ସୃଷ୍ଟି ଶବ୍ଦାୟିତ ହୁଏ ସୃଷ୍ଟି ଆକାରବନ୍ତ ହୁଏ ସୀମା ଭିତରେ ସ୍ରଷ୍ଟାକୁ ପ୍ରକାଶ କରି; କିନ୍ତୁ ସେ କସ୍ମିନ୍‌କାଳେ ସ୍ରଷ୍ଟା ସହିତ ସମପରିମିତ ହୋଇପାରେନା । ସ୍ରଷ୍ଟା ମହତ୍ତର, ବୃହତ୍ତର, ଗଭୀରତର ସୃଷ୍ଟି ଅପେକ୍ଷା, କାରଣ ତା' ଭିତରେ ଥାଏ କର୍ତ୍ତୁଂ-ଅକର୍ତ୍ତୁଂ- ଅନ୍ୟଥା କର୍ତ୍ତୁଂର ସମ୍ଭାବନା- ଅର୍ଥାତ୍ ଏପରି କରିପାରେ- ଏପରି ନ କରିପାରେ- କିଛି ମଧ୍ୟ ନକରିପାରେ ଏବଂ ଏହାଠୁ ଅତ୍ୟନ୍ତ ଭିନ୍ନ ତଥା ଉନ୍ନତ କିଛି କରିପାରେ । ଏ ସମସ୍ତ ସମ୍ଭାବନା ଯାହା ଭିତରେ ଲହରିତ ହେଉଥାଏ, ସେ ହେଉଛି ସ୍ରଷ୍ଟା ଏବଂ ସ୍ରଷ୍ଟା ସହିତ ସମପରିମିତ ହେବାର ସମ୍ଭାବନା ସୃଷ୍ଟିର ନାହିଁ । କିନ୍ତୁ ସୃଷ୍ଟି ଯେଉଁ ଗୌରବ ଅର୍ଜନ କରିଥାଏ ତାହା ବେଳେବେଳେ ଆମକୁ ବିସ୍ମିତ କରେ । ତାକୁ ଦେଖି ଆମେ ସ୍ରଷ୍ଟା ବିଷୟରେ କିଛି କଳ୍ପନା କରୁ ।

ମୋର ମନେ ଅଛି- କିଛିବର୍ଷ ତଳେ ଲେଖିକାମାନଙ୍କ ଏକ ସମାବେଶରେ ମୁଁ କ୍ଷୋଭ ପ୍ରକାଶ କରି କହିଥିଲି ଯେ ନାରୀ ଜୀବନରେ ଏତେ ଐଶ୍ୱର୍ଯ୍ୟ ରହିଛି, ଏତେ ସମ୍ପଦ ରହିଛି, ଏତେ ଗୌରବ ରହିଛି, ତାକୁ ସାହିତ୍ୟ ମାଧ୍ୟମରେ ଆପଣ ପ୍ରକାଶ କରନ୍ତେ ନାହିଁ ? ମୋତେ ଲାଗୁଛି ଆପଣମାନେ ଏବେ ମଧ୍ୟ ପୁରୁଷ ଦୃଷ୍ଟିରେ ହିଁ ନାରୀକୁ ଦେଖି ଲାଗିଛନ୍ତି । ଏଥିରୁ ମୁକ୍ତ ହୋଇ ପାରନ୍ତେ ନାହିଁ ? ନାରୀ ନାରୀ ବିଷୟରେ ନାରୀ ଭଳି ଲେଖିପାରନ୍ତା ନାହିଁ ? ସେହି କ୍ଷୋଭ ପ୍ରକାଶ କରିବାର ଅନେକ ବର୍ଷ ପରେ ମୁଁ ସନ୍ତୋଷଲାଭ କରୁଛି- ଅତ୍ୟନ୍ତ ସନ୍ତୋଷଲାଭ କରୁଛି ଯେ ମନସ୍ୱିନୀ, ବିଦୂଷୀ ପ୍ରବୀଣାଙ୍କ ଭଳି କିଛି ଲେଖିକା ସେ ପ୍ରତିଶ୍ରୁତି ପାଳନ କରିଛନ୍ତି ଏବଂ ତାଙ୍କ ଲେଖନୀରେ ନାରୀର ଯେଉଁ ଅନ୍ତର୍ନିହିତ ସୌନ୍ଦର୍ଯ୍ୟ, ତାହା ପ୍ରକଟିତ ହୋଇଛି ।

ଦଶମ ମହାବିଦ୍ୟାରେ ଯେଉଁମାନେ ଭୁବନେଶ୍ୱରୀଙ୍କ ରୂପ ଦେଖିଥିବେ, ସେଠି ଅନୁଭବ କରିଥିବେ ଭୁବନେଶ୍ୱରୀ ସେଠାରେ ଏକ ମହୀୟସୀ ମାତୃରୂପା ସ୍ୱରୂପ ନେଇ ବିରାଜମାନ ଏବଂ ତାଙ୍କ ପାଖରେ ଲାଳିତ ଶିଶୁ ପରି ଭୁବନେଶ୍ୱର । ତାଙ୍କ ହାତ ପାପୁଲିରେ ସେ ଭୁବନେଶ୍ୱରଙ୍କୁ ଧରିଛନ୍ତି । ଯେଉଁଠି ଗଳ୍ପ ବା ଉପନ୍ୟାସ ନାରୀପ୍ରଧାନ ହୋଇଯାଏ-

ସେଠାରେ ଆମେ ଭୁବନେଶ୍ୱରୀଙ୍କ ରୂପ ଦେଖିବାକୁ ପାଉ । ପୁଣି ଶ୍ରୀମନ୍ଦିରରେ ଲକ୍ଷ୍ମୀଙ୍କ ଦର୍ଶନ କରିଗଲାବେଳେ ବାମ ପାଖରେ ଲକ୍ଷ୍ମୀନୃସିଂହ ରୂପ ଆମେ ଦେଖିବାକୁ ପାଉ । ନୃସିଂହ ସେଠି ନିଜର ବିଭୂତିରେ ପ୍ରକାଶିତ ହୋଇଛନ୍ତି ଏବଂ ତାଙ୍କ ହାତ ପାପୁଲିରେ ଲକ୍ଷ୍ମୀ ବିରାଜମାନ । ବେଳେବେଳେ ଗଳ୍ପ ଉପନ୍ୟାସ ପୁରୁଷପ୍ରଧାନ ହୋଇଥାଏ- ସେଠି ନାରୀ ହୋଇଯାଏ ଗୌଣ । କେବେ କେବେ ଆମେ ସିଂହାସନରେ ଯୁଗଳ ମୂର୍ତ୍ତି ଦେଖୁ- ବେଳେବେଳେ ଅର୍ଦ୍ଧ ନାରୀଶ୍ୱର ଦେଖୁ । ସେହିପରି ସାହିତ୍ୟରେ ମଧ୍ୟ ସୃଷ୍ଟି ହୋଇଥାଏ ।

ଏଠାରେ ଯେଉଁ ସାହିତ୍ୟାନୁରାଗୀ ଅଛନ୍ତି, ଯେଉଁ ସମାଲୋଚକ ଅଛନ୍ତି, ସେମାନଙ୍କୁ ଏହି ଗଳ୍ପଗ୍ରନ୍ଥଟି ଶ୍ରଦ୍ଧାର୍ପିତ ହେଲା । ଏବେ ଗୋଟାଏ ରୀତି ଆସିଛି-ଲୋକାର୍ପଣର ରୀତି- 'ଆମେ ଏହାକୁ ଲୋକାର୍ପିତ କଲୁ । ମନରେ ବେଳେ ବେଳେ ପ୍ରତିବାଦ ଉଠୁଥିଲା ଯେ ଯେ ତ କୌଣସି ସେତୁ ନୁହେଁ ବା ସଡ଼କ ନୁହେଁ ଯେ ତାକୁ ଆମେ ଲୋକାର୍ପିତ କରିଦେବୁ ! ସାହିତ୍ୟ ସହୃଦୟ ପାଠକମାନଙ୍କ ପାଇଁ-ଗୁଣଗ୍ରାହୀ ପାଠକମାନଙ୍କ ପାଇଁ ଉଦ୍ଦିଷ୍ଟ, ନିର୍ବାଚିତ କେତେଜଣ ରସିକ ଗ୍ରାହକଙ୍କ ଲାଗି ଉଦ୍ଦିଷ୍ଟ, ଯାହାଙ୍କ ପାଖରେ ତାହା ଶ୍ରଦ୍ଧାର୍ପିତ ହେବ । ତେଣୁ ଏଇ ଗଳ୍ପ ସଂକଳନଟି ଲୋକାର୍ପିତ ହେଉ ଏବଂ ଯାହାଙ୍କ ଦ୍ୱାରା ଲେଖିକା ଅନୁପ୍ରାଣିତ ହୋଇଛନ୍ତି । ଯାହାଙ୍କର ଆଶୀର୍ବାଦ ଲାଭ କରି ଏହି ରଚନା ସବୁ ସୃଷ୍ଟି କରିଛନ୍ତି, ତାଙ୍କ ପାଖରେ ଅର୍ପିତ ହେଉ; ଏଣୁ ସାରଦାର୍ପିତ ହେଉ ।

ମୁଁ ଏଥିରେ ଯାହା ପଢ଼ିଛି, ଯାହା ଅନୁଭବ କରିଛି, ମାତ୍ର ଦୁଇ ତିନୋଟି ବାକ୍ୟରେ . ପ୍ରକାଶ କରିବି । ମୋତେ ଲାଗିଛି ଯେ, ଏଠି ନାରୀଭିତରେ ଥିବା ଔଜ୍ଜ୍ୱଲ୍ୟ, ମୁକ୍ତାଫଳ ପରି ତା'ର ସ୍ୱଚ୍ଛତା, ତା'ର ପବିତ୍ରତା ଏବଂ ତା'ର କ୍ଷମାଶୀଳତା ମୋତେ ଅଭିଭୂତ କରିଛି । ପୁରୁଷକୁ ଏତେ ମାତ୍ରାରେ ସେ ଗ୍ରହଣ କରିପାରେ, ଏତେ ଉଦାର ଭାବରେ ଗ୍ରହଣ କରିପାରେ । ଏତେମାତ୍ରାରେ କ୍ଷମା ଦେଇପାରେ, ତା'ର ସମଗ୍ର ବକ୍ରତାକୁ ଆଉଁସି ଦେଇ ଋଜୁ କରି ଦେଇପାରେ- ଏ କ୍ଷମତା ପ୍ରବୀଣା ତାଙ୍କର ଚରିତ୍ରମାନଙ୍କୁ ଦେଇଛନ୍ତି । ଗୋଟିଏ ମାତ୍ର ହସରେ ଯିଏ ଦିଗ୍‌ବିଜୟ କରିପାରେ, ଏପରି ନାରୀଚରିତ୍ର ସେ ସୃଷ୍ଟି କରିପାରିଛନ୍ତି । ସେଇ ଚରିତ୍ରଗୁଡିକ ମଧ୍ୟରେ ଯେଉଁ ଶୁଦ୍ଧତା ଅଛି, ଯେଉଁ ଆଧ୍ୟାତ୍ମିକତାର ସ୍ପର୍ଶ ଅଛି, ସତେ ଅବା କୌଣସି ଏକ ମହତ ଲୋକରୁ ଜ୍ୟୋତ୍ସ୍ନାବତରଣ କରିଆସି ସେଇ ନାରୀମାନଙ୍କର ରୂପ ଧାରଣ କରିଛ । ଏତେ ମାତ୍ରାରେ ପବିତ୍ର ପବିତ୍ର ଲାଗେ ସେ ଚରିତ୍ରର ଆଚରଣ, ତା'ର ସମଗ୍ର ବିନ୍ୟାସ, ମନେହୁଏ ଯେପରି ଏହାର ଅପେକ୍ଷା ଥିଲା ବହୁଦିନ ଧରି ଓଡ଼ିଆ ସାହିତ୍ୟରେ ଏବଂ ସେ ଅଭାବ ସେ ପୂରଣ କରିଛନ୍ତି । ମୁଁ ଆଶା

କରୁଛି ଯେ, ଉତ୍କଳଭାରତୀଙ୍କର ପାଦପଦ୍ମରେ ଏହି ଗଳ୍ପ ଗ୍ରନ୍ଥଟି ସାରଦାର୍ପିତ ହେଉ । ଆପଣମାନେ ତାକୁ ସ୍ୱୀକାର କରନ୍ତୁ ।''

ସାର୍‌ଙ୍କର ଏହି ଅଭିଭାଷଣ ଶୁଣିବାରେ କୃତଜ୍ଞତାର ନଈଟିଏ ହୋଇ ଝରିଯିବାଭଳି ଅନୁଭବ କରୁଥିଲି ମୁଁ । ମୋ ଭିତରେ ଆତ୍ମବିଶ୍ୱାସର ଭିତ୍ତିଟିକୁ ଆହୁରି ସୁଦୃଢ଼ କରି ଦେଇଥିଲା — ତାଙ୍କର ସେଦିନର ସେହି ବକ୍ତବ୍ୟ । ତାଙ୍କର ସ୍ନେହଶୀଳ, ଉଦାର ହୃଦୟର ତୁଳନା ନାହିଁ । ନିକଟରେ ମୋର ଡକ୍ଟରେଟ୍ ପ୍ରାପ୍ତିର ସମ୍ବାଦ ଖବରକାଗଜରେ ପ୍ରକାଶ ପାଇବା ପରେ ସର୍ବପ୍ରଥମ ଅଭିନନ୍ଦନ ଜଣାଇଥିଲେ ସାର୍ ଟେଲିଫୋନ୍ କରି । ସ୍ନିଗ୍ଧ ସକାଳର ସେଇ ମୁହୂର୍ତ୍ତଟି ମୋ ପାଇଁ ଅବିସ୍ମରଣୀୟ ହୋଇରହିଥିବ । ଏଇ କୁମାରପୂର୍ଣ୍ଣମୀରେ ସାର୍‌ଙ୍କୁ ପଚସ୍ତରୀ ବର୍ଷ ହେବ । ଗୁରୁଜନମାନଙ୍କର ବୟସ ହିସାବ କରିବାକୁ ମୋତେ ଭୟ ଲାଗେ । ସାର୍‌ଙ୍କ ଜୀବନରେ ଆହୁରି ଅନେକ କୁମାରପୂର୍ଣ୍ଣିମା ଜନ୍ମଦିନର ଶୁଭ ଅଭିନନ୍ଦନ ଘେନି ଉପସ୍ଥିତ ହେଉ । ଦୀର୍ଘଜୀବୀ ହୁଅନ୍ତୁ ସେ । ତାଙ୍କ ଲେଖନୀ ଆହୁରି ଅନେକ ଶିଖର ଲଘଂନ କରୁ, ସବୁ ଦୀର୍ଘ ରାତ୍ରିକୁ ଅତିକ୍ରମ କରି ଅନେକ ସକାଳର ସୂର୍ଯ୍ୟୋଦୟକୁ ଆମନ୍ତ୍ରଣ କରି ନେଇ ଆସୁ ।

ଶ୍ରୀଅରବିନ୍ଦ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ର
ମାତୃବିହାର, ତପୋବନ
ଖଣ୍ଡଗିରି, ଭୁବନେଶ୍ୱର-୩୦

***

# ଅନ୍ୟଜଣେ ନଚିକେତା - ପ୍ରେତଲୋକରେ ଶ୍ରୀଯୁକ୍ତ ରଥ

ଡକ୍ଟର ପୂର୍ଣ୍ଣେନ୍ଦୁ ତ୍ରିପାଠୀ

ସଂସ୍କାରରେ ନିଷ୍ଠା, ଭାଷା ଓ କଥାରେ ମାର୍ଜିତ ରୁଚି । ଗାମ୍ଭୀର୍ଯ୍ୟ ଆଚରଣ, ସାଧନାର ଐକାନ୍ତିକ ପରିଚ୍ଛନ୍ନତା, ତପୋନିଷ୍ଠ ଚନ୍ଦ୍ରଶେଖର ରଥଙ୍କୁ କରିଛି ମହିମାନ୍ୱିତ । ଓଡ଼ିଆ ସାହିତ୍ୟରେ ପଣ୍ଡିତ ନୀଳକଣ୍ଠ ଦାସଙ୍କ ପରବର୍ତ୍ତୀ ପର୍ଯ୍ୟାୟରେ ଯେଉଁ କେତେଜଣ ସାହିତ୍ୟିକ ଓଡ଼ିଆ ଭାଷାକୁ ଉର୍ଜ୍ୱସ୍ୱଳ କରିଛନ୍ତି, ସେମାନଙ୍କ ମଧ୍ୟରେ ସ୍ୱର୍ଗତ ସୁରେନ୍ଦ୍ର ମହାନ୍ତି ଓ ଚନ୍ଦ୍ରଶେଖର ରଥ ହିଁ ପଥାରୂଢ଼ ହୁଅନ୍ତି ।

ଔପନ୍ୟାସିକ, ଗାଳ୍ପିକ ଓ ପ୍ରାବନ୍ଧିକ ଚନ୍ଦ୍ରଶେଖର ରଥ ସାମ୍ପ୍ରତିକ କାଳରେ ଆପଣାର ଉନ୍ନତ ଓ ମାର୍ଜିତ ଗଦ୍ୟଶୈଳୀ ଓ ନିପୁଣ କଥକତା ଲାଗି ବିଶେଷ ପରିଚିତ ଓ ଆଦୃତ । ଆଧୁନିକ ମଣିଷର ଦ୍ୱନ୍ଦ୍ୱ ଓ ସଂଘାତର ବିଦଗ୍ଧ ଚିତ୍ର ସହ ଏକ ଉନ୍ନତ ରୁଚିଶୀଳ ସମ୍ଭ୍ରାନ୍ତ ମାନସ-ବିଳାସର ପରିଚୟ ରଥ ମହାଶୟଙ୍କର ସୃଷ୍ଟିରେ ଉପଲବ୍ଧ ହୁଏ । ପ୍ରଫେସର ଡକ୍ଟର ବାଉରିବନ୍ଧୁ କରଙ୍କ ଭାଷାରେ — ''ଶାଣିତ ଚିନ୍ତାର ଦୀପ୍ତି, ମାର୍ଜିତ କଳ୍ପନାର ଅଭିବ୍ୟକ୍ତି, ଚିତ୍ରଧର୍ମୀ ପ୍ରକାଶ ଭଙ୍ଗୀ, କବିତ୍ୱପୂର୍ଣ୍ଣ ବର୍ଣ୍ଣନା, ଆବେଗର ଉଷ୍ମସ୍ପର୍ଶ, ସ୍ତରେ ସ୍ତରେ ନାଟକୀୟ ଛଟା ଓ ଆତ୍ମ ପ୍ରତ୍ୟୟପୂର୍ଣ୍ଣ ଆନ୍ତରିକ ଭାଷା'' ଚନ୍ଦ୍ରଶେଖର ରଥଙ୍କ ସ୍ୱାତନ୍ତ୍ର୍ୟ । ଜାଗତିକ ଜଞ୍ଜାଳର ସୀମା ଅତିକ୍ରମକରି ଅଲୌକିକ ଭାବରାଜ୍ୟର କଥା କହିବାରେ ଓ ଭାରତୀୟ ସଂସ୍କୃତି ଓ ଉପନୀଷଦୀୟ ପରଂପରାରେ ଉଦ୍‌ବୁଦ୍ଧ ଶ୍ରୀଯୁକ୍ତ ରଥ ଏକ ବୃହତ୍ତର ଜୀବନ ଦର୍ଶନର ଅନ୍ୱେଷଣରେ ବ୍ୟସ୍ତ ଓ ବିବ୍ରତ ଥିବା ପରି ମନେହୁଅନ୍ତି । ପରଂପରା ପ୍ରତି ମୋହ ଶ୍ରୀଯୁକ୍ତ ଚନ୍ଦ୍ରଶେଖର ରଥଙ୍କ କଥନରେ ସୁଲଭ୍ୟ । ଦୃଶ୍ୟମାନ ଜଗତ ଓ ମଣିଷର ଆତ୍ମା ଭିତରେ ଯେଉଁ ଚିର ରହସ୍ୟମୟ ସମ୍ପର୍କ ବିଦ୍ୟମାନ, ତାକୁ ଅତି ସୁନ୍ଦର ଭାବରେ ବିଭିନ୍ନ ପ୍ରବନ୍ଧ, ରମ୍ୟରଚନା ଓ ଉପନ୍ୟାସରେ ସେ ବର୍ଣ୍ଣନା କରିଛନ୍ତି । ରଥସପ୍ତକର ପ୍ରାକ୍‌ଭାଷରେ ତେଣୁ ସେ କହନ୍ତି, ''ବନ୍ଦୀଶାଳାରେ ମହାପୁରୁଷ ଜନ୍ମଲାଭ କଲାପରି ସାହିତ୍ୟ ସୃଷ୍ଟି ତାର ସ୍ରଷ୍ଟାଙ୍କୁ ଅତିକ୍ରମ କରିଯାଏ । ନିମିତ୍ତଭଳି ଉଭୟ ଲେଖକ ଓ ଲେଖନୀକୁ ବ୍ୟବହାର କରି ସୂକ୍ଷ୍ମଭୂମିରୁ ଯେ ଅବତରଣକରେ ସେ ଆଉ କାହାର ନିର୍ଦ୍ଦେଶରେ ଆସିଥାଏ । ଶୂନ୍ୟଭୂମିର ପକ୍ଷୀମାନେ ହଠାତ୍ କୌଣସି ଡାଳ ଉପରକୁ ଓହ୍ଲେଇ ଆସନ୍ତି ସ୍ୱଇଚ୍ଛାରେ । ସେଥିପାଇଁ ସେ ଗଛଟି ନିଜକୁ ଧନ୍ୟମନେକରେ, ପୂର୍ଣ୍ଣମନେ କରେ । ତା' ଡାଳରେ ଫଳଟିଏ ଓହଳିବା ଯାହା,

ପକ୍ଷୀଟିଏ ବସିବା ତାହା ନୁହେଁ । ଅନ୍ୟମାନେ ପକ୍ଷୀଟିକୁ ତା'ଡାଳରେ ଆବିଷ୍କାର କରନ୍ତି, ଚିହ୍ନଟ କରନ୍ତି, ସେ କିନ୍ତୁ ବିନୟର ସହ ସତ୍ୟ ସ୍ୱୀକାର କରେ ।''

ଶ୍ରୀଯୁକ୍ତ ଚନ୍ଦ୍ରଶେଖର ରଥଙ୍କ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ପ୍ରଥମ ଆବିର୍ଭାବ ଘଟେ ୧୯୬୨ରେ । ପ୍ରାରମ୍ଭ ସମୟରୁ ସାଂପ୍ରତିକ କାଳ ପର୍ଯ୍ୟନ୍ତ ତାଙ୍କର ଲେଖନୀ ଅଜସ୍ରସ୍ରାବୀ ଓ ପ୍ରତ୍ୟେକବର୍ଗରେ ସେ ଯଶସ୍ୱୀ ।

୧୯୬୩, ୧୯୬୭ ୧୯୭୨ରେ ବିଷୁବ ସମ୍ମାନ ଓ ପ୍ରଶଂସାପତ୍ର, ୧୯୭୯ରେ ଧରିତ୍ରୀ ସମ୍ମାନ, ୧୯୮୦ରେ ଉପନ୍ୟାସ 'ଅସୂର୍ଯ୍ୟ ଉପନିବେଶ' ପାଇଁ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର, ୧୯୮୧ 'ଅଶ୍ରୁତ ସ୍ୱର' ମୌଳିକ ନିବନ୍ଧ ସଂକଳନ ପାଇଁ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର, ୧୯୮୧, ସମ୍ରାଟ ଓ ଅନ୍ୟମାନେ କ୍ଷୁଦ୍ରଗଳ୍ପ ପାଇଁ ଶାରଳା ପୁରସ୍କାର, ୧୯୮୯ ସମ୍ବଲପୁର ବିଶ୍ୱବିଦ୍ୟାଳୟ ଭରତଚନ୍ଦ୍ର ସ୍ମାରକୀ ପୁରସ୍କାର, ୧୯୯୭ ଜଗନ୍ନାଥ ସମ୍ମାନ ଓ 'ସବୁଠାରୁ ଦୀର୍ଘରାତି' କ୍ଷୁଦ୍ରଗଳ୍ପ ପାଇଁ କେନ୍ଦ୍ରସାହିତ୍ୟ ଏକାଡେମୀ ପୁରସ୍କାର ଦ୍ୱାରା ସମ୍ମାନିତ ଶ୍ରୀଯୁକ୍ତ ରଥଙ୍କ କୃତି ଓ କୃତିତ୍ୱ ବହୁ ପଠିତ ଓ ଚର୍ଚ୍ଚିତ । ଶ୍ରୀଯୁକ୍ତ ରଥଙ୍କ କୃତୀରେ ଆମ୍ଭେମାନେ ମୁଖ୍ୟତଃ ଦେଖିବାକୁ ପାଉଁ ଭାରତୀୟ ଦର୍ଶନ, ସଂସ୍କୃତି, ପରଂପରା ଓ ଐତିହ୍ୟର ସାରସ୍ୱତ ପ୍ରବାହ ।

ଶ୍ରୀଯୁକ୍ତ ରଥଙ୍କ ଗଳ୍ପ, ଉପନ୍ୟାସ,ପ୍ରବନ୍ଧର ପ୍ରାୟ ବିଭିନ୍ନ ଦିଗକୁ ନେଇ କିଛି କିଛି ଆଲୋଚନା ହୋଇଛି । କିନ୍ତୁ, ଏଯାବତ୍ ତାଙ୍କର ସଦ୍ୟନୂତନ ପ୍ରକାଶିତ 'ମୃତ୍ୟୁ ଆରପାରିରୁ ସଙ୍କେତ' ଉପରେ ଆଲୋଚନା ହୋଇନାହିଁ । ଏ ଗ୍ରନ୍ଥଟି ଗ୍ରନ୍ଥମନ୍ଦିର ଦ୍ୱାରା ମାର୍ଚ୍ଚ ୨୦୦୩ରେ ପ୍ରକାଶ ଲାଭ କରିଛି । ଏ ଗ୍ରନ୍ଥଟିର ଅନେକ ଅଂଶ 'ସମ୍ବାଦ' ପୃଷ୍ଠାରେ କିଛି ବର୍ଷତଳେ ସାପ୍ତାହିକସ୍ତମ୍ଭ ଆକାରରେ ପ୍ରକାଶିତ ହୋଇଥିଲା । ସେ ସମୟରୁ ହିଁ ତାର ବିଭିନ୍ନ ଦିଗପ୍ରତି ମୁଁ ଆକର୍ଷିତ ହୋଇ ପଡ଼ିଥିଲି । ମୃତ୍ୟୁ ହୁଏ କାହିଁକି ? ମୃତ୍ୟୁ ପରେ ଆତ୍ମା ଯାଏ କୁଆଡ଼େ ? ମୃତ୍ୟୁପରେ ଜୀବନ ଅଛି କି ??? ମୃତ୍ୟୁ ଲୋକର ଅବସ୍ଥିତି କେଉଁଠି ?? ଏମିତି ଅନେକ ପ୍ରଶ୍ନର ଉତ୍ତର ପ୍ରାୟତଃ ଏହି ଗ୍ରନ୍ଥଟିରୁ ଉପଲବ୍ଧ ହୁଏ । ଦିନେ ନଚିକେତା ପ୍ରେତଲୋକ ଯାଇ ଯମ ଦେବତାଙ୍କୁ ସନ୍ତୁଷ୍ଟ କରିଥିଲା; କିନ୍ତୁ ସାଂପ୍ରତିକ ସମୟରେ ଶ୍ରୀଯୁକ୍ତ ରଥ ପ୍ରେତଲୋକର ପ୍ରେତମାନଙ୍କୁ ଆକୃଷ୍ଟକରି ଅନେକ ଅନାବିଷ୍କୃତ ତଥ୍ୟ ମାନବ ସମାଜପାଇଁ ଉପଲବ୍ଧ କରାଇଲେ ।

ଆତ୍ମାର କିଛି ସଂପର୍କରେ ଅବଧି ପ୍ରତ୍ୟେକେ ସନ୍ଦିହାନ । ଆତ୍ମା ଇନ୍ଦ୍ରିୟଗ୍ରାହ୍ୟ ନୁହେଁ, ବିଷୟୀଭୂତ ନୁହେଁ, ଏଣୁ ତାହା ପ୍ରମାଣିତ ନୁହେଁ । ଏଣୁ ଏକ ଅବିନଶ୍ୱର ଆତ୍ମାର ପରିକଳ୍ପନା କରାଯାଇଛି । କୌଣସି ପ୍ରମାଣର ଅପେକ୍ଷା ନରଖି ସମଗ୍ର ପୃଥିବୀ, ମାନବ ଇତିହାସର ପ୍ରାକ୍‌କାଳରୁ ଆତ୍ମାକୁ ସ୍ୱୀକୃତି ପ୍ରଦାନ କରିଅଛି । ପୃଥିବୀର ପ୍ରାୟ ପ୍ରତ୍ୟେ

ଧର୍ମ, ସଂସ୍କୃତି, ଓ ଦର୍ଶନରେ ଆତ୍ମାକୁ ସ୍ପଷ୍ଟ କିମ୍ବା ଅସ୍ପଷ୍ଟ ମାନ୍ୟତା ମିଳିଛି । ବିଭିନ୍ନ ସମୟରେ ଅଲୌକିକ ତଥ୍ୟ ସମ୍ମିଳିତ ଘଟଣାବଳୀ ଏଇ ଆତ୍ମା ଓ ପ୍ରେତତତ୍ତ୍ୱକୁ କୌତୁହଳ ପାଠକମାନଙ୍କୁ ବିସ୍ମିତ କରାଇଛି । ପୁରାଣ ଠାରୁ ଆରମ୍ଭ କରି ଅନେକ ସାହିତ୍ୟରେ ପ୍ରେତସତ୍ତାର ବର୍ଣ୍ଣନା ବି ଦେଖିବାକୁ ମିଳେ । ରାମାୟଣରେ ଦେବୀ ସୀତା ଦଶରଥଙ୍କୁ ଗୋଦାବରୀରେ ପିଣ୍ଡଦାନ କଲାବେଳେ ଅଶରୀରୀ ଆବିର୍ଭାବର ବର୍ଣ୍ଣନା ରହିଛି । ତେଣୁ କୁହାଯାଏ ଅତୃପ୍ତ କାମନାର ତୃପ୍ତିପାଇଁ, ଆତ୍ମା ମାଧ୍ୟମ ଖୋଜି ବୁଲୁଥାଏ ଏବଂ କାମନା ତୃପ୍ତ ହୋଇଗଲେ ତାର ହୁଏ ଘଟାନ୍ତର ।

ଘଟାନ୍ତର ସମୟରେ ଯାହାକୁ ଆମେ ମୃତ୍ୟୁନାମରେ ଅଭିହିତ କରିଥାଉ, ତାର ପୂର୍ବବର୍ତ୍ତୀ ଜୀବନଓ ଜୀବନ ମାନଙ୍କର ସମସ୍ତ ସ୍ମୃତି ସାଧାରଣତଃ ଲୋପପାଇଯାଇଥାଏ । ଆସାଧାରଣ କ୍ଷେତ୍ରରେ ସ୍ମୃତି ସ୍ପଷ୍ଟ ରହିଥାଏ । '' ତାନ୍ୟହଂ ବେଦ ସର୍ବାଣି ନତ୍ୱଂ ବେତ୍ଥ ପରନ୍ତପ'' - ଆମ ଦୁହିଁଙ୍କର ବହୁଜନ୍ମ ବ୍ୟତୀତ ହୋଇଯାଇଛି । ସେ ସବୁ ମୁଁ ଜାଣେ, ସେ ସଂପର୍କରେ ତୋର ସ୍ମୃତି ବା ଜ୍ଞାନ ନାହିଁ । ଏପରି ଜାତସ୍ମର ମାନଙ୍କ ଉଦାହରଣ ଅନେକ ରହିଛି । ପ୍ରଖ୍ୟାତ ସାଇକିଆଟ୍ରିଷ୍ଟଙ୍କ ଗବେଷଣା ଗ୍ରନ୍ଥ 'Many Lives Many Masters ରେ କ୍ୟାଥେରିନ୍ ନାମକ ମହିଳାଙ୍କୁ ଅତୀତରେ ପ୍ରବେଶକରାଇ, ଅନେକ ପୂର୍ବଜନ୍ମର ଅଲୌକିକ ତଥ୍ୟର ଅବତାରଣା କରାଇଛନ୍ତି । ପଲ ବ୍ରଣ୍ଟନଙ୍କ ସଂପର୍କରେ ଅନେକ ଶୁଣିଥିବେ । ପିରାମିଡ୍ ଗର୍ଭଦେଶରେ ନିଜ ଶରୀରଠାରୁ ପୃଥକ୍ ଏକ ସତ୍ତାକୁ ସେ ସ୍ପଷ୍ଟ ଦେଖିପାରିଥିଲେ । ଏଣୁ ଏପରି ଅନେକ ତଥ୍ୟରୁ ଅଶରୀରୀ ଆତ୍ମାର ସ୍ୱତନ୍ତ୍ର ସ୍ଥିତି, ଭୂମି ଓ ଭୂମିକା ସ୍ୱୀକାର କରାଯାଇପାରେ ।

ଅଶରୀରୀ ଆତ୍ମାଓ ମୃତ୍ୟୁଲୋକ ସହ ସଂପର୍କ ସ୍ଥାପନ ପାଇଁ ବହୁ ବିଧି ରହିଛି । ତନ୍ମଧ୍ୟରୁ ପ୍ଲାଞ୍ଚେଟ୍ ଗୋଟାଏ । ଏହାର ପ୍ରୟୋଗ ଓ ଲେଡି ବ୍ଲାଭାଟସ୍କିଙ୍କ କ୍ଲେଆରଭୟାନସ୍ ଏକାକଥା ନୁହେଁ । ସଂପ୍ରତି ଟେଲିଭିଜନ ଓ ଚଳଚ୍ଚିତ୍ରରେ ଏ ଧରଣର ଘଟଣାମାନଙ୍କୁ ରୂପାୟନ କରାଯାଇଛି ଏବଂ ନୂତନ ଢ଼ଙ୍ଗରେ ଅନେକ ତିଆରି ଚାଲିଛି । ଭାରତୀୟ ପରଂପରାରେ ବେତାଳ ସାଧନା, ଅଘୋରୀ ଜୀବନ, ତନ୍ତ୍ର ସାଧନା ସଂପର୍କରେ ଅନେକ ତଥ୍ୟ ଦେଖିବାକୁ ମିଳେ । କିନ୍ତୁ ଶ୍ରୀଯୁକ୍ତ ଚନ୍ଦ୍ରଶେଖର ରଥ ଅତି ସରଳ ମାଧ୍ୟମ ପ୍ଲାଞ୍ଚେଟ୍ କୁ ଆପଣେଇ ଅନେକ ଅଲୌକିକ ତଥ୍ୟ ଆମ୍ଭ ସାମ୍ନାରେ ଆଣି ଥୋଇଛନ୍ତି ।

ଶରୀର ଭସ୍ମୀଭୂତ ହୋଇଗଲେ ସୁଦ୍ଧା ଏକ ଅଶରୀରୀ ସତ୍ତା ଉଦ୍‌ବୃତ୍ତ ରହିଯାଏ । ଏହି ପ୍ରେତ ବା ପ୍ରେତାତ୍ମାମାନଙ୍କ ସହିତ ଯୋଗାଯୋଗ କରାଯାଇପାରେ । ଶ୍ରୀ ଅରବିନ୍ଦ ଗୋଟାଏ ଅଶରୀରି ସହ ସଂପର୍କ ସ୍ଥାପନ କରିଥିଲେ, ପଣ୍ଡିତ ନୀଳକଣ୍ଠ ପ୍ଲାଞ୍ଚେଟ୍ ମାଧ୍ୟମରେ ଅନେକ ପରୀକ୍ଷା କରିବାପରେ ମାନସିକ ଭାରସାମ୍ୟ ହରାଇଥିବା କଥା ଶୁଣାଯାଏ ।

ଶ୍ରୀଯୁକ୍ତ ରଥଙ୍କ ଶରୀରକୁ ନୈଷ୍ଠିକ ଓ ତେଜୋଦୀପ୍ତ ମନେକରି ତାନ୍ତ୍ରିକ ମହାଶୟ ମାଧ୍ୟମ କରିଥିଲେ, ମଧ୍ୟ, ଶ୍ରୀଯୁକ୍ତ ରଥଙ୍କ କୌଣସି ଅନିଷ୍ଟ ହୋଇନାହିଁ ।

ଶ୍ରୀଯୁକ୍ତ ଚନ୍ଦ୍ରଶେଖର ରଥ ପ୍ଲାଞ୍ଚେଟ୍ ବ୍ୟବହାର କରି ପ୍ରାୟ ୮୦ ପୃଷ୍ଠାର ଏକ ପୁସ୍ତକ ରଚନା କଲେ । ଏ ସଂପର୍କିତ ଲେଖା, ଓଡ଼ିଆ ଭାଷାରେ ସର୍ବପ୍ରଥମ । ସବୁଠାରୁ ଆନନ୍ଦର ବିଷୟ ହେଲା ଶ୍ରୀଯୁକ୍ତ ରଥ ନିଗମାନନ୍ଦଙ୍କ ସହ ଅନେକ ଅନାବିଷ୍କୃତ ତଥ୍ୟ ସଂପର୍କରେ ଆଲୋଚନା କରିଛନ୍ତି । ନିଗମାନନ୍ଦ ପ୍ରେତଲେଖା ମାଧ୍ୟମରେ ଅନେକ କଥା କହିଛନ୍ତି । ଶ୍ରୀଯୁକ୍ତ ରଥଙ୍କୁ ଉପଯୁକ୍ତ ମନେକରି ହୁଏତ ନିଗମାନନ୍ଦ ଆକର୍ଷଣ ଅନୁଭବ କରି ଆସୁଥିଲେ ଏବଂ ଅନେକ ପ୍ରଶ୍ନର ଉତ୍ତର ଦେଇଥିଲେ । ସଦ୍ୟ ଶରୀର ତ୍ୟାଗ କରିଥିବା ଏକ ଜାପାନୀ ଅଶରୀରୀ ଆତ୍ମା ସହିତ ଶ୍ରୀଯୁକ୍ତ ରଥଙ୍କ ପ୍ରଶ୍ନୋତ୍ତର :

ପ୍ରଶ୍ନ : ଶରୀର ତ୍ୟାଗ ପରେ ଆପଣଙ୍କ ଅନୁଭବ କଣ ?

ଉତ୍ତର : (୧) Darkness

(2) I am.

(3) No genus No species

(4) Thirst

(5) No Sleep

(6) Desire for the second person

ଏହି ଉତ୍ତରମାନ ନିଗମାନନ୍ଦଙ୍କ ବ୍ୟତୀତ, Yam Hue Japanese - Historian (1899 to 1973) ଦେଇଥିବା ଶ୍ରୀରଥ ଉଲ୍ଲେଖ କରିଛନ୍ତି । Huanchi ନାମକ ଦାର୍ଶନିକ ଆସିଛନ୍ତି ସେ ଅଂଧାରର ତାତ୍ତ୍ୱିକ କଥା କହିଛନ୍ତି । ଫକୀରମୋହନ ମହାପ୍ରସାଦ ଦେଖି ଫେରିଯାଇଛନ୍ତି, କିନ୍ତୁ କହିଛନ୍ତି, ଆଲୋଚନା ବି କରିଛନ୍ତି ଶ୍ରୀଯୁକ୍ତ ରଥଙ୍କର ସାହିତ୍ୟ କୃତୀ ସଂପର୍କରେ ।

ସବୁଠାରୁ ଆଶ୍ଚର୍ଯ୍ୟ କଥା ହେଲା ଶ୍ରୀଯୁକ୍ତ ରଥଙ୍କର ଶରୀରକୁ ଅନ୍ୟଜଣେ ତାନ୍ତ୍ରିକ ବ୍ୟବହାର କରିବା ଏବଂ ଶ୍ରୀଯୁକ୍ତ ରଥ ଏ ସଂପକରେ ଅନଭିଜ୍ଞ ରହିବା । ନିଗମାନନ୍ଦ ଶ୍ରୀଯୁକ୍ତ ରଥ ମହାଶୟଙ୍କୁ କହିଥିଲେ ଜଣେ ତାନ୍ତ୍ରିକ ୨ବର୍ଷ ୬ମାସ କାଳ ରଥଙ୍କ ଶରୀରରେ ରହି ସାଧନା କରୁଥିଲେ ଏବଂ ତାଙ୍କର କାର୍ଯ୍ୟ ସରିଯିବାପରେ ଚାଲିଗଲେ । ଶ୍ରୀରଥ ନିଗମାନନ୍ଦଙ୍କ ଠାରୁ ଏପରି ଉତ୍ତର ପାଇ ସମୟ ଗଣନାକରି ଜାଣିପରିଥିଲେ ଯେ, ସେହି ସମୟରେ ସେ ପୁରୀରେ ହିଁ ଅବସ୍ଥାନ କରୁଥିଲେ । ଆଉଦିନେ ଦୁଇବନ୍ଧୁ ଶ୍ରୀକ୍ଷେତ୍ରରୁ ରଥଯାତ୍ରା ଦିନ ଫେରି ଶ୍ରୀଯୁକ୍ତ ରଥଙ୍କ ଘରେ ପହଞ୍ଚି ପଚାରିଲେ, "ଆପଣ ପୁରୀରୁ କେତେବେଳେ ଫେରିଲେ ?" ଦୁଇବନ୍ଧୁଙ୍କ ଏପରି ପ୍ରଶ୍ନରେ ତଟସ୍ଥ ହୋଇଥିଲେ ଶ୍ରୀଯୁକ୍ତ ରଥ । କାରଣ ସେ ଥର ସେ ପୁରୀ ଯାଇନଥିଲେ । କିନ୍ତୁ, ତାଙ୍କର ଦୁଇବନ୍ଧୁ ଶ୍ରୀଯୁକ୍ତ

ରଥଙ୍କୁ ରଥଯାତ୍ରାଦିନ ପୁରୀର ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ସ୍ପଷ୍ଟ ଦେଖିଥିବା ଦାବିକଲେ । ଆଉଦିନେ ବି ରାତ୍ର ଜଗୁଆଳ ବାହାଦୂର ସେହିପରି କହିଲା ଯେ, ସମଗ୍ର ରାତ୍ରୀ ପ୍ରାୟତଃ ଶ୍ରୀଯୁକ୍ତ ରଥ ଘୂରି ବୁଲୁଥିବା ସେ ସ୍ପଷ୍ଟ ଦେଖିଛି । କିନ୍ତୁ, ବାସ୍ତବିକ ଶ୍ରୀଯୁକ୍ତ ରଥଙ୍କ ଅନ୍ୟ ଏକ ପ୍ରତିରୂପର ଏ କାର୍ଯ୍ୟ ଥିଲା । କିନ୍ତୁ, ଏହାଦ୍ୱାରା ଶ୍ରୀଯୁକ୍ତ ରଥଙ୍କର କୌଣସି କ୍ଷତି ହୋଇନଥିଲା, କିମ୍ବା କୌଣସି ଅଘଟଣ ବି ଘଟିନଥିଲା ।

ହଠାତ୍ ଶ୍ରୀଯୁକ୍ତ ରଥଙ୍କ ଘରେ ଅନେକ ସମୟରେ ବିଭିନ୍ନ ଅଲୌକିକ ଘଟଣାମାନ ବି ଘଟିଛି । ସତର୍କତାର ସହ ନିଗମାନନ୍ଦ ବି କହିଛନ୍ତି Don't play with fire ନିଆଁ ସାଥିରେ ଖେଳ ନାହିଁ । ବାସ୍ତବିକ ନିଆଁ ହୋଇଛି ଏହି ପ୍ରେତସତ୍ତା । ମଣିଷ ପାଇଁ ହୁଏତ ଏ ସତ୍ତା ବିପଦ ସୃଷ୍ଟି କରିପାରେ । ଏ ସତର୍କତା ଶ୍ରୀଯୁକ୍ତ ରଥଙ୍କୁ ବହୁଳ ଭାବରେ ସତର୍କ କରିଥିଲେ ବି କୌତୁହଳ ବଢ଼ିଛି, କିନ୍ତୁ ସଚେତନ ଭାବରେ ଶ୍ରୀଯୁକ୍ତ ରଥ ଏହି ପ୍ଲାଞ୍ଚେଟ୍ ଠାରୁ ନିଜେ ଓ ନିଜ ପରିବାର ଦୂରେଇ ରଖିଥିବା କଥା ସ୍ପଷ୍ଟ ଉଲ୍ଲେଖ କରିଛନ୍ତି ।

ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଘଟଣା ସଂପର୍କରେ ଶ୍ରୀଯୁକ୍ତ ରଥ ପୁସ୍ତକଟିର ୧୬ ପରିଚ୍ଛେଦରେ ବର୍ଣ୍ଣନା କରିଛନ୍ତି । ଦିନେ ଗୋଟାଏ ବିଚିତ୍ର ଘଟଣା ଘଟିଲା । ଘରର ପୂର୍ବପଟେ ତିନିଟା ଆମ୍ବଗଛ ଥାଏ । ପ୍ରଚୁର ଆମ୍ବ ଆସି ଟାକୁଆ ହେବା ଉପରେ, ହଠାତ୍ କିନ୍ତୁ ଶିଖ ଡାଳ ମଉଳି ଯାଇ ଆସ୍ତେ ଆସ୍ତେ ଗୋଟାଏ ସପ୍ତାହ ମଧ୍ୟରେ ସଂପୂର୍ଣ୍ଣ ମରିଗଲା । ଜଣେ ପୂଜକ ଆସିଥିଲେ, ସେ କହିଲେ ତନ୍ତ୍ର ଫଳରେ ଏ ଗଛ ମରିଗଲା । ସେ ବାଣ ପେଷିଥିଲା ଆପଣଙ୍କ ଉପରକୁ । "ଆପଣଙ୍କୁ କେହି ଆକ୍ରୁଆଳ କରିବାରୁ ଗଛଗୁଡ଼ାକ ଜଳିଗଲେ ।"

ଏତେ ସବୁ ଘଟଣା, ଦୁର୍ଘଟଣା ମଧ୍ୟରେ ପ୍ରେତସତ୍ତା ଓ ପ୍ରେତ ଲେଖ ସଂପର୍କରେ ଅନେକ ତଥ୍ୟ ହାସଲ କରିନପାରିବାର ଦୁଃଖ ଶ୍ରୀଯୁକ୍ତ ରଥଙ୍କର ରହିଛି । ଫକୀର ମୋହନଙ୍କ ସହ କଥୋପକଥନରେ ସେ ପ୍ରୀତ ହୋଇଛନ୍ତି । ତାଙ୍କର ନିଜସ୍ୱ ଲେଖା ସଂପର୍କରେ ଆଲୋଚନା କରିଛନ୍ତି, ପ୍ରକାଶିତ ହେବା ପୂର୍ବରୁ ତାଙ୍କ କୃତି ସଂପର୍କରେ ଅବଧାରଣ କରିଛନ୍ତି । ଚରିତ୍ର ଗୁଡ଼ାକ ସଂପର୍କରେ ବି ସଚେତନ ହୋଇପାରିଛନ୍ତି ।

ଏଠାରେ ଗୋଟାଏ କଥା କହିଲେ ଅପ୍ରାସଂଗିକ ହେବ ନାହିଁ ଯେ, କଥାକାରଙ୍କ 'ଯନ୍ତ୍ରାରୂଢ଼' 'ମୁଁ ସତ୍ୟଧର୍ମା କହୁଛି' ଦୁଇଟି ସୃଷ୍ଟିରେ ଯେଉଁ ଅଲୌକିକ ଘଟଣାପ୍ରବାହ ଦେଖିବାକୁ ମିଳେ, ତାହା ଶ୍ରୀଯୁକ୍ତ ରଥଙ୍କୁ ଆଚ୍ଛନ୍ନ କରିଥିବା ଅନ୍ୟ ଏକ ସତ୍ତାର ପ୍ରେରଣା ହୋଇଥାଇପାରେ । ସେ ଦୁଇଟି ଗ୍ରନ୍ଥ ପଢ଼ିବା ସମୟରେ, ମୁଁ ମୃତ୍ୟୁ ଆରପାରିରୁ ସଂକେତ ସଂପର୍କରେ ପଢ଼ିନଥିଲି କିମ୍ବା ସଚେତନ ବି ନଥିଲି । ମୁଁ ସତ୍ୟଧର୍ମା କହୁଛିର 'ମୁଁ କ୍ଷେତ୍ର ଯିବି' ଓ 'ଯନ୍ତ୍ରାରୂଢ଼' ବାରମ୍ବାର ପଢ଼ିଲେ ଏକ ଅନିର୍ବଚନୀୟ ସୁଖାନୁଭୂତି ଅନୁଭବ

କରିହୁଏ । ଏକଥା ଯୋର୍ ଦେଇ କରିପାରେ । ଏତଦ୍ ବ୍ୟତୀତ ଶ୍ରୀଯୁକ୍ତ ରଥଙ୍କର ଅନ୍ୟ କେତେକ ଲେଖାରେ ଏକ ଅଲୌକିକ ସତ୍ତାକୁ ଉପଲବ୍ଧି ବି କରିହୁଏ ।

ପୂଜ୍ୟ, ନମସ୍ୟ, ସାଧକଶ୍ରେଷ୍ଠ ଶ୍ରୀଯୁକ୍ତ ରଥ ୭୫ବର୍ଷରେ ପଦାର୍ପଣ କରିଛନ୍ତି । ତାଙ୍କର ନିରୋଗ, ଦୀର୍ଘସ୍ଥାୟୀ ଜୀବନ ଓ ନୂତନ ସାହିତ୍ୟ କୃତୀର କୃତିତ୍ୱର ଆଶାନେଇ, ଭୂମିଷ୍ଠ ପ୍ରଣାମ ଜଣେଇ ରହୁଛି ।

ବରିଷ୍ଠ ଅଧ୍ୟାପକ, ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ
ଭୈରବୀ ମହାବିଦ୍ୟାଳୟ, ପୁରୁଣା କଟକ
ଶାସ୍ତ୍ରୀ ନଗର, କାଳୀ ମନ୍ଦିର ମାର୍ଗ
ଫୁଲବାଣୀ - ୭୬୨୦୦୧

***

# ଗୁରୁ ଚନ୍ଦ୍ରଶେଖର ରଥ

***ଶ୍ରୀ ରାମଚନ୍ଦ୍ର ଦାସ (ଶିକ୍ଷକ)***

ସେପ୍ଟେମ୍ବର ୫ ତାରିଖ । ଗୁରୁଦିବସ । ଛାତ୍ରଛାତ୍ରୀ ମାନଙ୍କ ବ୍ୟସ୍ତତା କହିଲେ ନ ସରେ । ଆମ ବିଦ୍ୟାଳୟର ଛାତ୍ରଛାତ୍ରୀମାନେ ଲମ୍ବ ଫୁଲମାଳଟିଏ ଲମ୍ବାଇ ଦେଲେ ଗଳାରେ । ମୋର ପାଦ ଧୂଳି ନେଇ ମୁଣ୍ଡରେ ମାରୁଥାନ୍ତି । ସମସ୍ତଙ୍କ ମୁଖମଣ୍ଡଳରେ ଆନନ୍ଦର ଲହରୀ । ସେମାନଙ୍କୁ ଦେଖି ମୁଁ କେବଳ ଭାବୁଥାଏ, ସତରେ, ସେହିମାନେ ଭାଗ୍ୟବାନ, ଯେଉଁମାନେ ଆଜିପରି ପବିତ୍ର ଦିନରେ ଗୁରୁଙ୍କର ପାଦସ୍ପର୍ଶ କରି ଆଶୀର୍ବାଦ ଲାଭ କରୁଛନ୍ତି । କଣ କହିବି, ମୋର ଗୁରୁଦେବ ମୋ ଠାରୁ ବହୁତ ଦୂରରେ । ଯୋଡ଼ ହସ୍ତରେ ପ୍ରଣାମ କଲି—

ଗୁରୁ ବ୍ରହ୍ମା, ଗୁରୁ ବିଷ୍ଣୁ, ଗୁରୁ ଦେବ ମହେଶ୍ୱର ।
ଗୁରୁ ସାକ୍ଷାଦ୍ ପରମ୍ ବ୍ରହ୍ମ ତସ୍ମୈ ଶ୍ରୀ ଗୁରବେ ନମଃ ।

ଗଳାରୁ ବାହାର କଲି ଫୁଲମାଳଟି । ସ୍ମରଣ କଲି ଗୁରୁଙ୍କୁ— ହେ ଗୁରୁଜୀ ! ତୁମକୁ ମାଳା ନ ପିନ୍ଧାଇ ମୁଁ କେମିତି ମାଳା ପିନ୍ଧିବି ? ଏ ମାଳାଟିକୁ ତୁମରି ପାଦରେ ଅର୍ପଣ କରୁଛି । ଗ୍ରହଣ କର । ଘରକୁ ଆସି ଦେଖିଲି ଗୁରୁ ପୁତ୍ର ଶ୍ରୀଯୁକ୍ତ ଶଶିଭୂଷଣ ରଥଙ୍କ ଦ୍ୱାରା ପ୍ରେରିତ ପତ୍ର । ଗୁରୁଜୀଙ୍କ ୭୫ ତମ ଜନ୍ମୋତ୍ସବର ନିମନ୍ତ୍ରଣ ପତ୍ର । ଆନନ୍ଦରେ ନାଚି ଉଠିଲା ମୋର ମନ ଓ ପ୍ରାଣ । କେତେ ଭାଗ୍ୟବାନ ନିଜକୁ ମନେକଲି । ଏମିତି ଦିନେ ମୁଁ ଖୁସିରେ ନାଚି ଉଠିଥିଲି, ଯେଉଁଦିନ ମୋର ଆଇ.ଏ ପରୀକ୍ଷା ଫଳ ବାହାରିଥିଲା । ପୁରୁଣା ସ୍ମୃତି ଅଭୁଲା ସ୍ମୃତି ଜାଗିଉଠିଲା ମନ ମଧ୍ୟରେ । ଗୁରୁଜୀ ଶ୍ରୀଯୁକ୍ତ ଚନ୍ଦ୍ରଶେଖର ରଥଙ୍କର ପ୍ରବନ୍ଧ "ମୁଁ ସତ୍ୟଧର୍ମା କହୁଛି" ପ୍ରବନ୍ଧରୁ ପ୍ରଶ୍ନଟିଏ ଆସିଥିଲା । ସତ୍ୟଧର୍ମା ଚରିତ୍ରରେ ଲେଖକଙ୍କର ଅଭିବ୍ୟକ୍ତି । ଗୁରୁଙ୍କୁ ସ୍ମରଣ କରି ଲେଖିଗଲିଲି । ଯାହା ଆଜି ଅଭୁଲା ସ୍ମୃତି ହୋଇ ରହିଯାଇଛି ।

ବିଶ୍ୱବିଖ୍ୟାତ, ମହାପୁରୁଷ ସକ୍ରେଟିସଙ୍କୁ ସତ୍ୟଧର୍ମା ନାମରେ ପରିଚିତ କରାଇ ଲେଖକ ଯୁବକ ଯୁବତୀମାନଙ୍କୁ ଶିକ୍ଷିତ, କର୍ମ ତତ୍ପର, ସାହସୀ ଓ ସତ୍ୟର ପୂଜାରୀ ହେବାପାଇଁ ପ୍ରେରଣା ଦେଇଛନ୍ତି । ସତ୍ୟଧର୍ମାର ବିଷପାନ ଅଧ୍ୟାୟଟି ପ୍ରବନ୍ଧର ପ୍ରାଣବିନ୍ଦୁ । ଜାଗୃତିର ପ୍ରଥମ ସୋପାନ । ନିର୍ଭୀକତାର ଜ୍ୱଳନ୍ତ ପ୍ରମାଣ । ସତ୍ୟଧର୍ମା କହିଥିଲେ କୌଣସି କଥାକୁ ବିଶ୍ୱାସ କରିବା ପୂର୍ବରୁ ପରୀକ୍ଷା କର । ବିଜୁଳି ଘଡ଼ଘଡ଼ି ଦେବ ଦେବୀଙ୍କର

କ୍ରୋଧନୁହେଁ ପ୍ରକୃତିର ନିୟମ । ସତ୍ୟଧର୍ମା ମାଧ୍ୟମରେ ସମାଜରୁ ଅନ୍ଧବିଶ୍ୱସ ଦୂର କରି ଅଗଣିତ ସତ୍ୟଧର୍ମା ମାଧ୍ୟମରେ ସମାଜରୁ ଅନ୍ଧବିଶ୍ୱାସ ଦୂର କରି ଅଗଣିତ ସତ୍ୟଧର୍ମା ଆବିର୍ଭାବ କରିବାର ଇଚ୍ଛା ପ୍ରାବନ୍ଧିକ ପ୍ରକଟ କରିଥିଲେ । ଏମିତି ନାନା ପ୍ରକାର ତୁଳନା ଦେଇ ମୁଁ ଲେଖକଙ୍କର ଅଭିବ୍ୟକ୍ତିକୁ ବର୍ଣ୍ଣନା କରିଥିଲି । ଆଇ. ଏ. ପରୀକ୍ଷା ଫଳ ପ୍ରକାଶ ପାଇଲା । କଲେଜରେ ସବୁଠାରୁ ଅଧିକ ନମ୍ବର ମୋର ପୁଣି ସାହିତ୍ୟରେ ସର୍ବାଧିକ, ଛାତିଟା କୁଣ୍ଢେମୋଟ ହୋଇଗଲା । ବୁଝି ପାରିଲି ପ୍ରାବନ୍ଧିକଙ୍କ ସତ୍ୟଧର୍ମାର କରାମତି । ସେହିଦିନଠାରୁ ପ୍ରବାହିତ ହେଉଛି ସାହିତ୍ୟର ପ୍ରବାହ ହୃଦୟରେ । ସତ୍ୟଧର୍ମାର ଉପଦେଶ ମୋ ଜୀବନର ଉତ୍ସ । ସତ୍ୟଧର୍ମାର ଉପଦେଶ ହେଉଛି ଗୁରୁବାଣୀ, ଗୁରୁଙ୍କର ଆଶୀର୍ବାଦ । ଯେଉଁ ଆଶୀର୍ବାଦ ବଳରେ ମୁଁ ଆଜି ଗୁରୁ ଆସନରେ ବସିପାରିଚି । ଫୁଲମାଳ ପାଇବାର ଯୋଗ୍ୟତା ପ୍ରାପ୍ତ କରି ପାରିଛି । ସେହିଗୁରୁ ହେଉଛନ୍ତି ପ୍ରସିଦ୍ଧ ସାହିତ୍ୟକାର ଶ୍ରୀଯୁକ୍ତ ଚନ୍ଦ୍ରଶେଖର ରଥ । ତାଙ୍କର ଉପନ୍ୟାସ, କାବ୍ୟ, କବିତା, ପ୍ରବନ୍ଧ ଯିଏ ଥରେ ପଢ଼ିଛି ତା ଜୀବନରେ ଏବଂ ହୃଦୟରେ ପ୍ରବାହିତ ହୋଇଛି ସାହିତ୍ୟର ପ୍ରବାହ । ଆମ ଉତ୍କଳରେ ଶ୍ରୀଯୁକ୍ତ ରଥ ହେଉଛନ୍ତି ସରସ୍ୱତୀଙ୍କର ବରପୁତ୍ର । ତାଙ୍କ ଲେଖନୀ ଅତୁଳନୀୟ । ଆଧୁନିକ ଉତ୍କଳରେ ଏକ ଉନ୍ନତ ସାହିତ୍ୟ ସମାଜ ଗଢ଼ିବାର କର୍ଣ୍ଣଧାର ହେଉଛନ୍ତି ରଥ ମହୋଦୟ ।

ଶେଷରେ ଜଗନ୍ନାଥଙ୍କୁ ପ୍ରାର୍ଥନା କରୁଛି—ପ୍ରସିଦ୍ଧ ଗୁରୁରୂପୀ ସାହିତ୍ୟକାର ଚନ୍ଦ୍ରଶେଖର ରଥଙ୍କୁ ଦୀର୍ଘଜୀବୀ କରନ୍ତୁ ।

ଶରଣାଗତ, କିଙ୍କର ଭୀତ ମନେ
ଗୁରୁଦେବ, ଦୟା କର ଦୀନ ଜନେ

କେନ୍ଦ୍ରୀୟ ବିଦ୍ୟାଳୟ, ବ୍ରହ୍ମପୁର

***

# ''ରଥସପ୍ତକ''ର ମହାନାୟକ

*ଗୌତମ ଜେନା*

ଯା ଭିତରେ ତେଇଷି ବର୍ଷ ଗ୍ରଳିଗଲାଣି । କାଲି ପରି ମନେହେଉଛି । ରେଜିଓନାଲ କଲେଜ ପାଖ ସେଇ ଦୋତାଲା ଘର ଭିତରୁ ଦେଖାଯାଉଛି ହସ ହସ ମୁହଁ । ବିଶାଳ ଚେହେରା ସାଂଗକୁ ଅମାୟିକ ଠୋ ଠୋ ହସ ମନେ ପଡ଼ିଯାଉଛି । ଯୌବନୋଦ୍ଦୀପ୍ତ ପ୍ରଚଣ୍ଡ ମାର୍ତ୍ତଣ୍ଡ ସଦୃଶ ଚେହେରାକୁ ପ୍ରଥମଥର ପାଇଁ ସେଇଠି ଭେଟିଥିଲି । ବ୍ୟକ୍ତିତ୍ୱ ନିକଟରେ ଆପେ ଆପେ ମୁଣ୍ଡ ନଇଁ ଯାଇଥିଲା । ଭାବାବେଗକୁ ଗ୍ରପିରଖି ପାରିଲିନି । ନିଜେ ନ୍ୟୁନ ହୋଇଗଲି ସେଇଠି । କହିଲି ମେଟ୍ରିକ୍ ପରୀକ୍ଷା ଦେବା ବର୍ଷ ଆପଣଙ୍କ ''ଯନ୍ତ୍ରାରୂଢ଼'' ଉପନ୍ୟାସଟି ପଢ଼ିବାର ସୁଯୋଗ ପାଇଲି ଆମ ଗାଁ ଲାଇବ୍ରେରୀରୁ । କିଛି ବୁଝିପାରିଲିନି । କିଛି ମନ୍ତବ୍ୟ ନାହିଁ, ସେ ହସିଦେଲେ କେବଳ । ଏତିକିରୁ ମୁଁ ବୁଝିନେଲି ସେଇ ବୟସରେ ସେମିତିକା ବହିବୋଧେ ମୋ ମୁଣ୍ଡରେ ପଶିପାରିନଥିବ ବୋଲି ସେ ବିଗ୍ରରିଛନ୍ତି ।

ତେଇଶି ବର୍ଷ ତଳେ ମୁଁ ଓଡ଼ିଆ ସାହିତ୍ୟରେ ଏମ୍. ଏ. ପାଶ୍ କରିଥିଲି । କବିତା ଏବଂ ଆଲୋଚନା ଉଭୟରେ ହାତ ଦେଇଥିଲି । ତା'ପରେ ମହର୍ଷି କଲେଜ ଅଫ୍ ନେଚୁରାଲ ଲ'ରେ ଅଧ୍ୟାପକ ଭାବେ ଯୋଗଦେଇ ଭୁବନେଶ୍ୱରରେ ଦୀର୍ଘ ବର୍ଷ ମଧ୍ୟ ଅବସ୍ଥାନ କରିଥିଲି । ଏହି ସମୟରେ ବାରଂବାର ସାକ୍ଷାତ ଆଲୋଚନା ହୋଇଛି ମହାନ ଗାଳ୍ପିକ ଚନ୍ଦ୍ରଶେଖର ରଥଙ୍କ ସହିତ । ଏତିକିବେଳେ ବାଣୀବିହାରର କେତେକ ଉତ୍ସାହୀ ସାହିତ୍ୟପ୍ରେମୀ ଯୁବକ ''ଶନିବାର ସାହିତ୍ୟ ସଂସଦ'' ନାମରେ ଏକ ଅନୁଷ୍ଠାନ ତିଆରି କରିଥାନ୍ତି । ସେମାନଙ୍କର ମୁଖ୍ୟ ଭାବରେ ସମରେନ୍ଦ୍ର ମହାପାତ୍ର ଏବଂ ତାଙ୍କର କେତେକ ବନ୍ଧୁ ମୋ ନିକଟକୁ ଆସି ସେହି ଅନୁଷ୍ଠାନର ସଭାପତି ରହିବା ପାଇଁ ଅନୁରୋଧ କଲେ । ସେହିବର୍ଷ ବାର୍ଷିକୋତ୍ସବକୁ ଗାଳ୍ପିକ ଶ୍ରୀ ରଥଙ୍କୁ ମୁଁ ମୁଖ୍ୟବକ୍ତା ଭାବରେ ନିମନ୍ତ୍ରଣ କରିଥିଲି ଓ ଭରପୂର ବାଣୀବିହାରର ଅଡ଼ିଟୋରିୟମ୍‌ରେ ଗଳ୍ପ ସୁଲଭ ଭଙ୍ଗୀରେ ସେ ତାଙ୍କର ଭାଷଣ ପ୍ରଦାନ କରି ସମସ୍ତଙ୍କୁ ମନ୍ତ୍ରମୁଗ୍ଧ କରିଦେଇଥିଲେ । ତାଙ୍କର ଚଟୁଳ ବକ୍ତବ୍ୟ ସଂସ୍ପର୍ଶରେ ଥରେ ଯିଏ ଆସିଛି, କେବେ ବି ଭୁଲିପାରିବ ନାହିଁ ତାଙ୍କୁ ।

ସେହି ସମୟରେ ସେ ଥା'ନ୍ତି ବି.କେ.ବି. କଲେଜରେ ଉପାଧ୍ୟକ୍ଷ । ବି.ଜେ.ବି କଲେଜକୁ କୌଣସି ଏକ କାର୍ଯ୍ୟରେ ଯାଇ ଆର୍ଟ୍ସ ବ୍ଲକ୍‌ରେ ତାଙ୍କୁ ଏକ ଇଂରାଜୀ କ୍ଲାସ୍ ନେଉଥିବାର ଦେଖିଲି । କକ୍ଷଭର୍ତ୍ତି ଛାତ୍ରଛାତ୍ରୀ, ଅଥଚ ସବୁଆଡ଼ ନୀରବ ନିଶ୍ଚୁଳ । ଦେଖିଲି ସାର୍ କ୍ଲାସ ନେଉଛନ୍ତି । ଅପେକ୍ଷା କରିବା ଭିତରେ ତାଙ୍କର ନଜର ପଡ଼ିଯାଇଛି ମୋ

ଉପରେ । ସେ ପାଖକୁ ଆସି କହିଲେ ତାଙ୍କ ଅଫିସ୍ ରୁମରେ ଯାଇ ବସିବା ପାଇଁ । ସେଇଠି ହିଁ ଦେଖିଥିଲି ଶିକ୍ଷକଭାବରେ ତାଙ୍କର ମହତ୍ତ୍ୱ । ଜଣେ ଲେଖକ ଭାବରେ ନୁହଁନ୍ତି, ଶିକ୍ଷକ ଭାବରେ ନୁହଁନ୍ତି, ଜଣେ ''ଭଲ ମଣିଷ'' ଭାବରେ ତାଙ୍କୁ ସେଦିନ ମୁଁ ବୁଝିପାରିଥିଲି ।

ଏଯାଏ ବି ମୁଁ ପାଶୋରି ପାରିନାହିଁ ସେହି ସମୟରେ 'ସୌଜନ୍ୟ' ସାହିତ୍ୟ ପତ୍ରିକାରେ ପ୍ରକାଶ ପାଇଥିବା ''ଜାଇ କୁମ୍ଭାରୁଣୀ'' ଗଳ୍ପଟିକୁ । ଅନେକ ଦିନ ଧରି ଏହି ଗପଟି ମୋତେ ଆଚ୍ଛନ୍ନ କରି ରଖିଥିଲା । ସେତେବେଳେ ମୋ ଭିତରର ସେହି ଆବେଗକୁ ମୁଁ ଏକ ଆଲୋଚନା ମାଧ୍ୟମରେ ପ୍ରକାଶ କରିଥିଲି । ସେ ହେଉଛନ୍ତି ଏକ ବହୁମୁଖୀ ପ୍ରତିଭା । ତାଙ୍କ ଚିତ୍ରକଳାର ମଧ୍ୟ ପଟାନ୍ତର ନାହିଁ । ଘରସାରା ତାଙ୍କର ପେଣ୍ଟିଙ୍ଗ୍ । ସେ ସୌଖିନ୍ ଚିତ୍ରକର ଅଥଚ ଚିତ୍ରକଳାର ପାରଦର୍ଶିତା ତାଙ୍କର ଚିତ୍ରରୁ ବାରି ହୋଇଯିବ ।

ସାହିତ୍ୟର ସବୁ ବିଭାଗରେ ତାଙ୍କର ହାତ, ଗଳ୍ପ, ଉପନ୍ୟାସ, ରମ୍ୟରଚନା, ସୃଜନଶୀଳ ପ୍ରବନ୍ଧ—ସବୁଥିରେ ତାଙ୍କର ଦକ୍ଷତା । ନାହିଁ ଗର୍ବ ନାହିଁ ଅହଙ୍କାର ।''ମଣିଷ ପଣିଆ''ର ସେ ଏକ ନମୂନା କହିଲେ ଅତ୍ୟୁକ୍ତି ହେବ ନାହିଁ । କ୍ଲାସ୍ ରୁମ୍‌ରେ ତାଙ୍କର ପ୍ରବଂଧଟିଏ ପଢ଼ାଇଲାବେଳେ ମୁଁ ତନ୍ମୟ ହୋଇଯାଏ । 'ନାମକରଣ' ଭିତରେ ଚନ୍ଦ୍ରଶେଖର— ନାମକରଣର ଯଥାର୍ଥତାକୁ ମୁଁ ବାରମ୍ବାର ବିଶ୍ଳେଷଣ କରେ ।

ସେ ଜଣେ ଅପ୍ରତିଦ୍ୱନ୍ଦ୍ୱୀ ସ୍ରଷ୍ଟା । ପୁରାତନ ଓ ନୂତନର ଦ୍ୱନ୍ଦ୍ୱ ତାଙ୍କ ଭିତରେ ନାହିଁ । ସେ ସବୁବେଳ ପାଇଁ ନୂତନର ଭବିଷ୍ୟତ ଓ ନୂତନ ପାଇଁ ଅବଲମ୍ବନ—ଏଥିରେ ସନ୍ଦେହ ନାହିଁ । ଏହିପରି ଜଣେ ମହାନ୍ ସ୍ରଷ୍ଟା ଆମ ଭିତରେ ଥାଇ ଆମକୁ ଆଗେଇ ଯିବାର ନିର୍ଦ୍ଦେଶ ଦେଉଛନ୍ତି ଯାହାଙ୍କୁ ଅନ୍ତଃସତ୍ତାରେ ବାରଂବାର ଅନୁଭବ କରିହୁଏ ।

ପଞ୍ଚସ୍ତରୀ ବର୍ଷରେ ସେ ପଦାର୍ପଣ କରିବେ ୨୦୦୩ ରେ । ଈଶ୍ୱରଙ୍କର ଆଶୀର୍ବାଦରୁ ସେ କର୍ମଚଞ୍ଚଳ ଓ କର୍ମମୁଖର ହୋଇ ରହିଥାନ୍ତୁ ଓ ଓଡ଼ିଆ ସାହିତ୍ୟର ସେବା କରିଚାଲିଥାନ୍ତୁ ତଥା ତାଙ୍କର ଆଶୀର୍ବାଦ ଆମ୍ଭଉପରେ ଝରିପଡୁଥାଉ—ଏତିକି କାମନା ।

ଅଧ୍ୟାପକ, ଓଡ଼ିଆ ବିଭାଗ,
ସାହାସପୁର ମହାବିଦ୍ୟାଳୟ
ବାଲିଚନ୍ଦ୍ରପୁର, ଯାଜପୁର ଜିଲ୍ଲା

***



# THE QUINTESSENCE OF POETRY : A TRIBUTE TO THE MUSE

***Bibhu P. Acharya***

When he Sun goes down on the Western horizon there is a promise that reverberates all across the twilight sky, " I will come back tomorrow." When the dark pre-monsoon clouds gather after a scorching spell of heartless summer, there is a message from Nature that sneaks past the rumbling of thunders, " I have not lost hope on mankind, as yet !" When Socrates sips hemlock, his rolling eyes glint with a quiet determination that seems to say, "Truth shall triumph."

All along, your poetry — the essays, the stories, the novels, and of course, the poems — has attempted to scale these summits of human experience and to capture the very essence of poetry. When we pay tribute to you on your 75th birth anniversary, we see poetry itself bowing to the Muse, with gratitude for interpreting its myriad mysteries to the readers. As an admirer and a disciple, I feel doubly blessed on this occasion.

—Secretary,
Industries & Commerce
Govt of Andhra Pradesh
Hyderabad.



# PROFESSOR CHANDRASEKHAR RATH : A LIVING LEGEND

*Dr. S.K. Dash*

I had the opportunity to invite Professor Chandrasekhar Rath to Minneapolis, USA in 1999 to speak on Lord Jagannath. He had impressed the Minnesotans not only by his profound knowledge on the history of the Jagannath Cult but also by his great oratory skills. He narrated in detail, with evidence from ancient religious scripts and literature, how the Cult of Lord Jagannath dates back to 1200 BC although the temple of the Lord was built by King Anant Verman Chodaganga Dev in early 12th Centurey AD. He went on to prove that although the Egyptians, the Babylonioans and the Greeks also had deities who were contemporaries of Lord Jaganath, it is only Jagannath who is still vibrant and living sustained by a faith-following parallel with time. It is because of His all-embracing philosophy and His adapability to time. What fascinated me tha most was Prof. Rath's description of Lord Jagananth as 'Sakshi Purusa' that is symbolized by the prominent pair of large eyes that are lidless to indicate perpetual vigilance. The lidless eyes of Jaga Kalia symbolize that they never close and they keep a constant watch on the whole universe (the viswa bramhanda). His thoroughly researched knowledge on Lord Jagannath was so profound and enlightening that even after four years when we were celebrating the Rath Jatra in the Hindu Temple of Minneapolis this year, people still remembered him and his eloquent speech on Lord Jagananth and asked me about him.

I also had the privilege to hear Prof. Rath when he was the Guest of Honour at the Annual Oriya Society of Americas Convention in Toronto in 1999. He was scheduled to speak on the culture of Lord Jagananth. However when the Chief Guest of the Convention, Honorable Amabssador Mr. Lalit Mansingh finished his speech on Orissa and its culture, Prof. Rath continued from where Mr. Mansingh had left and stunned the audience with his knowledge on the history, language and culture of Orissa. What was most amazing was that he spoke extempore on a topic he had not prepared to speak and could still keep the audiece capitvated by his profound knowledge on the subject. The former Secretary of Orissa Sangita Nataka Academy, Mrs. Sudha Mishra had once said to me, "Bhaina, You are looking for a good speaker. Have you ever listened to Prof. Chandrasekhar Rath ? Listen to him once, he is a living Vivekananda". After listening to him thrice in succession in

1999 at the Hindu Temples of Minneapolis and Nashville, USA and the OSA Convention in Toronto, Canada, I remembered Sudha's words and realized how apt her remark was. I know Prof. Rath as a great educationist, a writer and poet and a Professor of English. After listening to his speech on Orissa and the cult of Lord Jagannath, I realized what a knowledgeable person and powerful orator he was. My love and respect for him increased manifold. My wife Kalpana and I were delighted when we had him as our guest during his visit to Minneapolis and we had a wonderful time with him. A family bond developed with him when he started treating my wife as his daughter. We feel very proud of our association with him. I have been keenly following the achievements of Prof. Rath. He was the most deserving winner of the Sahitya Academy award in 1997 for his book "Sabutharu Dirgharatri" (Short stories). I am also aware of his latest book titled 'Astride the Wheel : Yantrarudha" that has been written in Orya but translated into English by Jatindra Kumar Nayak. Based on the tale of the last years of a temple priest in rural Orissa and his acceptance of monotonous proverty, I am sure, this book will further enhance his reputation as a man of literarure. Prof. Rath's comment in 1998 during his US visit that the Ekata Mandir in Dallas is incomplete without Lord Jagannath inspired the patrons of that temple and culminated in installation of Lord Jagannath in October 2002. We in Minneapolis are also working to install the deity of Lord Jagannath in the new Hindu Temple to be built here and are looking forward to have Prof. Rath on this auspicious occasion to enlighten the Minnesotans on Lrod Jagannth by his inimitable oratory. When I came to know that his friends and family are planning to bring out a souvenir to celebrate the 75th birth anniversary of Prof Chandrasekhar Rath, I thought of putting in writing my very personal opinion about him. Kalpana and I wish him a very long, happy and prosperous life and pray to Lord Jagannath to give his strength and the spirit to spread the message of the Lord for many more years. In fact, my wife Kalpana plans to join the friends and family members of Prof. Rath to commemorate his 75th birth anniversary in Bhubaneswar, Orissa.

**Minneapolis, USA**

***

# DR. CHANDRASEKHAR RATH

***Saroj Kumar Behera***

I met Dr. Rath in California a few years ago. He was the chief guest in one of our Orissa society of America Annual Convention. Afterwards he was travelling to different places and California was one stop. He stayed with us for a few days. That is when we got to know each other better and closer and instantly we became friends. He impressed us all, particularly our younger generation, children who are born and brought up here is USA.

Dr. Rath is a very thoughtful person with insight into all aspects of our lives. He also is an excellent orator. His delivery of intricate concepts and ideas are great. I remember vividly his interpretation and elucidations of the images of Jagannath of Puri and the subtle universality of the Jagannath culture of Orissa. He has the uncanny grasp for subtle ideas and also the capacity to share them with others. He is always comfortable with adults, youths or children in conversations or discussions on varied topics from philosophy to sports.

He has a very loving and simple personality, very amicable to all. We really loved his stay with us, very short as it was, and always remember his elucidations of what Jagannath's image projects.

Besides all his great qualities we are pleasantly surprised to know that he is the son-in-law of Mr. Uday Nanda, the great dramatist from Kalahandi. That is a thrill since I knew the legendary Nanda from my school days in Kalahandi.

Me best regards and wishes to Dr. Rath on the happy occasion of his 75th birthday.

California
U.S.A

***

# ବଲାଙ୍ଗୀରର ବରପୁତ୍ର ଚନ୍ଦ୍ରଶେଖର

**ପଣ୍ଡିତ ମହେଶ୍ୱର ନନ୍ଦ**

ସଂଗ୍ରାମୀ ମାଟିର ସୁସନ୍ତାନ ଚନ୍ଦ୍ରଶେଖର ରଥ ଶର୍ମା ମହୋଦୟଙ୍କ ପୃଷ୍ଠଭୂମିର, ତଥା ଜୀବନ ସଂଗ୍ରାମର ସଫଳ ରୂପାୟନର ପ୍ରାରମ୍ଭ ଅଧ୍ୟାୟ ।

୧୯୩୬ ମସିହାରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ହେଲା । ସେତେବେଳେ ଓଡ଼ିଶାରେ ଛଅଗୋଟି ଜିଲ୍ଲା ଓ ଚବିଶଟି ଗଡ଼ଜାତ ଅର୍ନ୍ତଭୁକ୍ତ ଥିଲା । ସୋନପୁର ଓ ପାଟରା ତନ୍ମଧ୍ୟରୁ ଅନ୍ୟତମ । ଏ ଉଭୟେ ଗଡ଼ଜାତ ବଲାଙ୍ଗୀର ସହ ସଂଯୁକ୍ତ ଥିଲା । ୧୯୩୮ ସାଲରେ କଟକଠାରେ ନିଖିଳ ଭାରତ ପ୍ରଜାସମ୍ମିଳନୀ ଆନୁକୂଲ୍ୟରେ ଓଡ଼ିଶା ଗଡ଼ଜାତ ପ୍ରଜାସମ୍ମିଳନୀ ଗଠିତ ହେଲା । ତାହାର ଶାଖା ସ୍ୱରୂପ ସୋନପୁରଠାରେ ତା ୧୦-୦୬-୧୯୩୮ ରିଖରେ ଲକ୍ଷ୍ମଣ ଶତପଥୀଙ୍କ ସଭାପତିତ୍ୱରେ, ଉପେନ୍ଦ୍ରମଣିବାବୁ, ରାମଚନ୍ଦ୍ରଶତପଥୀ, ମକର ଧ୍ୱଜ ପୁରୋହିତ, ଚର୍ତୁଭୁଜ ମିଶ୍ର, ଦାଶରଥି ରଥ, ଭୀମସେନ ଭୋଇଙ୍କୁ ନେଇ ପ୍ରଜାମଣ୍ଡଳ କମିଟି ଗଠିତ ହୋଇଥିଲା । ଅତୀତର ସ୍ମୃତିକୁ ରୋମନ୍ଥନ କରିବାର ବିଶେଷ ପ୍ରୟାସ ନଥିଲେ ମଧ୍ୟ ପରନ୍ତୁ ସେ ଦୁଃଖଦ ଆଲେଖ୍ୟ ଆଜି ବଞ୍ଚିବାର ପ୍ରେରଣା ଓ ଉତ୍ସ ।

୧୯୪୬ ସାଲ୍ ପ୍ରାରମ୍ଭରେ ପାଟଣାରେ କୃଷକଦଳ ନାମରେ ଏକ ସଂଗଠନ ଗଠିତ ହୋଇଥିଲା । ଏହାର ସଭାପତି ଥିଲେ କପିଳେଶ୍ୱରନନ୍ଦ । ଉପସଭାପତି ଯୁଧିଷ୍ଠିର ମିଶ୍ର । ସଂପାଦକ ବଳଭଦ୍ର ପାଣିଗ୍ରାହୀ, ଚିନ୍ତାମଣି ରଥ ଓ ଦିବାକର ବହିଦାର ।

ଯଜୁର୍ବେଦାନ୍ତର୍ଗତ କାଣ୍ୱଶାଖାଶାଖୈକ ଦେଶଧ୍ୟାୟିନ ଆତ୍ରେୟ ଗୋତ୍ରୋପାଧିଯୁକ୍ତ ଚନ୍ଦ୍ରଶେଖର ରଥ ଶର୍ମା ମହୋଦୟ ଏକ ସଫଳକାମୀ ଯୁଗପୁରୁଷ । ଏକଦା ବଲାଙ୍ଗୀର ଜିଲ୍ଲା ଗଡ଼ଜାତ ପ୍ରଜା ଆନ୍ଦୋଳନର ଗାରିମାରେ, ଇତିହାସର ଆଗ୍ନେୟ ଆକର୍ଷଣରେ ଆଲୋକିତ ହୋଇ ଦିଗ୍‌ଦର୍ଶନ ଦେଇଥିଲା ଓଡ଼ିଶା ଇତିହାସକୁ । ତତ୍‌ପରବର୍ତ୍ତୀ ଏକ ଅମ୍ଲାନ ଆକର୍ଷଣ ସୃଷ୍ଟିକରି ପାରିଛି ରଥ ମହୋଦୟଙ୍କୁ ସଂଗ୍ରାମୀ ମାଟିରେ ସଂଗ୍ରାମର ବାର୍ତ୍ତାବହ କରାଇ ।

୧୯୨୯ ମସିହା କୁମାର ପୂର୍ଣ୍ଣିମାର ଜ୍ୟୋତ୍ସ୍ନାବିଧୌତ ଛାୟା ସ୍ନିଗ୍ଧ ପ୍ରସୂତି ଗୃହରେ କୁଆଁ ଡାକ ଶୁଭିଥିଲା ରଥ ମହୋଦୟଙ୍କର । ପଞ୍ଚମ ଦିନର ପଞ୍ଚୁଆତି । ଷଷ୍ଠୀରେ ଷଷ୍ଠୀଦେବୀ

ପୂଜା, ସପ୍ତମ ଦିନର ଉଠିଆଣୀ, ଦଶ ବାରରାତ୍ରରେ ଜ୍ଞାତି ଓ ବାପା, ମାଆଙ୍କର ଅଶୌଚ ପାଳନ ପରେ ଆସିଥିଲା ଏକୋଇଶା ବା ବହିର୍ନିଷ୍କ୍ରମଣ । ନାମକରଣ ନିମନ୍ତେ ସେ ଦିନ ପ୍ରିୟପରିଜନ ପଡ଼ୋଶୀ, ଜ୍ଞାତି ଆତ୍ମୀୟଙ୍କ ପ୍ରତିଯୋଗୀତାର ବାକ୍ୟ ବିନିମୟରେ ସେଦିନ ଗୁମୁରି ଉଠିଥିଲା ରଥ ଆବିର୍ଭାବରେ ରଥଭବନର ବଡ଼ଦାଣ୍ଡ । ଅନେକେ ପୂର୍ଣ୍ଣଚନ୍ଦ୍ର ନାମର ରୂପକଳ୍ପ ରଚୁଥିଲାବେଳେ ତାହା ବହୁ ବାଦାନୁବାଦ ସତ୍ତ୍ୱେ କାଟ ଖାଇ ଯାଇଥିଲା । ପୁରୋଧାଙ୍କ ପରାମର୍ଶ କ୍ରମେ ନାମକରଣ ଚୂଡ଼ାନ୍ତ ହୋଇଥିଲା । ଚନ୍ଦ୍ରତ ଚନ୍ଦ୍ର । ସେ ଚନ୍ଦ୍ରକୁ ମର୍ତ୍ତ୍ୟରେ ଧାରଣ କରିବା ପାଇଁ ଯେ ଆବିର୍ଭାବ ହୋଇଛି । ସେ ହିଁ ଚନ୍ଦ୍ରଶେଖର । ତାହା ସମସ୍ତଙ୍କ ମନକୁ ପାଇଥିଲା । ସନ୍ତୁଷ୍ଟ ଓ ନିଷ୍ପତ୍ତିର ନିର୍ଯ୍ୟାସ ଚନ୍ଦ୍ରଶେଖର ।

ଚନ୍ଦ୍ରଶେଖର ନାମକରଣକୁ ସାର୍ଥକ କରିବା ପାଇଁ ବାପା, ମାଆ, ଗୁରୁ ଗୁରୁଜନ, ବନ୍ଧୁ ଆତ୍ମୀୟମାନଙ୍କ ସହଚର୍ଯ୍ୟରେ ରଥମହାଶୟ ପୂର୍ଣ୍ଣଚନ୍ଦ୍ରର କମନୀୟ ନମନୀୟ ଶାନ୍ତସୌମ୍ୟର ହୁଅନ୍ତି ପରିପୂର୍ଣ୍ଣ ବାଲ୍ୟଶିକ୍ଷାଠାରୁ ଶିକ୍ଷାସମାପ୍ତି ପର୍ଯ୍ୟନ୍ତ କୃତିତ୍ୱର ସହ ଶିକ୍ଷାଲାଭ କରି ହୁଅନ୍ତି ଇଂରାଜୀ ଅଧ୍ୟାପକ ।

ଶିଖ୍ ସ୍ୱାର୍ଥାର୍ଥେ ଧାତୋ ଇକ ପ୍ରତ୍ୟୟ ଯୋଗେ ଶିକ୍ଷକ । ସମାଜରେ ଶିକ୍ଷାର ଭିନ୍ନମୋଡ଼ ଦେବାପାଇଁ ସେ ନିଜକୁ କରନ୍ତି ଉତ୍ସର୍ଗୀକୃତ । ପ୍ରଥମେ ପ୍ରବନ୍ଧ ରଚନାରେ ମନ ବଳାଇ ସାମାଜିକ ଚେତନାକୁ କରନ୍ତି ଋଦ୍ଧିମନ୍ତ । ପରକ୍ଷଣରେ କିଛି କାଳପାଇଁ ହୁଅନ୍ତି The sum Times ର ସମ୍ପାଦକ । ଗଳ୍ପ ରଚନାରେ ସେ ସିଦ୍ଧହସ୍ତ । ଗଳ୍ପମାଧ୍ୟମରେ ସେ ଫୁଟାଇଛନ୍ତି ଛାତ୍ରମାନଙ୍କ ମନରେ ଅଫୁରନ୍ତ ଆନନ୍ଦ ଓ ପ୍ରେରଣା । ଉପ ଅର୍ଥ ସମୀପ, ନ୍ୟାସ ଅର୍ଥ ବସ୍ତୁ । ସାରାଂଶହିଁ ଉପନ୍ୟାସ । ବ୍ୟକ୍ତିର ପରିବେଶ ଓ ପରିବେଷ୍ଟନୀକୁ ରୂପ ଦେଇ ସେ ହୁଅନ୍ତି ଔପନ୍ୟାସିକ । ଜଣେ ଚିତ୍ରଶିଳ୍ପୀଭାବେ ସେ ହୁଅନ୍ତି ସୁପ୍ରତିଷ୍ଠିତ । ତାଙ୍କ ରଚିତ ଅନ୍ୟଏକ ସକାଳ, ଅସୂର୍ଯ୍ୟ ଉପନିବେଶ, ଅଶ୍ୱାରୋହୀର ଗଳ୍ପ, ମନ ଅରଣ୍ୟ । ଅଶ୍ରୁତିର ସ୍ୱର ଆଦି ସୁଖପାଠ୍ୟ ରଚନା । ତାଙ୍କ ବର୍ଣ୍ଣନାର ପ୍ରାଚୁର୍ଯ୍ୟ, ଦର୍ଶନର ତତ୍ତ୍ୱ ଭାରତୀୟ ପରମ୍ପରାରେ ଆଲୋକ ଆଦି ପ୍ରଣିଧାନ ଯୋଗ୍ୟ । ଚିତ୍ରଧର୍ମୀ ପ୍ରକାଶ ଭଙ୍ଗୀ । ଶବ୍ଦ ପ୍ରୟୋଗର ଚିରାଚରିତ ଶିଷ୍ଟତା । ଆବେଗଧର୍ମୀ ଭାଷା ବିନ୍ୟାସ ତାଙ୍କ ରଚନାର ବୈଶିଷ୍ଟ୍ୟ । ଶିକ୍ଷା କର୍ମ ଯୋଗର ପରିପ୍ରକାଶ ପାଇଁ ପରବର୍ତ୍ତୀ ସମୟରେ ସେ ଶିକ୍ଷା ବିଭାଗର ପଦସ୍ଥ କର୍ମଚାରୀରୁ ନିଅନ୍ତି ଅବସର ।

ଜଣେ ଲବ୍ଧପ୍ରତିଷ୍ଠ ସାହିତ୍ୟିକ, ପ୍ରାବନ୍ଧିକ, ଗାଳ୍ପିକ, ଔପନ୍ୟାସିକ, ଚିତ୍ରଶିଳ୍ପୀ, ପରମଗୁରୁଙ୍କର ଜନ୍ମତିଥିରେ ତାଙ୍କର ସହୃଦୟତା ନିକଟରେ ସାମାନ୍ୟ ଉପଢ଼ୌକନ ମାତ୍ର । ଶ୍ରଦ୍ଧା ଓ ସମ୍ମାନର ଲେଖା କେଇ ଧାଡ଼ି ମାତ୍ର ।

ପରମ କାରୁଣିକ, ଦୟାସାଗର ବାବା ଆଖଣ୍ଡଳମଣିଙ୍କ ପାଦପଦ୍ମରେ କାୟ ମନୋବାକ୍ୟରେ ପ୍ରାର୍ଥନା କରୁଛି ରଥ ମହାଶୟ ସପରିବାର, ସବାନ୍ଧବେ, ସଶରୀରେ ସର୍ବକୁଶଳରେ ଦୀର୍ଘଜୀବନ ଲାଭ କରନ୍ତୁ । ଈଶ୍ୱର ତାଙ୍କ ନିରାମୟ ଜୀବନର ସହାୟକ ହୁଅନ୍ତୁ । ଜୟ ଆଖଣ୍ଡଳମଣି ।।

ଆଦର୍ଶ କର୍ମକାଣ୍ଡ ଟୋଲ
ଗ୍ରାମ/ଡାକ - ପଦ୍ମନୀ ପାଳ
ଆଳି, କେନ୍ଦ୍ରାପଡ଼ା

***

# ଜଣେ ଏନ୍.ସି.ସି. ଛାତ୍ରର ଫିଲ୍ଡ଼ ମାର୍ଶଲ ଗଳ୍ପକାର ଚନ୍ଦ୍ରଶେଖର.........

***ହରିହର କର ସୁଧା ପଟ୍ଟନାୟକ***

୧୯୬୫ ଅକ୍ଟୋବର, ପୂଜାଛୁଟି,

ବିକ୍ରମ ଦେବ ମହାବିଦ୍ୟାଳୟ ଜୟପୁରର ଏନ୍.ସି.ସି. ଅଫିସର ଅଧ୍ୟାପକ ଚନ୍ଦ୍ରଶେଖର ରଥଙ୍କ ଦସ୍ତଖତରେ ବାରିପଦା ଏନ.ସି.ସି. କେମ୍ପ ପାଇଁ ବଛାଯାଇଥିବା ଛାତ୍ରଙ୍କ ନାମ ତାଲିକା ନୋଟିସ ବୋର୍ଡ଼ରେ ବାହାରିଲା । ଉତ୍ସୁକ ହୋଇ ମୁଁ ଉପରୁ ତଳକୁ ଦେଖି ଆସିଲି । ଖୁସି ଲାଗିଲା, ବର୍ତ୍ତମାନ ମାଲ-କାନଗିରିର ସିନିୟର ଏଡ୍‌ଭୋକେଟ୍ ଶ୍ରୀପ୍ରଫୁଲ୍ଲ ଚନ୍ଦ୍ର ମହାପାତ୍ରଙ୍କର ମଧ୍ୟ ନା ବାହାରିଛି । ପ୍ରଥମ କରି ମୋର ଏତେ ଦୂର ଯାତ୍ରା । ଜୟପୁରରୁ ବାରିପଦା, ଆନ୍ଧ୍ର ସୀମାନ୍ତରୁ ପଶ୍ଚିମବଂଗ ସୀମାନ୍ତ । ପୁଣି ପ୍ରଥମ ରେଳ ଯାତ୍ରା । ବିଜୟ ନଗର ଠାରୁ ବାରିପଦା ।

ନିର୍ଦ୍ଦିଷ୍ଟ ଦିନର ବହୁ ପୂର୍ବରୁ ବଂଧୁ ପ୍ରଫୁଲ୍ଲ ମହାପାତ୍ର ଓ ମୁଁ ବାରିପଦା ଯାତ୍ରା ପାଇଁ ପ୍ରସ୍ତୁତି ଆରମ୍ଭ କରିଦେଲୁ । ଏନ୍.ସି.ସି. ପୋଷାକ ସହ ଆଉ କଣ ସବୁ ନିଆଯିବ - ତାଲିକା ପ୍ରସ୍ତୁତ ହେଲା । କିଛି କଟା କଟି ଯୋଡ଼ା ଯୋଡ଼ି ଚାଲିଲା । ଦି ଦିନ ଅଛି ତାଲିକା ପ୍ରକ୍ରିୟା ଶେଷ ହେଲା । ଶେଷରେ ଟିଣ ପେଡ଼ି ନେବୁ ନା ଆର୍ମି କେଡେଟ ପାଇଁ ମିଳୁଥିବା ଲମ୍ବ ବସ୍ତାପରି ମୁଣି ନେବୁ । ଚପଲ ନା ବୁଟ । ବାନିଆନ ଅଧଃ ପରିଧାନ କେତୋଟି ଲେଖାଏଁ ନେବାକୁ ପଡ଼ିବ । କେମ୍ପରୁ କେତେବେଳେ ଫୁର୍‌ସତ୍ ମିଳିବ ଯେ ଆମେ ସାଧା ପୋଷାକ ପିନ୍ଧି ସହର ବୁଲିବାକୁ ଯିବୁ । ସେଠି ମାନେ ବାରିପଦାରେ କ'ଣ ସବୁ ମିଳିବ ? ଚିହ୍ନ ସ୍ବରୂପ କ'ଣ ସବୁଅଣାଯାଇପାରେ ? ସେତେବେଳକାର କୋଉ ସିନେମା ଗୀତ ଥିଲା - "ବାରିପଦା ଗରମ ମୁଢ଼ି".... କଲିକତି ଗଂଜି "। ମୁଢ଼ି ତ ଏତେ ଦୂର ଆଣି ହେବ ନାହିଁ । ହଁ ଗଂଜି ଆଣିହେବ ।

ବର୍ତ୍ତମାନ ରାୟଗଡ଼ା ନିକଟ କେଉଁ ଉଚ୍ଚ ବିଦ୍ୟାଳୟରେ ପ୍ରଧାନ ଶିକ୍ଷକ ଥିବା ଶ୍ରୀ ଲିଙ୍ଗରାଜ ତ୍ରିପାଠୀଙ୍କ ପରାମର୍ଶ କ୍ରମେ ବାହାରିଲୁ ଅଧ୍ୟାପକ ରଥଙ୍କ ନିକଟକୁ । ଘର ଫାଟକ ନିକଟରେ ଅଟକିଗଲୁ । ଭେଟିବାକୁ ସାହସ ହେଲା ନାହିଁ । ପୃଥୁଳକାୟ ଶରୀରକୁ ପେରେଡ଼ ପଡ଼ିଆରେ ଯେଉଁ ସିଂହ ରଡ଼ି । ସାମରିକ ପୋଷାକରେ ଯଦି ସେ ଦେଖାଯାଆନ୍ତି ଭାରତର ଫିଲ୍ଡ଼ ମାର୍ଶଲ ପରି, ଆମେ ସବୁ ପଛକୁ ଅନେଇ ଅନେଇ ଦୌଡୁଥିବା ପାକିସ୍ଥାନୀ ସିପାହୀ ପରି । ତିନି ବଂଧୁ ପରସ୍ପରକୁ ଠେଲାପେଲା କରିବାକୁ ଲାଗିଲୁ ।

କିଏ ବାବା ପାଦ କାଢ଼ିବ ସାରଙ୍କ ଘର ଭିତରକୁ ପଶିବାକୁ ? ନା-ବାବା-ଆଉ, କାଲି ଦେଖିବା ।

ତା'ପର ଦିନ ସକାଳ ୯ଟା, କେମ୍ପ ଯିବା ପାଇଁ ଆଜି ସମସ୍ତ ପୂର୍ବ ପ୍ରସ୍ତୁତି ଯେମିତି ସାରିବାକୁ ପଡ଼ିବ । ଆର ଦିନ ସକାଳେ ୮ଘଣ୍ଟାରେ ବିଜୟ ନଗର ଯାଇ ସରକାରୀ ବସ ଧରିବାକୁ ହେବ ।

ପୁର୍ବ ବ୍ୟବସ୍ଥାନୁସାରେ କଲେଜ ହଷ୍ଟେଲ ରୁମ୍ ନଂ ୨୫ରେ ପହଞ୍ଚିଲି । ଲିଂଗା ତ୍ରିପାଠୀ ନିଶ କାଟୁଥିଲା । ହାତରେ ରେଜର ନାହିଁ । ଖାଲି ବ୍ଲେଡ । ଦର୍ପଣ ଭିତରେ ଆମକୁ ଦେଖି ପଗ୍ଚରିଲା, "କମାଣ୍ଡର ନ ହେଲେ ଜଣେ କେପ୍‌ଟାନ ପରି ଦେଖାଯାଉଛି ନା ନାହିଁ ? ପ୍ରଫୁଲ୍ଲ ମହାପାତ୍ର କହିଲେ, ସାରଙ୍କ ପାଖକୁ ଗଲାବେଳେ ସିପାହୀ ଠୁଁ ସାନ । ଆଜି ତୁ ଯିବୁ, ଆମେ ଗେଟ ପାଖରେ ରହିବୁ । ଖୁବ୍ ବଡ଼ ପାଟିରେ ଲିଙ୍ଗା ହସିଲା, କଂସ କି ରାବଣ ପରି । ବେଲ୍ ବୋଟମ ପେଣ୍ଟ ସରୁ ବେଲ୍ଟ-ଧଳା ସାର୍ଟ ଖଣ୍ଡିକ ଇନ୍ କରିଛି । ଡିଓ ସ୍ପ୍ରେ ଟିକଏ ଦି କାଖ-ସାର୍ଟ ଉପରେ ସ୍ପ୍ରେ କରି ବାହାରିଲା । ଓଠରେ ଶିଶିରି ଶବ୍ଦ । ଗ୍ଚହୁଁ ଗ୍ଚହୁଁ ସାରଙ୍କ ଫାଟକ ଆସିଗଲା, କମାଣ୍ଡର ଲିଙ୍ଗା ତ୍ରିପାଠୀ କେପ୍‌ଟେନ ପରେ ସିପାହୀରୁ ମୁଷାଟିଏ ଯେମିତି ହୋଇଗଲା, ଅଗତ୍ୟା ମୋତେ ହିଁ ଠେଲା ପେଲା ପରେ ଭିତରକୁ ଯିବାକୁ ପଡ଼ିଲା । ଭବିଷ୍ୟତର ସୈନିକର ପାଦ ଥରୁଛି । ଗୋଡ଼ ଏପଟ ସେପଟ ହେଲାଣି । ଧଳା ଲୁଙ୍ଗି, ଧଳା ବାନିଆନ ଟାଏ ପିନ୍ଧି ଅଧ୍ୟାପକ ଏନ.ସି.ସି. ଅଫିସର ଶ୍ରୀରଥ ଗୋଟିଏ ଇଜି ଚେୟାର ଉପରେ ବସିଥାଆନ୍ତି । ହାତରେ ବହି । ଆଖିରେ ଚଷମା । ପଗ୍ଚରିଲେ, "କ'ଣ କରସୁଧା ?" ମୁଁ ଚମକି ପଡ଼ିଲି । ନମସ୍କାର ଟିଏ କରିବାକୁ ବି ଭୁଲିଗଲି । ଏତେବଡ଼ କଲେଜ । କେତେ ନା କେତେ ଛାତ୍ର । ତା' ଭିତରେ ମୁଁ । ଫାଷ୍ଟ ଇଏର ଛାତ୍ର । ସହପାଠୀଙ୍କ ସହ କଥା ହେବା ମଧ୍ୟ ମୋ ପକ୍ଷେ ବଡ଼ କଥା ! ତା'ଛଡ଼ା ଅଧ୍ୟାପକ ମାନଙ୍କ ସହ..... । ବାପ୍‌ରେ । ମୋ ପାଟି କେମିତି ଅଠାଳିଆ ଅଠାଳିଆ ଲାଗିଲା । କହିଲି, ନାଇ ସାର..ଏମିତି....ମୁଁ ଯିବି ସାର ?

କିହୋ ଯିବ କୁଆଡ଼େ- କାହିଁକି ଆସିଥିଲ ?

"ନା-ସାର୍ ସେମିତି କିଛି ନୁହେଁ । ପରେ କେତେବେଳେ... ।"

'କେମ୍ପ ପାଇଁ ପ୍ରସ୍ତୁତି ସରିଛି ?

"ହ-ସେଇଥିପାଇଁ---ସେଇଥିପାଇଁ ।"

"କ'ଣ ହେଲା ?"

ପଛକୁ ଫେରି ଗ୍ଚହିଁଲି । ଦି ବନ୍ଧୁ ଆଉ ଦେଖାଯାଉ ନାହାନ୍ତି । ପଗ୍ଚରିଲେ, "ମାମୁଁ ଆସିଛନ୍ତି ? ରଘୁବାବୁ ?"

ମୁଁ କିଛି ବୁଝି ପାରିଲି ନାହିଁ । ମୋତେ କିମିତି କେଜାଣି ଚିହ୍ନିଯାଇଛନ୍ତି । ମୁଁ ଜୟପୁର ବିଧାୟକ ରଘୁନାଥ ପଟ୍ଟନାୟକଙ୍କ ଭଣଜା - ଏହା ବି ଜାଣିଛନ୍ତି । ମୋ ମୁଣ୍ଡ ଘୁରେଇ ଗଲା । ତାଙ୍କ ଧଳା ବାନିଆନ, ଆଉ ଲୁଙ୍ଗି ଦେଖାଯାଉ ନଥିଲା, ମୋ ଆଖିରେ ସାମରିକ ପୋଷାକରେ ଭାରତର ଫିଲ୍ଡ଼ ମାର୍ଶାଲ ଇଂରାଜୀ ଅଧ୍ୟାପକ ଚନ୍ଦ୍ରଶେଖର ରଥ । ସତେଯେମିତି ବସିଛନ୍ତି ସୀମାନ୍ତରେ ଥିବା ଗୋଟିଏ ଗୁରୁତ୍ୱପୂର୍ଣ୍ଣ ଆମ କେମ୍ପରେ । ଆଉ ଆଦେଶ ଅପେକ୍ଷାରେ ମୁଁ ଠିଆ ହୋଇଛି ୧୦ ରୁ ୨୦ ମିଟର ଦୂରରେ । ଡାହାଣ ହାତଟା ମୋର ସେଲ୍ୟୁଟ ଦେବା ଭଙ୍ଗିରେ କପାଳ ସ୍ପର୍ଶ କରିଛି । ମୁଁ ପ୍ରକୃତିସ୍ଥ ହେଲି । କହିଲି, "ସେ ଆଜି ପହଞ୍ଚିବେ ବୋଲି ମାଇଁ କହୁଥିଲେ । ଆଉ ମୁଁ କ୍ୟାମ୍ପ ପାଇଁ ପ୍ରସ୍ତୁତ ବୋଲି କହିବାକୁ ଆସିଥିଲି । କେତେବେଳେ ଯେ ସେ ଜଳଖିଆ ପାଇଁ ନିର୍ଦ୍ଦେଶ ଦେଇଥିଲେ ଜାଣେନି । ମୋତେ ବସିବାକୁ ନିର୍ଦ୍ଦେଶ ଦେଲେ । କେମିତି ଡରି ଡରି ବାରଣ୍ଡା କଡ଼ର ଚୌକିରେ ବସିଗଲି, ସାମନା ଟେବୁଲରେ ଦୁଇଟି ରସଗୋଲା ଗୋଟିଏ ସାମୋଷା-ଘୋଡ଼ା ହୋଇରହିଥିବା କପେ ଚ୍ୱହା । ସାର ଖାଇବା ଆରମ୍ଭ କରି ଆଦେଶ ଦେବା ଭଙ୍ଗିରେ କହିଲେ, "ଖାଅ", ଧଡ଼ କରି ହାତବଢ଼େଇ ଖାଇବାରେ ଜଗିଲି । ମିନିଟିଏ ଭିତରେ ସବୁ ସାରି ଦେଇ ଠିଆ ହେଲି । କହିଲେ, "ଯାଆ", ପବନ ବେଗରେ ବାହାରି ଆସିଲି । ଗେଟ କବାଟ ପକେଇ ଦେଲି । ଦେଖିଲି ବନ୍ଧୁ ଦିହେଁ ବହୁ ଦୂରରେ । ଛାତିର ଧଡ଼କନ୍ ଚ୍ୱଲିଥାଏ । ତଥାପି ଛାତି ଫୁଲେଇ ଚ୍ୱଲିଲି । କହିଲି ଏନ୍.ସି.ସି. ସମ୍ପର୍କରେ ଅନେକ କଥାବାର୍ତ୍ତା । ପରେ ଆଚ୍ଛା କରି ଖୁଆ ପିଆଟାଏ ବି ହେଲା । ହାକୁଟି ମାରିଲି । ବନ୍ଧୁ ଅନୁତାପ କଲେ । ରସଗୋଲା ଦି'ଟା ଲେଖାଏଁ ଗଲା । ଭୋଜି ଭାତରେ ଖିରି ମିଳେ । କେବେ କେମିତି ବର୍ଷରେ ଥରେ ଦି ଥର ଏମିତି ହୋଟେଲ ରସଗୋଲା କି ଗୋଲାପ ଜାମୁ ମିଳିଥାଏ । ମୋ ଭାଗ୍ୟକୁ ତାରିଫ କଲେ ।

ଅନେକ ଦିନ ପରେ,

୧୯୯୦ ରୁ ୧୯୯୧

ଭୁବନେଶ୍ୱର ବରମୁଣ୍ଡା କଲୋନୀ ରାସ୍ତା ।

ବଂଧୁ ପ୍ରଫୁଲ୍ଲ ମହାପାତ୍ର ସେତେବେଳେ ରାଜ୍ୟ ଟ୍ରିବୁନାଲରେ ଆଇନ ବ୍ୟବସାୟ କରୁଥାଆନ୍ତି । ମୁଁ ତାଙ୍କୁ ଘରେ ଥାଏ, ପ୍ରଭାତ ଭ୍ରମଣ ସମୟରେ ସାରଙ୍କ ସହ ଦେଖା ହେଲା । ସାମନାକୁ ଯାଇ ନମସ୍କାର ଜଣେଇଲି ।

କଲେଜ ଜୀବନରେ ଦେଖିଥିବା ମୋର ଫିଲ୍ଡ଼ ମାର୍ଶାଲ, ଇଂରେଜ ଅଧ୍ୟାପକ ଶ୍ରୀଯୁକ୍ତ ଚନ୍ଦ୍ରଶେଖର ରଥ । ସେଇ ମଣିଷ । ସେଇ ଓସାରିଆ ଛାତି । ଧଳା ବାନିଆନ । ଧଳା ପେଣ୍ଟ । ହାତରେ ଚିକ୍ ଚିକ୍ କରୁଥିବା କଳା ରୁଲ୍‌ବାଡ଼ି । ପେରେଡ଼ ଗ୍ରାଉଣ୍ଡର

ହିଂସ୍ରତା ନାହିଁ । ସିଂହର ଗର୍ଜନ ନାହିଁ । ହସ ହସ ମୁହଁ । କେମିତି କଅଁଳିଆ କଅଁଳିଆ ଲାଗିଲା । ପଚ୍ଚାରିଲେ, କ'ଣ କରସୁଧା ତମେ ନବୋଦୟ ଛାଡ଼ି ଦେଲ ?'' ମୁଁ ପୁଣିଥରେ ହତ ଚକିତ ହୋଇ ଖାଲି ଅନେଇଲି । ପୁଣି ସେଇ ସ୍ୱର, ''କିଛି କହିଲନି ଯେ ?''

ମୁଁ ଯେ କୋରାପୁଟ ନବୋଦୟ ବିଦ୍ୟାଳୟର ଅଧ୍ୟକ୍ଷ ଥିଲି । ସେ ଖବର ରଖିଛନ୍ତି । ମାତ୍ର ବର୍ଷଟିଏ ର ସମ୍ପର୍କ - ଯେତେବେଳେ ମୁଁ ବିକ୍ରମ ଦେବ ମହାବିଦ୍ୟାଳୟ ରେ ପଢୁଥିଲି । କଲେଜ ଛାଡ଼ି ମୁଁ ଘରୋଇ ଭାବେ ବି.ଏ. ଏମ.ଏ. ବି.ଏଡ଼. ପରେ ଆଇନ ଡିଗ୍ରୀ ପାଇଥିବା ସବୁ ଖବର ତାଙ୍କ ପାଖରେ । ଆତ୍ମ ଗର୍ବରେ ମୋ ଦେହ ଫୁଲି ଉଠିଲା, ସାରଙ୍କର ମନେ ରହିବା ପରି ଛାତ୍ର ଟିଏ ହୋଇ ପାରିଲି - ସେଇ ଯଥେଷ୍ଟ ।

ସେ କହୁଥାନ୍ତି, 'ପ୍ରଫୁଲ୍ଲ ଏଠି ରହିଲେ । ବସନ୍ତ କେନ୍ଦ୍ରସରକାର ଅଧିନରେ ବିଶାଖାପାଟଣାରେ ଡାକ୍ତର । ସ୍ନେହ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ରାଜନୀତି ବିଭାଗରେ ପ୍ରାଧ୍ୟାପକ । ଗୁରୁଚରଣ ଆଇ.ଆର.ପି.ଏମ୍. ର ବିଭାଗୀୟ ମୁଖ୍ୟ ପରା ?'' ସେ କହିଚାଲିଛନ୍ତି । ଆମେ ଦୁହେଁ ଦୁହିଁଙ୍କୁ ଖାଲି ଚାହୁଁ ଥାଉ । ଗୋଟି ଗୋଟି କରି ସେ ଅନେକଂକୁ ମନେ ରଖିଛନ୍ତି । ଅଧ୍ୟାପକ ଶ୍ରୀଚନ୍ଦ୍ର ଶେଖର ରଥ ଅଧ୍ୟାପନାରେ ନିଜକୁ ସିମୀତ ରଖୁନଥିଲେ । ସେ ପ୍ରତିଟି ଛାତ୍ରର ଏକାନ୍ତ ନିଜର ଏକାନ୍ତ ଆପଣାର ହୋଇ ଯାଇପାରୁଥିଲେ । ସେ ଥିଲେ ପ୍ରତ୍ୟେକ ଛାତ୍ର ପାଇଁ A Friend, philosopher and guide କିନ୍ତୁ ଆମେ କେତେଦୂରର ଯୋଗ୍ୟ ହେଲୁ ଯେ ତାଙ୍କ ପାଖରେ ଦିଗଦର୍ଶନ ନେବୁ ? ତେବେ ସୂର୍ଯ୍ୟର ଆଲୋକପରି ସମସ୍ତ ଛାତ୍ରଙ୍କ ପାଇଁ ତାଙ୍କ ଆଶୀର୍ବାଦ ଅବିରତ ବର୍ଷିବାରେ ଲାଗିଛି ।

କଲେଜ ଛାଡିବା ପରେ ଥରେ ମାତ୍ର ଦେଖା ହୋଇଥିଲା, ଯଦି କେବେ ଦେଖାହୁଏ ତାହା ୨ୟ ଥର ହେବ । ସେତିକି ବେଳେ ତାକୁ ମନେ ପକେଇ ଦେଇ କହିବି , ''ମୁଁ ସେଇ କରସୁଧା ପଟ୍ଟନାୟକ-ଆଜି ପାଞ୍ଚଟି ପୁଅ ଝିଅର ଜନକ ପୌର ଉଚ୍ଚ ବିଦ୍ୟାଳୟର ପ୍ରଧାନ ଶିକ୍ଷକ - (ଯଦି ସେ ମନେ ପକେଇ ନ ପାରନ୍ତି)

ମାଦଳା ସାହି, ଜୟପୁର,
ଫୋନ୍ - (୦୬୮୫୪) ୨୪୧୭୨୨

# କଳଙ୍କ ହୀନ ଚନ୍ଦ୍ର

*ପ୍ରସାଦ ତ୍ରିପାଠୀ (ବାବୁଲି)*

ପ୍ରାୟ ତିରିଶ ବର୍ଷ ତଳେ ପ୍ରଥମେ ଦେଖିଥିଲି ବୋଧହୁଏ ଭୁବନେଶ୍ୱର ଶ୍ରୀଅରବିନ୍ଦ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ରରେ ଏହାମଧ୍ୟରେ ତାଙ୍କୁ ୭୫ ବର୍ଷ ହୋଇଗଲାଣି । ମାତ୍ର କିଛି ଫରକ୍ ନାହିଁ । ସେଥିପାଇଁ ତାଙ୍କୁ ୭୫ ବର୍ଷର ତରୁଣ କହିବାକୁ ଇଚ୍ଛା ହୁଏ ।

ପ୍ରପତ୍ତି ମହାଶୟଙ୍କ ସହିତ କଥା ହେବା ପାଇଁ ୨ନମ୍ବର ଇୟୁନିଟରେ ଥିବା ଶ୍ରୀଅରବିନ୍ଦ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ରକୁ ସେ ଆସିଥିଲେ । ଅଧ୍ୟାପକ ଚନ୍ଦ୍ରଶେଖର ରଥ ଏବଂ ଜଣେ ମାଙ୍କ ପ୍ରେମୀ ତଥା ବିଚକ୍ଷଣ ବକ୍ତା ବୋଲି ପ୍ରପତ୍ତି ମହାଶୟ ଆମ ସହିତ ପରିଚୟ କରାଇଦେଇଥିଲେ । ତା'ପରେ ଅନେକଥର ଅନେକ କାର୍ଯ୍ୟ ସଂକ୍ରାନ୍ତରେ ତାଙ୍କ ସହିତ ସାକ୍ଷାତ କରିଛି । ପ୍ରତ୍ୟେକ ଥର ସେ ସମ୍ପୂର୍ଣ୍ଣ ନୂତନ ଭାବରେ ମୋତେ ପ୍ରତୀୟମାନ ହୋଇଛନ୍ତି, ଜଣେ ପ୍ରବୀଣ ଶିକ୍ଷକ, ଅତ୍ୟନ୍ତ ଉଚ୍ଚକୋଟୀର ଲେଖକ, ଇଂରାଜୀ ଏବଂ ଓଡ଼ିଆ ଭାଷାରେ ଧୁରୀଣ, ଭାଷାବିତ୍, ସଫଳ ପ୍ରଶାସକ, କୁଶଳୀ କଳାକାର, ଦାର୍ଶନିକ, ବକ୍ତା, ସଂଗଠକ ଏବଂ ସର୍ବୋପରି ଅତ୍ୟନ୍ତ ଅମାୟିକ ତଥା ସରଳ ଏକ ବିରଳ ବ୍ୟକ୍ତିତ୍ୱ ।

ଭୁବନେଶ୍ୱରର କୌଣସି ଏକ ଶ୍ରୀଅରବିନ୍ଦ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ରର ଏକ ବିଶେଷ ଉତ୍ସବରେ ଅଧ୍ୟାପକ ରଥ ଆଥାନ୍ତି ମୁଖ୍ୟବକ୍ତା । ଜଣେ କେହି ପ୍ରତିଷ୍ଠିତ ରାଜନୈତିକ ବ୍ୟକ୍ତି ମୁଖ୍ୟଅତିଥି । ଚିରାଚରିତ ଅଭ୍ୟାସରେ ମୁଖ୍ୟ ଅତିଥି ବୋଧହୁଏ ଠିକ୍ ସମୟରେ ପହଞ୍ଚିବେନାହିଁ (ସାଧାରଣତଃ ରାଜନୈତିକ ବ୍ୟକ୍ତିମାନେ ଯଥା ସମୟରେ ପହଞ୍ଚି ପାରନ୍ତି ନାହିଁ) ବୋଲି ଧାରଣା କରି ଶିକ୍ଷାକ୍ରେନ୍ଦର କର୍ମକର୍ତ୍ତାମାନେ ସଭାର ଆୟୋଜନ ପାଇଁ ସମାନ୍ୟ ବିଳମ୍ବ କରିଦେଇଥାନ୍ତି । ମାତ୍ର ଅଧ୍ୟାପକ ରଥ ନିର୍ଦ୍ଧାରିତ ସମୟର କିଛି ପୂର୍ବରୁ ବିଦ୍ୟାଳୟରେ ପହଞ୍ଚି ଗଲେ । ଶିକ୍ଷାକେନ୍ଦ୍ରର ଅଧ୍ୟକ୍ଷ ସାର୍‌ଙ୍କୁ ନିଜ କୋଠରୀକୁ ପାଛୋଟି ନେଇ କହି ପକାଇଲେ ସାର୍ ଆପଣ Embarrassingly punctual ! ଏବେ ଯଦି କାହାରି ନିମନ୍ତ୍ରଣ ରକ୍ଷାକରି ମୋତେ କୌଣସି ସ୍ଥାନକୁ ଯିବାକୁ ପଡ଼େ ଏବଂ ଯଥା ସମୟରେ ଆୟୋଜକମାନେ ପ୍ରସ୍ତୁତ ହୋଇନଥାନ୍ତି ସାଙ୍ଗେ ସାଙ୍ଗେ ମୋର ସାର୍‌ଙ୍କର ଏହି ଘଟଣାଟି ମନେ ପଡ଼େ ।

ଶ୍ରୀମା ଶ୍ରୀଅରବିନ୍ଦଙ୍କ ସମ୍ପର୍କରେ ବକ୍ତୃତା ଦେବାପାଇଁ ସାର୍‌ଙ୍କୁ ଓଡ଼ିଶାଠାରୁ ଦିଲ୍ଲୀ, ନୈନିତାଲ ପ୍ରଭୃତି ଅନେକ ସ୍ଥାନରୁ ନିମନ୍ତ୍ରଣ ଆସେ । କହିବା ବାହୁଲ୍ୟ, ଥରେ

ଯଦି ସାର୍ ସମ୍ମତି ଦେଇଥାଆନ୍ତି ତେବେ ପରିସ୍ଥିତି ଯେତେ ଜଟିଳ ହେଲେ ମଧ୍ୟ ସେ ଅବଶ୍ୟ ଯାଆନ୍ତି ।

ନିଜ ଜୀବନ ଚର୍ଯ୍ୟାରେ ଅତ୍ୟନ୍ତ କଠୋର ଭାବରେ ସେ ଶୃଙ୍ଖଳିତ । ରାତିରେ ବିଶ୍ରାମନେବା, ସକାଳୁ ଶଯ୍ୟାତ୍ୟାଗ, ପ୍ରାତଃଭ୍ରମଣ, ଅଧ୍ୟୟନ, ଭୋଜନ ଇତ୍ୟାଦି ସବୁ କିଛି ଠିକ୍ ସମୟ ମୁତାବକ । ସେଇଥିପାଇଁ ଯଦି କୌଣସିଠାରେ ସାନ୍ଧ୍ୟ ଅଧିବେଶନ ସାରି ଭୁବନେଶ୍ୱର ଫେରିବାପାଇଁ ବିଳମ୍ବ ହେବାର ସମ୍ଭାବନା ଥାଏ ସେଇଠି ରାତ୍ରି ଯାପନର ସମସ୍ତ ବ୍ୟବସ୍ଥା କରିବାପାଇଁ ନିଶ୍ଚୟ ବରାଦ କରିଦେବେ ।

ଥରେ ସାରଙ୍କୁ ଦିଲ୍ଲୀ ଆଶ୍ରମରେ ଥିବା ସମୟରେ କୌଣସି ଏକ ବିଷୟରେ ବକ୍ତୃତା ଦେବାକୁ ପଡ଼ିଲା । ତା' ପୂର୍ବରୁ ଦିଲ୍ଲୀ ଆଶ୍ରମରେ ସେ କେବେହେଲେ ବକ୍ତୃତା ଦେଇନଥିଲେ । ଥରେ ତାଙ୍କ ବକ୍ତୃତାର ସ୍ୱାଦ ପାଇବା ପରେ 'ତାରା'ଦି ତାଙ୍କୁ ଆଉ କେତୋଟି ବିଷୟରେ କହିବାକୁ ଅନୁରୋଧ କଲେ । କ୍ରମେ କ୍ରମେ ଦିଲ୍ଲୀଠାରୁ ନୈନିତାଲ, ଆହ୍ଲାବାଦ ଇତ୍ୟାଦିକୁ ସାର୍‌ଙ୍କୁ ଯିବାକୁ ହେଲା । କୌଣସି ଏକ ଉତ୍ସବରେ ସାର୍, ବକ୍ତୃତା ଦେଇ ଭୁବନେଶ୍ୱର ଫେରିବାପରେ 'ତାରା'ଦି ମୋତେ ଫୋନ୍‌ରେ କହିଲେ "Such a tremendous talent can be so humble & simple is hard to believe."

ଉତ୍ସାହିତ କରିବାରେ ସାର୍ ଏକ ସିଦ୍ଧ ବ୍ୟକ୍ତି । ଯଦି କୌଣସି କାରଣରୁ କେହି ନିଜକୁ ଅପାରଗ ବୋଲି ଭୟ କରୁଥିବ ତେବେ ତା'ର ଅଧ୍ୟାପକ ରଥଙ୍କ ସହିତ କୌଣସି ମତେ ପରିଚୟ ହେବା ଆବଶ୍ୟକ । ତା' ମଧ୍ୟରେ ଥିବା ଯାବତୀୟ ସାମର୍ଥ୍ୟକୁ ସେ ପ୍ରକାଶ କରାଇ ପାରିବେ ।

ଅନେକ ବିଳମ୍ବରେ ''ମାତୃଭବନ ପତ୍ର'' ଜରିଆରେ ମୁଁ କିଛି ପୂର୍ବସ୍ମୃତିକୁ ''ଏବେବି ମନେପଡ଼େ'' କ୍ରମରେ ଲେଖିବାକୁ ଆରମ୍ଭ କଲି, ଅବଶ୍ୟ ଏଥିପାଇଁ ମାତୃଭବନରୁ ମାମୁଁ (ଶ୍ରୀ ଗଦାଧର ମିଶ୍ର) ପ୍ରଥମେ ପ୍ରେରଣା ଦେଲେ । ମାତ୍ର ଏକ ଭାଷା ବିହୀନ ଲେଖାକୁ ବା କିଏ କାହିଁକି ପଢ଼ିବ ! ମାତ୍ର ସର୍ବପ୍ରଥମେ ଲେଖା ପଢ଼ି ଟେଲିଫୋନ୍‌ରେ ଅଧ୍ୟାପକ ରଥ ମୋତେ ଆଶୀର୍ବାଦ ଦେବା ଢ଼ଙ୍ଗରେ ଉତ୍ସାହିତ କଲେ । ଜଣେ ଧୁରୀଣ ପଣ୍ଡିତ, ଭାଷାବିତ୍ ଗୋଟିଏ ଭାଷାହୀନ ଲେଖାକୁ ଏଭଳି ଆଗ୍ରହର ସହିତ ପଢ଼ିବା ଏବଂ ଆନ୍ତରିକଭାବରେ ଆନନ୍ଦ ପ୍ରକାଶ କରିବା ମୋତେ ଲାଗିଲା । ଯେପରି ଅତ୍ୟନ୍ତ ଶ୍ରଦ୍ଧାବଶତଃ ସାର ଏପରି କହୁଛନ୍ତି । ମାତ୍ର ସାର୍‌ଙ୍କର ମନ୍ତବ୍ୟ —'' ବାବୁଲି ତୁମ ଲେଖାପଢ଼ି ଲାଗିଲା ତୁମେ ମୋତେ ମୋ ଆଗରେ ବସି ଘଟଣାଟି ବର୍ଣ୍ଣନା କରୁଚ । ମୋର ଭାଷା କ'ଣ ହେବ'' ? ଏତେ ପ୍ରଗାଢ଼ ତଥା ଗୁରୁତ୍ୱ ପୂର୍ଣ୍ଣ ମନ୍ତବ୍ୟ କେବେ ଜଣେ ଅନ୍ତର୍ଯ୍ୟାମୀ ଛଡ଼ା

ଆଉ କହି ଦେବା ସମ୍ଭବ ନୁହେଁ । ତା ଆଗରୁ ମୋ ନିଜ ଲେଖା ପ୍ରତି ମୋର ସମବେଦନା ହିଁ ଥିଲା ମାତ୍ର ତା' ପରେହିଁ ମୁଁ ତାକୁ ଉପଭୋଗ କରିବା ଆରମ୍ଭ କଲି ।

କୁମାର ପୂର୍ଣ୍ଣିମାରେ ଜନ୍ମ ହେତୁ ବାପା ମା' ନିଶ୍ଚୟ ଚନ୍ଦ୍ରଶେଖର ନାମକରଣ କରିଥିବେ । ମାତ୍ର ନିଜେ ତା'ଠାରୁ ଯଥେଷ୍ଟ ଉର୍ଦ୍ଧ୍ୱକୁ ଯାଇ ସେ ନିଜନାମକୁ ପ୍ରତିପାଦିତ କରିପାରିଛନ୍ତି । ପିଲାଦିନେ ପଢ଼ିଥିଲି ଚନ୍ଦ୍ରରେ କିଛି କିଛି କଳଙ୍କ ଥାଏ । ସାର୍‌ଙ୍କୁ ଚତୁର୍ଦ୍ଦିଗରୁ ଅତ୍ୟନ୍ତ ଖିନ୍ ଭିନ୍ ଭାବରେ ଦେଖିବା ପାଇଁ ସେ ମୋତେ ସୁଯୋଗ ଦେଇଛନ୍ତି । ନିଜର ଯାବତୀୟ ପ୍ରକାର ସାମର୍ଥ୍ୟରେ ମୁଁ ସାର୍‌ଙ୍କୁ ଖୁଣ୍ଟିନାଣ୍ଟି ପର୍ଯ୍ୟବେକ୍ଷଣ କରିଛି । ମାତ୍ର ଏପର୍ଯ୍ୟନ୍ତ କୌଣସି କଳଙ୍କର ସାମାନ୍ୟତମ ଆଭାସ ପାଇନାହିଁ ।

ମୋ ପାଇଁ ସିଏ ''କଳଙ୍କହୀନ ଚନ୍ଦ୍ର''

ମାତୃଭବନ, କଟକ

***

୭

# ପଥପ୍ରାନ୍ତେ ପଂଚସ୍ତରି

***ଚନ୍ଦ୍ରଶେଖର ରଥ***

ବାକି ସବୁକିଛି ଅପରିବର୍ତିତ ରହି ଯଦି କେବଳ ମୁଁ ହିଁ ଅନୁପସ୍ଥିତ ହୋଇଥାନ୍ତି, ଆପଣମାନଙ୍କ ସ୍ନେହ ଓ ଶ୍ରଦ୍ଧା-ମଣ୍ଡିତ ଏ ଗ୍ରନ୍ଥଟି 'ସ୍ମରଣିକା' ହୋଇ ଯାଇଥାନ୍ତା । ମୁଁ ଉପସ୍ଥିତ ଥିବାରୁ ଏହା ଏକ ଅଭିନନ୍ଦନ ଗ୍ରନ୍ଥ ରୂପେ ନାମିତ ହୋଇଛି ।

ଏ ବର୍ଷ କେଜାଣି କାହିଁକି ଆପଣମାନଙ୍କ ଗହଣରେ ମୋର ଉପସ୍ଥିତି ସେପରି କିଛି ଅପରିହାର୍ଯ ମନେ କରୁ ନାହିଁ । ଲାଗୁଛି ସତେ ବା ଆପଣମାନଙ୍କ ସ୍ୱାଧିକାରଭୁକ୍ତ ଏ ଗ୍ରନ୍ଥ ପରିସର ଭିତରେ ମୋର ଆବିର୍ଭାବ ଅପ୍ରତ୍ୟାଶିତ ଓ ଅବାନ୍ତର । ମୁଁ ସତେ କିଏ କି ଏଠି ମୋ ପାଇଁ ସ୍ଥାନ ଆବୋରି ବସିବି ଏବଂ ଯେଉଁ ଚନ୍ଦ୍ରଶେଖର ରଥଙ୍କୁ ନେଇ ଆପଣମାନେ ଏତେ ଚମତ୍କାର କଥା କହିଛନ୍ତି ତାଙ୍କ ସହିତ ମୋର ସଂପର୍କ ବା କ'ଣ ?

ବିଶ୍ୱାସ କରନ୍ତୁ ମୁଁ ସେ ବ୍ୟକ୍ତିଟିକୁ ଜମା ଚିହ୍ନି ନାହିଁ । ଆପଣଙ୍କ ଗବାକ୍ଷରେ ଗ୍ୱହିଁଲେ ସୁଦ୍ଧା ମୋତେ କୌଣସି ପରିଚିତ ଆକୃତି ଦେଖାଯାଉ ନାହିଁ । ସେ 'ଅସାଧାରଣ' 'ଅନବଦ୍ୟ' 'ଭାଗବତ ପୁରୁଷ' ସତେ କିଏ ଯାହାଙ୍କ କପାଳରେ 'ତିଳକ' ସୁଦ୍ଧା ଆପଣଙ୍କୁ ଦେଖା ଯାଉଛି ? ଆପଣମାନେ ନିଜ ନିଜ ଲେଖାର ଇନ୍ଦ୍ରଜାଲରେ ଯେଉଁ କୁହୁକ ସୃଷ୍ଟି କରିଛନ୍ତି ତାହା ମୋ ପାଇଁ ଏକ ବିସ୍ମୟ । ତା' ଅପେକ୍ଷା ଅଧିକ ବିସ୍ମୟ ସେଇ ଅଲୌକିକ ଦ୍ରବଣ ଯାହାର ପ୍ରଲେପ ଦେଇ ଆପଣ ସେ କୁହୁକଟିକୁ ଲାଳନ କରିଛନ୍ତି । ଆପଣଙ୍କ ଅନାବିଳ ମନ-ପ୍ରାଣରେ ସ୍ୱତଃସ୍ଫୁର୍ତ, ସହଜ ଓ ସ୍ୱାଭାବିକ ସ୍ନେହ, ଆଦର ଓ ଶ୍ରଦ୍ଧାର ମୋହାଞ୍ଜନ-ରଂଜିତ 'ମିତ୍ରସ୍ୟ ଚକ୍ଷୁଷା' ଆପଣ ଗ୍ୱହିଁଦେଇଛନ୍ତି : ଶୁଖିଲା ଡାଳରେ ଫୁଲ ଫୁଟି ଯାଇଛି । ସବୁ ଫୁଲ ଆପଣଙ୍କର, ଆପଣଙ୍କ ଦୃଷ୍ଟିର, ମହାନୁଭବତାର, ମିତ୍ରପଣର; ତା'ର ନୁହେଁ ।

ଆପଣଙ୍କର ଏହି ସ୍ୱଚ୍ଛ, ସ୍ୱତଃସ୍ଫୁର୍ତ 'ମିତ୍ରପ୍ରାଣ' ପାଇଁ ମୁଁ କିଂଚିତ୍ ଅପ୍ରତିଭ ବୋଧ କରୁଛି, କିଛି ମାତ୍ରାରେ ଉଦ୍‌ବିଗ୍ନ ଓ ଆତଙ୍କିତ ମଧ୍ୟ ମନେ କରୁଛି । କାହିଁକି ଜାଣନ୍ତି ? କାଳେ ଆପଣମାନେ ଏ 'ଅସତର୍କତା' ପାଇଁ ଲାଂଛିତ, ଉପହୃତ, ଦଣ୍ଡିତ ହୋଇଯିବେ ଏଇ ଭୟରେ । ଆପଣଙ୍କ ଏ 'ଦୁର୍ବଳତା' ପ୍ରକାଶ ପାଇବା ପରେ କିଛି ଗୁଞ୍ଜରଣ, ଶୁଣାଯାଇପାରେ । 'ବିଜ୍ଞଜନ'ମାନେ ଭ୍ରୁକୁଟେକି ଗ୍ୱହିଁପାରନ୍ତି ଯାହାର ବିବିଧ

ଅର୍ଥ ଥାଇପାରେ : ତାଙ୍କ ଦୃଷ୍ଟିରେ ସବୁଠାରୁ ବଡ଼ ପ୍ରମାଦ ହୋଇ ପାରେ ଯେ ଆପଣମାନେ ଅପାତ୍ରରେ ଅଭିନନ୍ଦନ ବୃଷ୍ଟି କରିଗଲେ । ''ଆଉ କିଛି କାଳ ଧୈର୍ଯ୍ୟ ଧରି ରହି ପାରିଲେ ନାହିଁ, ସେ ଏଇଠୁ ବିଦାୟ ନେବାପର୍ଯ୍ୟନ୍ତ ? ଜଣେ ଜିଅନ୍ତା ମଣିଷ ଉପରେ ଏପରି ଭାବାବେଗ ପ୍ରକାଶ କରିବାର ଅବାଞ୍ଛିତ ପରଂପରା ଆମର ନାହିଁ ।''

ଆପଣଙ୍କ ଭଳି ସହୃଦୟ ସଜ୍ଜନମାନେ କାଳେ ନିଜର ସରଳ ସୁହୃଦ୍‌ପଣ ପାଇଁ ଲାଂଛିତ ହୋଇଯିବେ ସେହି ଭୟରେ ମୁଁ ଉଦ୍‌ବିଗ୍ନ ବୋଧ କରୁଛି ଏବଂ ଆପଣଙ୍କୁ ନିରପଦ୍ରୁତ ରଖିବାକୁ ମୁଁ ହେଲେ ଅନୁପସ୍ଥିତ ହୋଇଥାନ୍ତି — ଏଭଳି ଏକାନ୍ତ ଇଚ୍ଛା ନିରବରେ ପୋଷଣ କରୁଛି । ଅନ୍ତତଃ ଜୀବନ୍ତ ମଣିଷଟାକୁ ଅଭିନନ୍ଦିତ କରିବାର ଅପବାଦ ଆପଣଙ୍କୁ ନ ଲାଗୁ !

ପଥପ୍ରାନ୍ତେ ପଂଚସ୍ତରି ଆସିଛି । ସେଥିରେ ଚକିତ ବା ଉଲ୍ଲସିତ ହେବାର କିଛି ନାହିଁ, ଆତଙ୍କିତ ହେବାର ମଧ୍ୟ କିଛି ନାହିଁ । ଯାତ୍ରୀ ପାଇଁ ତ ଠିଆ ହେବା ମନା— କ୍ଲାନ୍ତିରେ ହେଉ ଅଥବା ଅନୁରକ୍ତିରେ । ଚଳମାନ ମେଘଖଣ୍ଡ ପରି ପଞ୍ଚସ୍ତରି; ପ୍ରବହମାନ ପାଣିଧାର ପରି ବିଚରା ଯାତ୍ରୀ ! କିଏ କାହାକୁ ଅପେକ୍ଷା କରିବ ? ପଞ୍ଚସ୍ତରି ଆଢୁଆଳରେ ସ୍ମୃତି ଭାରରେ ଟଳମଳ ଚୌସ୍ତରି ବର୍ଷ ନିର୍ବିକଳ୍ପ ଠିଆରହିଛି । ସେଥିରେ ପ୍ରତି ମୁହୂର୍ତ୍ତ, ସ୍ଥିର, ବର୍ତ୍ତୁଳ, ପରିପୂର୍ଣ୍ଣ । ସେ ଭୂମିରେ ଯୋଗ ବିଯୋଗ ନାହିଁ । ସବୁ ସ୍ୱୟଂ ସଂପୂର୍ଣ୍ଣ, ସମାଧିସ୍ଥ । ଅତୀତ ଏକ ଦେବାଳୟ, ଅମର, ନିର୍ଜର ମାନଙ୍କ ଭୂମି । ସେଇଠି ଅକ୍ଷାଂଶ ଦ୍ରାଘିମାରେଖା ପରି ସ୍ଥିର ଦୃଷ୍ଟିରେ ଗ୍ରହିଁ ରହିଛନ୍ତି ସ୍ଫିଙ୍କ୍ସମାନେ । ସେମାନଙ୍କର ବିକଳ୍ପ ସିନା ନାହିଁ, କିନ୍ତୁ ବିଲୟ ଅଛି । ଚେତନାକୁ ନିଶ୍ଚେତନା ଗ୍ରାସ କଲାପରି ସ୍ମୃତିକୁ ବିସ୍ମୃତି ଗ୍ରାସ କରିଯାଏ । ଅତୀତ କ୍ରମଶଃ ଅପସୃୟମାଣ ହୋଇ ଅଦୃଶ୍ୟ ହୋଇଯାଏ ।

ତଥାପି ଅନାଗତ ଉପରେ ତ' ଆୟତ୍ତ ନାହିଁ । ଏଇ ଅତୀତଟି ହିଁ ଆମର ସଂପଦ । ଅନାଗତ ସବୁବେଳେ ଏକ ସ୍ୱପ୍ନ, ଏକ ସମ୍ଭାବନା । ଏଣୁ ଆପଣମାନେ ଲେଖାର ଇନ୍ଦ୍ରଜାଲରେ ଯେଉଁ କୁହୁକ ସୃଷ୍ଟି କରିଛନ୍ତି, ମୁଁ ଯେ ତାଙ୍କ ଠାରୁ ଭିନ୍ନ, କାହାର ଦ୍ୱାହି ଦେଇ ମୁଁ ତାହା ପ୍ରମାଣ କରିପାରିବି ? କେବଳ ସେଇ ନିତାନ୍ତ ବ୍ୟକ୍ତିଗତ, ଘନିଷ୍ଠ, ଅନନ୍ୟ, ଅତୀତର ଗମ୍ବୁଜ ଭିତରୁ କିଛି ପ୍ରତିଧ୍ୱନି କଣ ନିହାତି ଶୁଣାଇବାକୁ ପଡ଼ିବ ?

କିନ୍ତୁ ଆପଣଙ୍କୁ ସେପରି ଭାରାକ୍ରାନ୍ତ କରିବାର କୌଣସି ପ୍ରୟୋଜନ ଥିଲା ପରି ମୁଁ ଅନୁଭବ କରୁନାହିଁ । ବୟସ ବଢ଼ିଗଲେ ସମସ୍ତେ ପ୍ରାୟ ସ୍ମୃତିସର୍ବସ୍ୱ ହୋଇଯାନ୍ତି । ଅତୀତର ପସରା ମେଲି ଦୁଇପୁରୁଷ ତଳ ଧାଡ଼ିର ଅବୋଧ ନାତି ନାତୁଣୀଙ୍କୁ ଚକିତ କରିବା ଓ ନିଜେ ଆମୋଦିତ ହେବା ଆଉ ଏକ ପ୍ରସଙ୍ଗ । ଅତୀତର ରୋମନ୍ଥନ କରିବା

ହିଁ ଏକ ପ୍ରକାର ବାଳୁତ କର୍ମ । ସେଥିରେ ସବୁ ମନେ ନ ପଡ଼ିଲେ ଖଂଜି ଦିଆଯାଏ । ଅଡୁଆ ଲାଗିଲେ ଆଡ଼େଇ ଦିଆଯାଏ । ଆତ୍ମଜୀବନୀ ଟିଏ ଲେଖି ବସିବା ଯେତିକି ସ୍ମୃତିବିଳାସ ସେତିକି କଳ୍ପନାବିଳାସ; ବୋଧହୁଏ ସମ୍ଭାବନାହୀନ ବାର୍ଧକ୍ୟର ଏକମାତ୍ର ବିଳାସ । ଆପଣମାନେ ସମସ୍ତେ ପାକଳ ମଣିଷ । ଆପଣଙ୍କ ଗହଣରେ ପଶିଆସିଛି ବୋଲି ତା'ର ସୁଯୋଗ ନେବାକୁ ମୁଁ ଚାହୁଁ ନାହିଁ ।

ବରଂ ପଛକୁ ନ ଚାହିଁ ଆଗକୁ ମୁହଁ କଲେ କ୍ଷତି କ'ଣ ? ଆଗକୁ କିଛି ଦିଶେ ନାହିଁ ସତ କିନ୍ତୁ ତାରି ଭିତରେତ' ପ୍ରତି ମୁହୂର୍ତ୍ତର ବିସ୍ମୟ ଭରି ରହିଛି । ଅଜ୍ଞାତ ଭିତରକୁ ଗୋଟିଏ ପାଦ ବଢ଼େଇବାରେ ଯେତେମାତ୍ରାରେ ଆଶା, ଆଶଙ୍କା, ଆବେଗ, ଉଦ୍‌ବେଗର ଯୁଗପତ୍ ସଂଚାର ହୁଏ, ନୂତନ ଜନ୍ମନେବା ମୁହୂର୍ତ୍ତରେ ଯେତେ ମାତ୍ରାରେ ବେଦନା, ପ୍ରାର୍ଥନା, ଭରସା ଓ ଭୟ ସମଗ୍ର ଚେତନାକୁ ଆଚ୍ଛନ୍ନ କରେ, ସ୍ଥିର ଅତୀତର ସ୍ମୃତି ଚାରଣରେ ତାହା କୁଆଡୁ ମିଳିବ ? ବାଟୋଇ ପାଇଁ ଆଗକୁ ଥିବା ବାଙ୍କ ମୋଡ଼ ସବୁ ଅପ୍ରତ୍ୟାଶିତ, ଅଜ୍ଞାତ । ପ୍ରତି ବୁଦାମୂଳେ ବାଘ ଲୁଚି ଥାଇପାରେ, ଅଥଚ ପ୍ରକଟ ହୋଇଗଲେ ପ୍ରତିଟି ବୁଦା ଫୁଲରେବି ମଣ୍ଡି ହୋଇଥାଇ ପରେ ।

ସାରାଜୀବନର ସବୁ ବୈଚିତ୍ର୍ୟ, ତ' ଏଇ ଅଜ୍ଞାତ ଭିତରୁ ହିଁ ଆସିଛି । ଭବିଷ୍ୟତ ବୋଲାଉଥିବା ଅଦୃଶ୍ୟମାନ ହିଁ ତ ପ୍ରସ୍ତ ପ୍ରସ୍ତ ଫିଟି ଯାଉଥାଏ, ପାଖୁଡ଼ା ପାଖୁଡ଼ା ମେଲି ଯାଉଥାଏ, ଆଲୁଅ ଅଂଧାର, ସୁଖଦୁଃଖର ଅଦ୍ଭୁତମାଳ ଗୁନ୍ଥି ଚାଲିଥାଏ ! ତାରି ଗର୍ଭରୁ ତ' ଜନ୍ମ ନେଉଥାଏ ସଦ୍ୟତମ ସୂର୍ଯ୍ୟ, ଗୋଟିଏ ଅମାପ ସମ୍ଭାବନା ମୟ ଦିବସର ଉପହାର ନେଇ ! ପ୍ରତ୍ୟେକ 'ବିସ୍ମୟ' ଅନୁଭବର ଖରଶାଣ ଦାଢ଼ ଉପରେ ପାରି ହୋଇଯାଉଥାଏ । ଅତୀତ ତ' ଗନ୍ତାଘର ଟିଏ, ପ୍ରବାହହୀନ ସ୍ପନ୍ଦନହୀନ, ପ୍ରାଣହୀନ ଛାଇକୁ ଥାକଥାକ ସଂପାଦି ରଖିବାର ସଂଗ୍ରହାଳୟ ମାତ୍ର । ଭବିଷ୍ୟତ ହିଁ ପ୍ରଶ୍ୱାସମୟ, ପ୍ରାଣମୟ, ପ୍ରଜ୍ଞାମୟ, ପ୍ରସରଣଶୀଳ ସତ୍ୟ ।

ମୁଁ କି ଜାଣିଥିଲି ସେଇ ଅଜ୍ଞାତ ବିସ୍ମୟ ଦିନେ ବାଙ୍ମୟ ହୋଇ ପ୍ରକଟିତ ହେବ । ନିବନ୍ଧ, ଗଳ୍ପ, ଉପନ୍ୟାସ ରୂପେ ନିଜେ ପ୍ରକାଶିତ ହେବା ପାଇଁ ମୋତେ ଉପଜୀବ୍ୟ କରିବ ? ମୁଁ କି ଜାଣିଥିଲି ଆହୁରି ଚକିତ କରି ଜୀବନର ଏ ମୋଡ଼ରେ କବିତା ଦେଖାଦେବ ? ଉଦୟ ପୂର୍ବରୁ ପୂର୍ବରାଗର ସୂଚନା ମିଳିଲାପରି, ଅନାଗତର ପଦପାତ ଶୁଣାଯାଏ, କିଛି ମୃଦୁ କଂପନ ଅନୁଭବ ହୁଏ । ମୁଁ କି ଜାଣେ, ଯାପରେ ତୁଳୀ ଓ ରଂଗ ମୋ ହାତରେ ଦେଇ ମୋ ସହିତ ସେ ଚଟୁଳ ପରିହାସ ନ କରିବ ବୋଲି ? ବା ନିହାଣ, ମୁଗୁର ଧରେଇ ଦେଇ ପଥର ଭିତରେ ଲୁଚି ନ ଯିବ ବୋଲି ? —ବା ସବୁ ଆଳ

ଆବରଣ ଆଡ଼େଇ ଦେଇ ବାହୁ ପ୍ରସାରି ସେ ପରମ ବିସ୍ମୟ ସ୍ୱୟଂ ଆସି ଉଭା ହୋଇ ନଯିବ ବୋଲି ?

ହେ ମୋର ବିଦଗ୍ଧ, ବିରଳ, ସୁହୃଦ୍‌ବର୍ଗ ! ବାଟୋଇଟିକୁ ସେଇ ବିସ୍ମୟ ଭିତରକୁ ଯିବାକୁ ଦିଅନ୍ତୁ । ବାଟ ଓଗାଳନ୍ତୁ ନାହିଁ । ପଛକୁ ଫେରିବାକୁ କଟାଳ କରନ୍ତୁ ନାହିଁ । ଏ ଦୀର୍ଘଯାତ୍ରାର କେତେ ଗଲା କେତେ ରହିଲା ହିସାବ କରନ୍ତୁ ନାହିଁ । କେହି ଜଣେ ମନିଷୀ କହିଥିବାର ମନେ ପଡୁଛି -Everyday is the first day of the rest of your life" ପ୍ରତିଟି ଦିବସ ତୋର ଅବଶିଷ୍ଟ ଆୟୁଷର ପ୍ରଥମ ପ୍ରଭାତ । ଯେ ପ୍ରତିକ୍ଷଣ ନୂତନର ସ୍ପର୍ଶ ଦେଇ ଉଜ୍ଜୀବିତ କରୁଥାଏ, ବିସ୍ମୟର ଆନନ୍ଦ ଦେଇ ଚକିତ, ଉଲ୍ଲସିତ କରୁଥାଏ, ସେ ଆଢୁଆଳରେ ଲୁଚି ରହିଥିବାର ପ୍ରତ୍ୟୟ ଦେଉଥାଏ; ତାକୁ ଆବିଷ୍କାର କରିବାର ପ୍ରୟାସରେ ଜୀବନର ଅନୁଲୋମରେ ଯିବାକୁ ଅନୁମତି ଦିଅନ୍ତୁ । ପଥପ୍ରାନ୍ତର ପଞ୍ଝଡ଼ରିକୁ ପ୍ରଣାମ କରି ପ୍ରବେଶ କରୁଛି । ଅନିବାର୍ଯ୍ୟ ଭାବରେ ଆମେ ସମସ୍ତେ ଏକମୁଖୀ ସହଯାତ୍ରୀ । ସଚେତନ ଭାବରେ ପରସ୍ପରକୁ ସ୍ୱୀକାର କରି ପରସ୍ପର ସହିତ ସଂଲଗ୍ନ ହୋଇ ଅଜ୍ଞାତ ଭିତରକୁ ଅଗାଧ ବିଶ୍ୱାସ ନେଇ ପ୍ରବେଶ କରିପାରିବା । ଆଗାମୀ ସୂର୍ଯ୍ୟୋଦୟ ହିଁ ତ ବୃହତ୍ତର ସତ୍ୟ ।

***

# ଚନ୍ଦ୍ରଶେଖର ରଥଙ୍କ ପ୍ରଣୀତ ଗ୍ରନ୍ଥସୂଚୀ

## (କ) ନିବନ୍ଧ ସଂକଳନ

### (୧) ଦୃଷ୍ଟି ଓ ଦର୍ଶନ (୧୯୭୧)

ଆଉ ଜଣେ; ବୁଝାମଣା ପ୍ରସଙ୍ଗ; ବ୍ୟକ୍ତି ଏପରି କହେ; ନୂଆ ପୁରୁଣା; ନାମକରଣ; ଅମାନିଆଁ; ଦୁଇଟି ଚିଠି; ମୁଁ ଲେଖେ କାହିଁକି; ସ୍ରଷ୍ଟାର ସ୍ୱୀକାର; ତ୍ରିଶଙ୍କୁର ସ୍ୱର୍ଗ; ଅଥେଲ୍ଲୋ ମନୋବୃତ୍ତି; ଅମରତ୍ୱର ଅଭିଶାପ; ବିଶ୍ୱାସ ବିଗ୍ରହ; ମୁଁ ଏବଂ ସମାଜ; କାଚଘର; ଅପଯଶ; ଆତ୍ମହା; ସମୁଦ୍ର ଦର୍ଶନ; ଯେ ଯଥା ମାଂ ପ୍ରପଦ୍ୟନ୍ତେ; ଅଗ୍ନି ମୋହର ନିଜଗୁରୁ ।।

### (୨) ଏ ଯେଉଁ ପୃଥିବୀ (୧୯୭୫)

ଏ ଯେଉଁ ପୃଥିବୀ; ମଥୁରାନଗରୀ; ପଂଗୁଣ; କହିବାକୁ ଲାଜ; ଶୁଣନ୍ତୁ; ଇତ୍ୟାଦି; ସଂଚୟର ପ୍ରତିପକ୍ଷ; ଛପେଇ ଆତଙ୍କ; ବିଦ୍ୟା ଓ ବିଦ୍ୟାର୍ଥୀ; କପି; ଶୁଭ୍ର ଶରତ୍; ଦିଅଁଦେଖା; ମୃତ୍ୟୁ ଏକ ବିଳାସ; ବ୍ୟବଧାନ; କାନ୍ଦୁରା; ଖୋଜିବା ନ ପାଇବା; ଅନନ୍ୟ; କଥା ସରିଯାଏ; ସାହାରା; ସେପାରି ।।

### (୩) ମୁଁ ସତ୍ୟଧର୍ମା କହୁଛି (୧୯୭୭)

ଲୁଚକାଳି; କଥା ସରେନା; ମୁଁ ସତ୍ୟଧର୍ମା କହୁଛି; ଆଷାଢ଼; ନୀଡ଼ାୟତନ; ଦେବକୀ; ଅତିମୁହୂର୍ତ୍ତ; ମୁଁ ଏକ ପାଦପ; ପ୍ରତିପକ୍ଷ; ମୌନ; ମିଛ ଅତି ଆପଣାର; ଯେକୌଣସି ଯୁଦ୍ଧ ପରେ; ଅନ୍ୟ ଏକ ପ୍ରେମ କଥା; ନିନ୍ଦକ ପରିଚୟ; ଫାଶ ଫିଟିଗଲା; ମୁକ୍ତି ପାଇଁ ନୁହେଁ; ମୁଁ ସେଇ ଲଘିଷ୍ଠ; ମୁଁ କ୍ଷେତ୍ର ଯିବି; ଯିଶୁ; ନିଜକୁ ବାମାମିତ୍ର ମନେକରି ।

### (୪) ମଧୁସନ୍ଧାନ (୧୯୭୮)

କେତୋଟି ମୁହଁ ସଂପର୍କରେ; କାହିଁ ସେ 'ବନ୍ଧୁ; ତୃତୀୟ ପନ୍ଥା; ମଧୁସନ୍ଧାନ; ଏ ଚିଠି ଗୋପନୀୟ; ନିଷିଦ୍ଧ ଦରଜା; ମୁଁ କିଏ; ଛପନ ଭୋଗୀ; ହୋ ଭଗତେ; ପ୍ରଭୁବିଜେ ।।

### (୫) ଉତ୍ତର ଅରଣ୍ୟ (୧୯୭୦/୧୯୮୦)

ତୃପ୍ୟନ୍ତାମ୍; ଖର୍ବ ପୁରୁଷ; ଯୋଗ୍ୟତରେଷୁ; ଅଜ୍ଞାତବାସ; ମୌନଭଙ୍ଗ; ଅପହଁଚ; ଏ ମନ ଏହିପରି; ଦିଗ ବାଉଳା; ଯା'କୁ ଚିହ୍ନନ୍ତି ? ମନର ମେଘ; ଏକାକୀ; ଚଷମା ସପକ୍ଷରେ; କଣ୍ଟାର ମୁକୁଟ; ଶିଷ୍ଟାଗ୍ରହ; ଅଭିଭାବକ; ଗାଡ଼ି ଛାଡ଼ିଦେଲା; ପ୍ରତିବେଶୀ; ଯାନଯାତ୍ରା; ଆମ ସାର୍; ସେଇ ପକ୍ଷୀପରି; ପତ୍ରଲିଖନ; ନରକିନ୍ନର; ପରଜା; ଛ'ମାଣ ଆଠଗୁଣ୍ଠ; ସାରଳାଙ୍କ ଭୀମ ।।

**(୬) ଅଶ୍ରୁତ ସ୍ୱର (୧୯୮୧)**

ପ୍ରଶ୍ନ; ଅନ୍ଧାର; ଅଶ୍ରୁତ ସ୍ୱର; ମହାଜନ ପନ୍ଥା; ଲଟେରୀ ସ୍ୱପ୍ନ; କବିପତ୍ନୀ; ଏଣିକି କିଛି ଭୁଲାଯାଉ; ପାହାଡ଼ ଚଢ଼ା; ଭଜ ବୁଢ଼ା; ଅବଶେଷାନୁଚିନ୍ତା; ନିଜକୁ ନାସ୍ତିକ ମନେକରି; ଦାରୁଦର୍ଶନ; ଆପାତତଃ; ବଡ଼ମୁହାଁ; କଣ୍ଟା ଓ ବେଦନାବୋଧ; ଉଦ୍‌ବର୍ତନ; ହାଟବାହୁଡ଼ା, ଶୁନ୍; ପରିଚୟ ।।

**(୭) କ୍ରୀତଦାସର ସ୍ୱପ୍ନ (୧୯୮୧)**

କ୍ରୀତଦାସର ସ୍ୱପ୍ନ; କଣିକ ଉବାଚ; ଅଜାତ ଶତ୍ରୁ; ଗୁରୁ; ନୀତି ପ୍ରୟୋଗ; ଆପଣା କଲା କର୍ମମାନ; ଶାସନ ଚିନ୍ତା; ରଚନା ସଂପର୍କରେ; ସମୟ ନାହିଁ; ସର୍ପ ଯଜ୍ଞ ।।

**(୮) ହୁକୁମନାମା**

ବର୍ଷଶେଷ; ନିଜକୁ ସାରିଆ ମନେକରି; ଭୋଗ ସଂହିତା; ଅବିନଶ୍ୱର; ଆସ ଗୋପକୁ ଯିବା; ହୁକୁମନାମା; ସ୍ୱାଭିମାନୀ କିଏ; ମା ବଦ କୈତବ ବାଦସ; ଆମର ଦାରିଦ୍ର୍ୟ; ଏକାନ୍ତ କଥନ; ଓଡ଼ିଶାର ସାଂସ୍କୃତିକ ପରଂପରା; ଜଗନ୍ନାଥ ପ୍ରତୀକ; ନୂତନ ଚେତନାର ପୂର୍ବାଭାସ; ଏଣିକି ତୁମେ ଆସିବା କଥା; ବିପତ୍ତି ମାର୍ଗ; ଭଲ ଗପ ।।

**(ଖ) ଉପନ୍ୟାସ :**

(୧) ଯନ୍ତ୍ରାରୂଢ଼ (୧୯୬୭); (୨) ଅସୂର୍ଯ୍ୟ ଉପନିବେଶ (୧୯୭୪); (୩) ନବ ଜାତକ (୧୯୮୧)

**(ଗ) ଗଳ୍ପ :**

**(୧) ଅନେକ ବନ୍ୟା ପରେ (୧୯୬୮)**

ବନ୍ୟା ପରେ; କେଡ଼ା; ପଡ଼ୋଶୀ; ଅସବର୍ଣ୍ଣ; ଜନ୍ମାନ୍ତର; ଶୁଭଶଂଖ; ନିରାପତ୍ତା; ଅପତ୍ୟ; ଘଟ; ହୋରି; ଠାବ; ଉତ୍ତର ପୁରୁଷ ।।

**(୨) ଅଶ୍ୱାରୋହୀର ଗଳ୍ପ (୧୯୭୯)**

ଅଶ୍ୱାରୋହୀ; ମ୍ୟୁଜିୟମ୍; ତାସଘର; ପାରସ୍ପରିକ; ଚମ୍ପାଗ୍ରେର; ଘରଠିକଣା; ଶାବକ; ସୋଦର; ମୁକ୍ତି; ପ୍ରହରୀ; ଶ୍ୱାପଦ; ପ୍ରଳୟ ।।

**(୩) ସମ୍ରାଟ ଓ ଅନ୍ୟମାନେ (୧୯୮୦)**

ସମ୍ରାଟ; ସ୍ୱପ୍ନଭଙ୍ଗ; ଭୋଗଦଖଲ; ବନ୍ଧୁ ମହାନ୍ତି; ଦୁର୍ଦିନ; ରାଗ ଯୋଗିଆ, ରାବଣ, ଚୋର; ଦୃଶ୍ୟାନ୍ତର; ପିତୃବଧ; ବୃକ୍ଷଜାତକ; କୁବୁଜା ।।

**(୪) ଅନ୍ୟ ଏକ ସକାଳ (୧୯୮୧)**

ସେ ଆଉ ଜଣେ; ସବା ସାନ ଝିଅ; ବିଧାତାକୁ ଅନୁରୋଧ; ଅନ୍ୟ ଏକ ସକାଳ; ପାତାଳ ଗଙ୍ଗା; ଯୋଗୀ ନୋହିଲୁ କିପାଇଁ; ଯୋଦ୍ଧା; ଯାତ୍ରୀ; ଜାଇ କୁମ୍ଭାରୁଣୀ; ତ୍ରିବାର ମିଥ୍ୟା; ଆଉ କ'ଣ ଅଛି ଡରିବାକୁ ; ଯଯାତି ।।

